# ଶ୍ରୀମଦ୍ଭାଗବତ

ସଟୀକ

## ଷଷ୍ଠସ୍କନ୍ଧ

ସଂସ୍କୃତଶ୍ଳୋକ, ଗଦ୍ୟାନୁବାଦ

ଭକ୍ତକବି ଜଗନ୍ନାଥ ଦାସଙ୍କ ପଦ୍ୟାନୁବାଦ
ଓ

ଟୀକା ସମ୍ବଳିତ

ସମ୍ପାଦକ—

ରାୟବାହାଦୁର ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ ଏମ୍, ଏ, ବି, ଏଲ୍

ପ୍ରଥମ ସଂସ୍କରଣ,
ପ୍ରକାଶକ—

ଅରୁଣୋଦୟ ପ୍ରେସ, କଟକ

୧୯୪୭

ମୂଲ୍ୟ ଟ ୨୪

# ଷଷ୍ଠ ସ୍କନ୍ଧ

**ସଂକ୍ଷିପ୍ତ ବିବରଣ :—**

ପଞ୍ଚମସ୍କନ୍ଧର ଶେଷଭାଗରେ ନରକର ଭୟାବହ ଦୃଶ୍ୟ ଓ ଯାତନାର ବିବରଣୀ ଶୁଣିଲା ପରେ ରାଜା ପରୀକ୍ଷିତଙ୍କର ମନ ବ୍ୟାକୁଳ ହୋଇ ଉଠିଥିଲା । ତେଣୁ ସେ ପାପୀ ଓ ତାହାର ପ୍ରାୟଶ୍ଚିତ ଇତ୍ୟାଦି ସମ୍ବନ୍ଧେ ଶୁକଦେବଙ୍କୁ କେତେ ଗୁଡ଼ିଏ ପ୍ରଶ୍ନ କରିଥିଲେ ।

ଷଷ୍ଠ ସ୍କନ୍ଧର ପ୍ରଥମ ଅଧ୍ୟାୟ ଆଠୋଟି ଶ୍ଳୋକ ପଞ୍ଚମ ସ୍କନ୍ଧର ସଂକ୍ଷିପ୍ତ ବିବରଣୀ ମାତ୍ର। ତଦନନ୍ତର ପାପୀର ପରିଣାମ ଓ ପ୍ରାୟଶ୍ଚିତ୍ତ ଇତ୍ୟାଦି ବିଷୟରେ ରାଜା ପରୀକ୍ଷିତଙ୍କର ପ୍ରଶ୍ନ ଶ୍ରବଣ କରି ଶ୍ରୀଶୁକଦେବ ଅଜାମିଲ ପ୍ରସଙ୍ଗ ଉତ୍ଥାପନ କରିଥିଲେ । ଅଜାମିଲ ଜଣେ ବେଦବ୍ରତ ନିଷ୍ଠାପର ବ୍ରାହ୍ମଣ ଥିଲେ । କିନ୍ତୁ ଚରିତ୍ର ସ୍ଖଳନ ହେତୁରୁ ତାହାଙ୍କର ଅଧୋଗତି ହୋଇଥିଲା । ସେହି ଅଧୋଗତିର ଫଳରେ ତାହାଙ୍କର ମୃତ୍ୟୁ ସମୟରେ ଯମଦୂତମାନେ ତାହାଙ୍କୁ ନରକ ଦଣ୍ଡ ଭୋଗ କରିବା ନିମିତ୍ତ ଦଣ୍ଡ ଭୂମିକୁ ନେଇଯିବାକୁ ଉପସ୍ଥିତ ହୋଇଥିଲେ । ସେମାନଙ୍କର ଭୀଷଣାକୃତି ଦେଖି, ଅଜାମିଳ ଭୟ ବିହ୍ୱଳ ଚିତ୍ତରେ ଆପଣାର କନିଷ୍ଠ ପୁତ୍ର ନାରାୟଣଙ୍କୁ ଡାକିଥିଲେ । ବିପଦ କାଳରେ ଭଗବାନଙ୍କ ନାମ ସ୍ମରଣ କରିବା ଉଦ୍ଦେଶ୍ୟରେ ନାରାୟଣ ଶବ୍ଦ, ଉଚ୍ଚାରଣ କରି ନ ଥିଲେ ମଧ୍ୟ କେବଳ ସେହି ପବିତ୍ର ନାମ ଯେ କୌଣସି ଉଦ୍ଦେଶ୍ୟରେ ହେଉ ପଛକେ ଉଚ୍ଚାରଣ କରିବା ଫଳରେ, ତତ୍‌କ୍ଷଣାତ୍ ବିଷ୍ଣୁ ଦୂତମାନେ ସେଠାରେ ଉପସ୍ଥିତ । ହୋଇଥିଲେ । ସେମାନେ ମହାପାପୀ ଅଜାମିଳଙ୍କୁ ଯମଦୂତମାନଙ୍କ ହସ୍ତରୁ ଉଦ୍ଧାର କରି ବିଷ୍ଣୁଲୋକକୁ ନେଇ ଯାଇଥିଲେ । ଯମଦୂତମାନେ ଫେରିଯାଇ ଯମରାଜାଙ୍କୁ ସମସ୍ତ କଥା ଜଣାନ୍ତେ, ସେ ବିଷ୍ଣୁଙ୍କର ନାମର ମହାତ୍ମ୍ୟ ସେମାନଙ୍କୁ ବୁଝାଇଥିଲେ । ଏହି ପ୍ରସଙ୍ଗମାନ, ପ୍ରଥମ ଠାରୁ ତୃତୀୟ ଅଧ୍ୟାୟ ମଧ୍ୟରେ ବର୍ଣ୍ଣିତ ହୋଇଅଛି ।

ପରବର୍ତ୍ତୀ ଛଅ ଅଧ୍ୟାୟରେ ଦକ୍ଷପ୍ରଜାପତି ପ୍ରସଙ୍ଗ ଓ ଇନ୍ଦ୍ରଙ୍କ ସହିତ ଅସୁରମାନଙ୍କର ଯୁଦ୍ଧ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ଭାଗବତ ଓ ଅନ୍ୟାନ୍ୟ ଗ୍ରନ୍ଥମାନରେ ଇନ୍ଦ୍ରଙ୍କ ପ୍ରସଙ୍ଗ ଯେପରି ବର୍ଣ୍ଣିତ, ତାହା ପାଠ କଲେ ମନେ ହୁଏ ଇନ୍ଦ୍ର ଦେବରାଜ୍ୟାଧିପତି ହେଲେ ମଧ୍ୟ ସେ ସ୍ୱାର୍ଥପର ଗର୍ବୀ । ଏଥିର ଉଦାହରଣ ସ୍ୱରୂପ ବୃହସ୍ପତି ଦେବଗୁରୁ, ସେ ଦିନେ ଇନ୍ଦ୍ରଙ୍କ ସଭାରେ ଉପସ୍ଥିତ ହୁଅନ୍ତେ ଦେବରାଜ ଇନ୍ଦ୍ର ଆସନରୁ ଉଠି ନ ଥିଲେ, କିମ୍ବା ଗୁରୁଙ୍କ ପ୍ରତି ଯେପରି ସମ୍ମାନ ପ୍ରଦର୍ଶନ କରିବା ଉଚିତ, ତାହା କରି ନ ଥିଲେ । ବୃହସ୍ପତି କ୍ରୁଦ୍ଧ ହୋଇ ଇନ୍ଦ୍ରଙ୍କ ସଙ୍ଗ ତ୍ୟାଗ କରିଥିଲେ । ଏହି ସମୟରେ ବିଶ୍ୱରୂପ ଅନିଚ୍ଛା ସତ୍ତ୍ୱେ ଇନ୍ଦ୍ରଙ୍କ ଅନୁରୋଧ ଏଡ଼ି ନ ପାରି, ପୌରହିତ୍ୟ ଗ୍ରହଣ କରିଥିଲେ । ବିଶ୍ୱରୂପ ତ୍ୱଷ୍ଟାଙ୍କ ପୁତ୍ର, ଇନ୍ଦ୍ରଙ୍କ ସହିତ ଅସୁରମାନଙ୍କ ଯୁଦ୍ଧ ସମୟରେ ବିଶ୍ୱରୂପଙ୍କର ଅସୁରଙ୍କ ପ୍ରତି ସୌଜନ୍ୟ ହେତୁ ଇନ୍ଦ୍ରଙ୍କର ସନ୍ଦେହ ଜାତ ହୋଇଥିଲା, ସେ ବିଶ୍ୱରୂପଙ୍କୁ ମଧ୍ୟ ବଧ କରିଥିଲେ । ତ୍ୱଷ୍ଟା ଏଥିରେ କ୍ରୁଦ୍ଧ ହୋଇ ଇନ୍ଦ୍ରଙ୍କ ବଧ ନିମିତ୍ତ ବୃତ୍ରାସୁରଙ୍କୁ ଯଜ୍ଞାଗ୍ନିରୁ ଉତ୍ପାଦନ କରିଥିଲେ । ଦଶମଠାରୁ ସପ୍ତଦଶ ଅଧ୍ୟାୟ ମଧ୍ୟରେ ଇନ୍ଦ୍ରଙ୍କ ସହିତ ବୃତ୍ରାସୁରର ପୂର୍ବ ଜନ୍ମ ପ୍ରସଙ୍ଗ ମାନ ବର୍ଣ୍ଣିତ ହୋଇଅଛି । ତଦନନ୍ତର ଦିତୀଙ୍କର ଇନ୍ଦ୍ରଘାତୀ ପୁତ୍ର ଉତ୍ପାଦନ ନିମିତ୍ତ କଶ୍ୟପଙ୍କୁ ପ୍ରାର୍ଥନା ଏବଂ ତାହାଙ୍କର ଉପଦେଶ ମତେ ହରିତୋଷଣେ ବ୍ରତପାଳନ ଓ ବ୍ରତର ନିୟମ ଭଙ୍ଗ ସୁଯୋଗ ଦେଖି ଇନ୍ଦ୍ରଙ୍କର ଦିତୀଙ୍କର ଗର୍ଭରେ ପ୍ରବେଶ ଓ ଅଣଚାଶ ମରୁତଙ୍କର ଉତ୍ପତ୍ତି ଓ ସେମାନଙ୍କର ଦେବତ୍ୱଲାଭ ଏବଂ ଏହି ପ୍ରସଙ୍ଗର ଶ୍ରୁତି ଫଳ ଇତ୍ୟାଦି ଅବଶିଷ୍ଟ ଅଧ୍ୟାୟ ମାନଙ୍କରେ ବର୍ଣ୍ଣିତ ହୋଇଅଛି ।

---

# ଷଷ୍ଠ ସ୍କନ୍ଧ

## ସୂଚୀପତ୍ର





## ✽ ଷୋଡ଼ଶ ଅଧ୍ୟାୟ ✽



ଚିତ୍ରକେତୁଙ୍କୁ ଭଗବାନ୍ ଶେଷଦେବଙ୍କର କୃପା ।

# ଶ୍ରୀମଦ୍ଭାଗବତ

## ଷଷ୍ଠସ୍କନ୍ଧ



### ପ୍ର ଥ ମ ଅ ଧ୍ୟା ୟ ।

ତଦ୍ଷାଦୌ ପ୍ରଥମେ ବିଷ୍ଣୋଦୂ'ତୈଃ ପାତକମୋଚନେ ।
ତତ୍ ପାପଖ୍ୟାପନାନ୍ୟୋକ୍ତଂ'ଯାମ୍ୟୈ[ଧର୍ମ୍ମାଦ୍ୱ ଲକ୍ଷଣମ୍ । ୦ । ( ଶ୍ରୀଧରସ୍ୱାମୀ )

---

### ଅଜାମିଳ ଉପଖ୍ୟାନ ।

ପ୍ରଥମ ଅଧ୍ୟାୟରେ ବିଷ୍ଣୁ ଦୂତମାନେ ପାତକୀଶ୍ରେଷ୍ଠ ଅଜାମିଳକୁ ମୁକ୍ତକରି ଯମଦୂତମାନଙ୍କୁ
ଧର୍ମ ଉପଦେଶ ପ୍ରଦାନ କରିବା ବର୍ଣ୍ଣିତ ହୋଇଅଛି । • ।

---

ଅଜାମିଳକୁ ଯମଦୂତେ, ଧରନ୍ତେ ନିଲେ ବିଷ୍ଣୁ-ଦୂତେ । ତାହାଙ୍କ କଥୋପକଥନ, ପ୍ରଥମ ଅଧ୍ୟାୟେ ବର୍ଣ୍ଣନ ।୦

ଶ୍ରୀ ଶୁକୋବାଚ—
ଶୁକ ଚରଣେ ପ୍ରଣମିତ
ହୋଇ ବୋଲନ୍ତି ପରୀକ୍ଷିତ

ହେ ଭଗବତ ତୁମ୍ଭେ ଆଦ୍ୟେ
କହିଲ ଯା ଦ୍ୱିତୀୟସ୍କନ୍ଧେ
ନିବୃତ୍ତିମାର୍ଗ ପରକାରେ
ଯେମନ୍ତେ ଅର୍ଚ୍ଚିରାଦ ପୁରେ

ଯୋଗେ ଲଭନ୍ତି ପ୍ରଜାପତି
କ୍ରମେ ତାହାଙ୍କ ସଙ୍ଗେ ମୁକ୍ତି ।୧

ଶ୍ରୀ ପରୀକ୍ଷିଦୁବାଚ ।

ନିବୃତ୍ତିମାର୍ଗଃ କଥିତଃ ଆଦୌ ଭଗବତା ଯଥା ।
କ୍ରମଯୋଗୋପଲବ୍ଧେନ ବ୍ରହ୍ମଣା ଯଦସଂସୃତିଃ । ୧ ।
ପ୍ରବୃତ୍ତିଲକ୍ଷଣଶ୍ଚୈବ ତ୍ରୈଗୁଣ୍ୟବିଷୟୋ ମୁନେ ।
ଯୋଽସାବଲୀନପ୍ରକୃତେର୍ଗୁଣସର୍ଗଃ ପୁନଃ ପୁନଃ । ୨ ।
ଅଧର୍ମଲକ୍ଷଣା ନାନା ନରକାଶ୍ଚାନୁବର୍ଣ୍ଣିତାଃ ।
ମନ୍ୱନ୍ତରଶ୍ଚ ବ୍ୟାଖ୍ୟାତ ଆଦ୍ୟଃ ସ୍ୱାୟମ୍ଭୁବୋ ଯତଃ । ୩ ।
ପ୍ରିୟବ୍ରତୋତ୍ତାନପଦୋର୍ବଂଶସ୍ତଚ୍ଚରିତାନି ଚ ।
ଦ୍ୱୀପବର୍ଷସମୁଦ୍ରାଦ୍ରିନଦ୍ୟୁଦ୍ୟାନବନସ୍ପତୀନ୍ । ୪ ।
ଧରାମଣ୍ଡଳସଂସ୍ଥାନଂ ଭାଗଲକ୍ଷଣମାନତଃ ।
ଜ୍ୟୋତିଷାଂ ବିବରାଣାଞ୍ଚ ଯଥେଦମସୃଜଦ୍ବିଭୁଃ । ୫ ।

ଶ୍ରୀପରୀକ୍ଷିତ କହିଲେ :—

ହେ ଭଗବନ୍ ! ଆପଣ ଦ୍ୱିତୀୟ ସ୍କନ୍ଧରେ ନିବୃତ୍ତିମାର୍ଗ ସମ୍ବନ୍ଧେ ଯଥାଯଥ ବର୍ଣ୍ଣନା କରିଅଛନ୍ତି, ସେହି ମାର୍ଗ ଅବଲମ୍ବନ କରି ମନୁଷ୍ୟ କ୍ରମଶଃ ଅର୍ଚ୍ଚିରାଦିଲୋକପ୍ରାପ୍ତ ହୋଇଥାଏ, ଏବଂ ଅବଶେଷରେ ବ୍ରହ୍ମଲୋକକୁ ଗମନ କରି ମୋକ୍ଷ ଲାଭ କରେ ଏହା ମଧ୍ୟ ବର୍ଣ୍ଣନା କରି ଅଛନ୍ତି । ୧ ।

ହେ ମୁନେ ! ସ୍ୱର୍ଗାଦି ସୁଖ ଯାହାର ଚରମଫଳ ଏବଂ ପ୍ରକୃତି ଲୟପ୍ରାପ୍ତ ନ ହେବାରୁ ଜୀବ ପୁନଃ ପୁନଃ ଜନ୍ମ ଗ୍ରହଣ କରିବା ଯାହାର ସ୍ୱରୂପ, ସେହି ପ୍ରବୃତ୍ତିମାର୍ଗ ମଧ୍ୟ ଆପଣ ବର୍ଣ୍ଣନାକରିଅଛନ୍ତି [୩ୟସ୍କନ୍ଧ]।୨

ଅଧର୍ମ ଲକ୍ଷଣ ଦ୍ୱାରା ଯେଉଁ ନରକଭୋଗ ହୋଇ ଥାଏ ଏବଂ ମନ୍ୱନ୍ତରରେ ସ୍ୱାୟମ୍ଭୁବ ମନୁ ଆଧିପତ୍ୟ କରିଥିଲେ ସେହି ପ୍ରଥମ ମନ୍ୱନ୍ତର ମଧ୍ୟ ବର୍ଣ୍ଣନା କରିଅଛନ୍ତି [ ୪ର୍ଥ ସ୍କନ୍ଧ ] । ୩ ।

ପ୍ରିୟବ୍ରତ ଓ ଉତ୍ତାନପାଦ ବଂଶ, ସେମାନଙ୍କର ଚରିତ୍ର, ପୃଥିବୀସ୍ଥ ଦ୍ୱୀପ, ବର୍ଷ, ସମୁଦ୍ର, ପର୍ବତ, ନଦୀ ଉଦ୍ୟାନ, ବନସ୍ପତି, ଭାଗ, ଲକ୍ଷଣ, ପରିମାଣ, ସହିତ ପୃଥିବୀମଣ୍ଡଳ, ଜ୍ୟୋତିର୍ମଣ୍ଡଳ ପ୍ରଭୃତି ବର୍ଣ୍ଣନା କରି ଅଛନ୍ତି ( ୫ମ ସ୍କନ୍ଧରେ ) । ୪, ୫ ।

ଆଉ ପ୍ରବୃତ୍ତି-ମାର୍ଗ ଯେହି
ସ୍ୱର୍ଗାଦି ସୁଖ ଯହିଁ ପାଇ
ପ୍ରକୃତି ବିଲୟ ଅଭାବେ
ଜନ୍ମ ମରଣ ଜୀବ ଲଭେ,
ପୁଣି ହୁଏ ସେ ପୁଣି ଯାଏ
ସେ ମାର୍ଗ କହିଲ କୃପାୟେ । ୨ ।
ପୁଣି ଯେ ଅଧର୍ମ ଲକ୍ଷଣ
ନରକମାନଙ୍କ ବର୍ଣ୍ଣନ

ଯେ ସ୍ୱାୟମ୍ଭୁବ ମନୁ ଆଦି
କହିଲ ଚତୁର୍ଥେ ସମ୍ବାଦି ।୩।
ଉତ୍ତାନପାଦ ପ୍ରିୟବ୍ରତ
ଏ ଦୋହିଙ୍କ ବଂଶାନୁଚରିତ
ଦ୍ୱୀପ ବରଷ ମହୀଧର
ନଦୀ ଉଦ୍ୟାନ ଯେ ସାଗର
ପୃଥିବୀ ମଣ୍ଡଳର ସ୍ଥାନ
ସୂର୍ଯ୍ୟ ମଣ୍ଡଳ ଜ୍ୟୋତିର୍ଗଣ

ଚନ୍ଦ୍ର ତାରକା ଆଦି କରି
ଭାଗ ବିବର ଅନୁସରି
ଯେମନ୍ତ ପ୍ରକାରେ ଈଶ୍ୱର
ସର୍ଜ୍ଜିଲେ ଅଖିଳ ସଂସାର
ଏ ସବୁ କହିଲ ମୋ ଆଗ
ଏବେ ପୁଚ୍ଛଇ ମହାଭାଗ !
ନାନା ପ୍ରକାରେ ସେ ନରକ
ପ୍ରାଣୀ ସଂଚରନ୍ତି ଅନେକ

ଅଧୁନେହ ମହାଭାଗ ଯଥୈବ ନରକାନ୍ନରଃ ।
ନାନୋଗ୍ରଯାତନାନ୍ ନେୟାତ୍ ତନ୍ମେ ବ୍ୟାଖ୍ୟାତୁମର୍ହସି । ୬ ।
ଶ୍ରୀଶୁକ ଉବାଚ ।
ନ ଚେଦିହୈବାପଚିତିଂ ଯଥାଂହସଃ କୃତସ୍ୟ କୁର୍ଯ୍ୟାନ୍ମନଉକ୍ତପାଣିଭିଃ ।
ଧ୍ରୁବଂ ସ ବୈ ପ୍ରେତ୍ୟ ନରକାନୁପୈତି ଯେ କୀର୍ତ୍ତିତା ମେ ଭବତସ୍ତିଗ୍ମଯାତନାଃ ।୭।
ତସ୍ମାତ୍ ପୁରୈବାଶ୍ୱିହ ପାପନିଷ୍କୃତୌ ଯତେତ ମୃତ୍ୟୋରବିପଦ୍ୟତାତ୍ମନା ।
ଦୋଷସ୍ୟ ଦୃଷ୍ଟ୍ୱା ଗୁରୁଲାଘବଂ ଯଥା ଭିଷକ୍ ଚିକିତ୍ସେତ ରୁଜାଂ ନିଦାନବିତ୍ ।୮।
ଶ୍ରୀ ରାଜୋବାଚ ।
ଦୃଷ୍ଟଶ୍ରୁତାଭ୍ୟାଂ ଯତ୍ପାପଂ ଜାନନ୍ନପ୍ୟାତ୍ମନୋଽହିତମ୍ ।
କରୋତି ଭୂୟୋ ବିବଶଃ ପ୍ରାୟଶ୍ଚିତ୍ତମଥୋ କଥମ୍ । ୯ ।

---

ହେ ମହାଭାଗ ! ଯେଉଁ ଉପାୟ ଅବଲମ୍ବନ କଲେ ମନୁଷ୍ୟମାନେ ବିବିଧ ତୀବ୍ର ଯାତନାମୟ ନରକ ପ୍ରାପ୍ତ ନ ହୁଅନ୍ତି, ଆପଣ ବର୍ତ୍ତମାନ୍ ମୋ ନିକଟରେ ତାହାହିଁ ବର୍ଣ୍ଣନା କରନ୍ତୁ । ୬ ।

ଶ୍ରୀଶୁକଦେବ କହିଲେ :—

ମନୁଷ୍ୟ କାୟ ମନୋବାକ୍ୟ ଦ୍ୱାରା ଇହଲୋକରେ ଯେଉଁ ପାପକାର୍ଯ୍ୟମାନ କରେ, ଯଦି ଇହଲୋକରେ ତହିଁର ପ୍ରାୟଶ୍ଚିତ୍ତ ନ କରେ ତେବେ ସେ ତୀବ୍ର ଯାତନାମୟ ନରକକୁ ଗମନ କରେ । ୭ ।

ସୁତରାଂ ରୋଗର ନିଦାନବିତ୍ ଚିକିତ୍ସକମାନେ ଯେପରି ରୋଗର ଗୁରୁତ୍ୱ ଓ ଲଘୁତ୍ୱ ନିର୍ଣ୍ଣୟକରି ତଦନୁସାରେ ଚିକିତ୍ସା କରେ ସେହିପରି ପାପୀ ଦେହକ୍ଷୀଣ ଏବଂ ଦେହାନ୍ତ ହେବା ପୂର୍ବରୁ ପାପର ଗୁରୁତ୍ୱ ଓ ଲଘୁତ୍ୱ ବିବେଚନାରେ ଶୀଘ୍ର ପ୍ରାୟଶ୍ଚିତ ଅନୁଷ୍ଠାନ କରିବ । ୮ ।

ଶ୍ରୀରାଜା କହିଲେ :—

ପାପକଲେ ଇହଲୋକରେ ରାଜଦଣ୍ଡାଦି ଏବଂ ପରଲୋକରେ ନରକକ୍ଳେଶ ହୁଏ, ଏହା ଶୁଣା ଯାଇଅଛି, ଏହିପରି ପାପ ଅନିଷ୍ଟକାରୀ ଜାଣି ମଧ୍ୟ ମନୁଷ୍ୟ ପ୍ରାୟଶ୍ଚିତ୍ତ କରି ମଧ୍ୟ ପୁଣି ବିବଶ ହୋଇ ପାପାଚରଣ କରେ, ସେତେବେଳେ ପ୍ରାୟଶ୍ଚିତ୍ତରେ କି ଫଳ । ୯ ।

---

ତୀବ୍ର ଯାତନାକୁ ଭୁଞ୍ଜନ୍ତି
କି କଲେ ତହିଁ ନ ପଡ଼ନ୍ତି
ବିଶେଷ କର ମହାଭାଗ
କହ ଅନୁରାଗେ ମୋ ଆଗ ।୪-୬

ଶ୍ରୀ ଶୁକ ଉବାଚ—

ଶରୀର ମନ ବା ବଚନେ
ଯେ କରେ ପାପ ଆଚରଣେ
ଇହଲୋକରେ ଦେହ ଧରି
ଯେବେ ପ୍ରାୟଶ୍ଚିତ୍ତ ନ କରି
କି ଅବା ପରମ ଈଶ୍ୱରେ
ପୂଜା ନ କରେ ଭକ୍ତିଭରେ
ଅଥବା ନାମ ସଂକୀର୍ତ୍ତନେ
ଶ୍ରଦ୍ଧା ନ କରେ ଭଗବାନେ
ନିଶ୍ଚୟ ଯାତନା ନରକ
ସେ ପ୍ରାଣୀ ଲଭନ୍ତି ଅନେକ
ଯେବଣ ପ୍ରକାରେ ଭିଷକ
କରଇ ଚିକିତ୍ସା ଅନେକ
ରୋଗର ଗୁରୁ ଲଘୁ ଜାଣି
ନିଦାନ କଥା ସରମାଣି
ତେମନ୍ତ ମରଣର ଆଗେ
ସଂଯତମନା ହୋଇ ବେଗେ
ପାପର ନିବାରଣ ଅର୍ଥେ
କରିବ ସଦ୍ୟ ପ୍ରାୟଶ୍ଚିତ୍ତେ ।୭,୮।

ଶ୍ରୀ ରାଜୋବାଚ—

ପାପ ଅହିତ ସରମାଣି
ତଥାପି ବଶ[illegible] ପ୍ରାଣୀ

କ୍ୱଚିନ୍ନିବର୍ତ୍ତତେଽଭଦ୍ରାତ୍ କ୍ୱଚିଚ୍ଚରତି ତତ୍ପୁନଃ ।
ପ୍ରାୟଶ୍ଚିତ୍ତମଥୋଽପାର୍ଥଂ ମନ୍ୟେ କୁଞ୍ଜରଶୌଚବତ୍ । ୧୦ ।
ଶ୍ରୀବାଦରାୟଣିରୁବାଚ ।
କର୍ମଣା କର୍ମନିର୍ହାରୋ ନ ହ୍ୟାତ୍ୟନ୍ତିକ ଇଷ୍ୟତେ ।
ଅବିଦ୍ୱଦଧିକାରିତ୍ୱାତ୍ ପ୍ରାୟଶ୍ଚିତ୍ତଂ ବିମର୍ଶନମ୍ । ୧୧ ।
ନାଶ୍ନତଃ ପଥ୍ୟମେବାନ୍ନଂ ବ୍ୟାଧୟୋଽଭିଭବନ୍ତି ହି ।
ଏବଂ ନିୟମକୃଦ୍ରାଜନ୍ ଶନୈଃ କ୍ଷେମାୟ କଳ୍ପତେ । ୧୨ ।
ତପସା ବ୍ରହ୍ମଚର୍ଯ୍ୟେଣ ଶମେନ ଚ ଦମେନ ଚ ।
ତ୍ୟାଗେନ ସତ୍ୟଶୌଚାଭ୍ୟାଂ ଯମେନ ନିୟମେନ ବା । ୧୩ ।
ଦେହବାଗ୍‌ବୁଦ୍ଧିଜଂ ଧୀରା ଧର୍ମଜ୍ଞାଃ ଶ୍ରଦ୍ଧୟାନ୍ୱିତାଃ ।
କ୍ଷିପନ୍ତ୍ୟଘଂ ମହଦପି ବେଣୁଗୁଳ୍ମମିବାନଳଃ । ୧୪ ।

---

କେବେ କେବେ ମନୁଷ୍ୟ ପାପରୁ ବିରତ ହୁଏ ଏବଂ କେତେବେଳେ ପୁଣି ସେହି ପାପ କରେ, ସୁତରାଂ ହସ୍ତୀ ପ୍ରଭୃତି ସ୍ନାନ ଭଳିପରି କୃଚ୍ଛ୍ରାଦି ପ୍ରାୟଶ୍ଚିତ୍ତ ବ୍ୟର୍ଥ ବୋଲି ମୁଁ ମନେ କରେ । ୧୦ ।

ଶ୍ରୀବାଦରାୟଣୀ (ଶ୍ରୀଶୁକଦେବ) କହିଲେ—

କୃଚ୍ଛ୍ରାଦି ପ୍ରାୟଶ୍ଚିତ୍ତ ରୂପ ବ୍ରତ ଦ୍ୱାରା ପାପ ସମୂଳରେ ନଷ୍ଟ ହେବା ସମ୍ଭବପର ନୁହେଁ, କାରଣ ଅବିଦ୍ୟା ସମାଚ୍ଛନ୍ନ ଜୀବହିଁ ପାପର ଅଧିକାରୀ, ସୁତରାଂ ଜ୍ଞାନହିଁ ଯଥାର୍ଥ ପ୍ରାୟଶ୍ଚିତ୍ତ । ୧୧ ।

ପ୍ରତ୍ୟହ ଯେଉଁ ବ୍ୟକ୍ତି ସୁପଥ୍ୟ ଖାଦ୍ୟ ଭକ୍ଷଣ କରେ ଯେପରି ତାହାକୁ ବ୍ୟାଧି ଆକ୍ରମଣ କରି ନ ପାରେ, ସେହିପରି ନିୟମାଦି ପ୍ରତିପାଳନକାରୀ ବ୍ୟକ୍ତି କ୍ରମେ ଜନ୍ମବନ୍ଧନ ନଷ୍ଟକରିବାକୁ ସମର୍ଥ ହୁଏ ।୧୨।

ହେ ରାଜନ୍ ! ଧାର୍ମିକମାନେ ଶ୍ରଦ୍ଧା ସମ୍ପନ୍ନ ହୋଇ ଏକାଗ୍ରତା ସହକାରେ ବ୍ରହ୍ମଚର୍ଯ୍ୟ ଦ୍ୱାରା ଅନ୍ତଃ ସଂଯମନ କରି ଏବଂ ବହିରିନ୍ଦ୍ରିୟ ନିରୋଧ କରି ଏବଂ ବୈଧଦାନ ଦ୍ୱାରା ଏବଂ ସତ୍ୟ, ଶୌଚ, ଯମ, ନିୟମ, ପ୍ରଭୃତି ଦ୍ୱାରା କାୟିକ, ବାଚିକ ଏବଂ ମାନସିକ ବହୁଳ ପାପକୁ ଅଗ୍ନି ଶୁଷ୍କ ବଂଶଦଣ୍ଡକୁ ଦଗ୍ଧକଲା ପରି ନଷ୍ଟକରିପାରେ । ୧୩,୧୪ ।

---

ପାପରେ ପୁଣିହିଁ ପ୍ରବର୍ତ୍ତି
କ କାର୍ଯ୍ୟ କେବେ ପ୍ରାୟଶ୍ଚିତ୍ତେ ?
କେବେ ବା ପାପୁ ନିବର୍ତ୍ତାଇ
ପୁଣିହିଁ ପାପ ଆଚରଇ
ଏଥୁଅନ୍ତରେ ପ୍ରାୟଶ୍ଚିତ୍ତ
କୁଞ୍ଜର ସ୍ନାନ କଲା ମତ ।୯,୧୦।
ଶ୍ରୀ ଶୁକ ଉବାଚ—
କର୍ମରେ କରି କର୍ମମାନ
ନଷ୍ଟହି କରନ୍ତି ଯେ ଜନ

କର୍ମ ସମୂଳେ ନାଶ ନୋହି
ଏହାର ସ୍ୱତ୍ତ୍ୱବଟ ଏହି
ଅଜ୍ଞାନୀ ଅଧିକାରୀ ଯେଣୁ
ବଫଳ ପ୍ରାୟଶ୍ଚିତ୍ତ ତେଣୁ । ୧୧ ।
ସୁପଥ୍ୟ ଗ୍ରାସ ଯେହୁ କରେ ।
ତାକୁ ବ୍ୟାଧି ପୀଡ଼ା ନ କରେ ॥
ଏହି ନିୟମ ଯେ କରନ୍ତି
କର୍ମି କଲ୍ୟାଣ ସେ ଲଭନ୍ତି ।୧୨।

ଦେହ ବଚନ ବୁଦ୍ଧି ଯୋଗେ
ଯେ ପାପ କରିଥାଏ ପ୍ରାଣୀ
ତପସ୍ୟା ଯମ ନିୟମରେ
ଶମ ଦମ ତ୍ୟାଗ ଶୌଚରେ
ସତ୍ୟ ବ୍ରହ୍ମଚର୍ଯ୍ୟ ପ୍ରକ୍ଷାରେ
ଜ୍ଞାନୀ ନାଶନ୍ତି ପାପ ଘୋରେ
ଯେପରେ ଦହଇ ସକଳ
ବେଣୁର ଗୁଳ୍ମ ଦାବାନଳ ।୧୩,୧୪

କେଚିତ୍ କେବଲୟା ଭକ୍ତ୍ୟା ବାସୁଦେବପରାୟଣାଃ ।
ଅଘଂ ଧୂନ୍ୱନ୍ତି କାର୍ତ୍ସ୍ନ୍ୟେନ ନୀହାରମିବ ଭାସ୍କରଃ । ୧୫ ।
ନ ତଥା ହ୍ୟଘବାନ୍ ରାଜନ୍ ପୂୟେତ ତପ ଆଦିଭିଃ ।
ଯଥା କୃଷ୍ଣାର୍ପିତପ୍ରାଣସ୍ତତ୍ପୁରୁଷନିଷେବୟା । ୧୬ ।
ସଧ୍ରୀଚୀନୋ ହ୍ୟୟଂ ଲୋକେ ପନ୍ଥାଃ କ୍ଷେମୋଽକୁତୋଭୟଃ ।
ସୁଶୀଲାଃ ସାଧବୋ ଯତ୍ର ନାରାୟଣପରାୟଣାଃ । ୧୭ ।
ପ୍ରାୟଶ୍ଚିତ୍ତାନି ଚୀର୍ଣ୍ଣାନି ନାରାୟଣପରାଙ୍ମୁଖମ୍ ।
ନ ନିଷ୍ପୁନନ୍ତି ରାଜେନ୍ଦ୍ର ସୁରାକୁମ୍ଭମିବାପଗାଃ । ୧୮ ।
ସକୃନ୍ମନଃ କୃଷ୍ଣପଦାରବିନ୍ଦୟୋର୍ନିବେଶିତଂ ତଦ୍ଗୁଣରାଗୀ ଯୈରିହ ।
ନ ତେ ଯମଂ ପାଶଭୃତଶ୍ଚ ତଦ୍ଭଟାନ୍ ସ୍ୱପ୍ନେଽପି ପଶ୍ୟନ୍ତି ହି ଚୀର୍ଣ୍ଣନିଷ୍କୃତାଃ ।୧୯।

---

କେହି କେହି ବ୍ୟକ୍ତି ବାସୁଦେବ ପରାୟଣ ଅର୍ଥାତ୍ ଭଗବତ୍ ଭଜନ ନିରତ ହୋଇ କର୍ମଜ୍ଞାନାଦି ଉପେକ୍ଷାକର ଶୁଦ୍ଧ ଭକ୍ତିଦ୍ୱାରା, ଯେପରି ସୂର୍ଯ୍ୟ ଶିଶିରକୁ ସମୂଳରେ ନଷ୍ଟ କରେ, ସେହିପରି ପାପକୁ ଧ୍ୱଂସ କରିଥାନ୍ତି । ୧୫ ।

ହେ ରାଜନ୍ ! ପାପୀଲୋକ ଭକ୍ତମାନଙ୍କର ସେବା ଶୁଶ୍ରୂଷା ଦ୍ୱାରା ଭଗବାନଙ୍କ ପ୍ରତି ଚିତ୍ତସମର୍ପଣ କଲେ ତହିଁରେ ଯେପରି ପବିତ୍ରତା ଲାଭ କରି ପାରେ ତପସ୍ୟାଦି ଦ୍ୱାରା ସେପରି କରି ପାରେ ନାହିଁ ।୧୬।

ଭଗବତ୍ ପରାୟଣ ସୁଶୀଳ ମହାପୁରୁଷମାନେ ଏହି ଭକ୍ତି ପଥରେ ଅବସ୍ଥାନ କରନ୍ତି । ସୁତରାଂ ଏହି ପଥରେ କୌଣସି ଭୟର କାରଣ ନାହିଁ, ଅତଏବ ଏହି ମଙ୍ଗଳମୟ ଭକ୍ତି ପଥ ଜଗତରେ ସର୍ବୋତ୍କୃଷ୍ଟ । ୧୭ ।

ହେ ରାଜେନ୍ଦ୍ର ! ପ୍ରାୟଶ୍ଚିତ୍ତ ଅନୁଷ୍ଠିତ ହେଲେ ମଧ୍ୟ ତାହା ଭକ୍ତିହୀନ ବ୍ୟକ୍ତିକୁ ପବିତ୍ର କରି ନ ପାରେ (ଉଦାହରଣ ସ୍ୱରୂପ) ଗଙ୍ଗାଦି ନଦୀଗଣ ମଦ୍ୟପାତ୍ରକୁ ପବିତ୍ର କରି ନ ପାରନ୍ତି । ୧୮ ।

ଏହି ଜଗତରେ ଯେଉଁମାନେ ଭଗବାନଙ୍କର ଶ୍ରୀପାଦପଦ୍ମ ଯୁଗଳରେ ତାହାଙ୍କର ଗୁଣାନୁରକ୍ତ ଚିତ୍ତକୁ ଥରେମାତ୍ର ସ୍ଥାପନ କରି ପାରନ୍ତି ତଦ୍ୱାରା ସେମାନଙ୍କର ପ୍ରାୟଶ୍ଚିତ୍ତ ହୁଏ, ଯମ କିମ୍ବା ପାଶହସ୍ତ ଯମଦୂତମାନଙ୍କୁ ସେ ସ୍ୱପ୍ନରେ ସୁଦ୍ଧା ଦର୍ଶନ କରେ ନାହିଁ । ୧୯ ।

---

କେହି କେବଳ ଭକ୍ତି କରି
ଗୋବିନ୍ଦ ପାଦ ଆଶ୍ରେ କରି
ପାପ ଅଶେଷକରେନାଶ
ହିମ ଯେସନେ ରବି ତ୍ରାସ ।୧୫।
ହେ ରାଜା ପାପବନ୍ତ ଯେହି
ତପେ ପବିତ୍ର ନୋହେ ନୋହି
ଯେମନ୍ତ କୃଷ୍ଣର ବିଷୟେ
ପ୍ରାଣ ଅର୍ପିଲେ ଶୁଦ୍ଧହୋଏ ।୧୬।

ସୁସାଧୁଶୀଳ ଯେତୁ ଜନ
ନାରାୟଣରେ ପରାୟଣ
ତାହାଙ୍କ ଭକ୍ତି ପଥମାନ
ଲୋକର କଲ୍ୟାଣ କାରଣ ।୧୭।
ରାଜେନ୍ଦ୍ର ଶୁଣ ପରମାଣି
କୃଷ୍ଣ ବିମୁଖ ଯେତେ ପ୍ରାଣୀ
ତାହାଙ୍କ ତପେ ଯେତେ ଫଳ
ସକଳ ହୁଅଇ ନିଷ୍ଫଳ । ୧୮ ।

କୃଷ୍ଣର ପଦ୍ମପାଦ ଭଜି
ତା ଗୁଣେ ଅନୁରାଗୀ ହୋଇ
ଯେ ଏକବେଳେ ବୋଲେ ନାମ
ସ୍ୱପ୍ନେ ସେ ନ ଦେଖଇ ଯମ
ତା ଦୂତେ ପାଶ ରଜ୍ଜୁ ଧରି
ନ ଦେଖେ ଚକ୍ଷୁ ତାହାଙ୍କର ।୧୯।

ଅତ୍ର ହ୍ୟୋଦାହରନ୍ତୀମମିତିହାସଂ ପୁରାତନମ୍ ।
ଦୂତାନାଂ ବିଷ୍ଣୁ ଯମୟୋଃ ସମ୍ବାଦସ୍ତଂ ନିବୋଧ ମେ । ୨୦ ।
କାନ୍ୟକୁବ୍‌ଜେ ଦ୍ୱିଜଃ କଶ୍ଚିଦ୍ଦାସୀପତିରଜାମିଳଃ ।
ନାମ୍ନା ନଷ୍ଟସଦାଚାରୋ ଦାସ୍ୟାଃ ସଂସର୍ଗଦୂଷିତଃ । ୨୧ ।
ବନ୍ଦ୍ୟକ୍ଷୈଃ କୈତବୈଶ୍ଚୌର୍ଯ୍ୟୈର୍ଗର୍ହିତାଂ ବୃତ୍ତିମାସ୍ଥିତଃ ।
ବିଭ୍ରତ୍‌କୁଟୁମ୍ବମଶୁଚିର୍ଯାତୟାମାସ ଦେହିନଃ । ୨୨ ।
ଏବଂ ନିବସତସ୍ତସ୍ୟ ଲାଳୟାନସ୍ୟ ତତ୍‌ସୁତାନ୍ ।
କାଲୋଽତ୍ୟଗାନ୍ମହାନ୍ ରାଜନ୍ନଷ୍ଟାଶୀତ୍ୟାୟୁଷଃ ସମାଃ । ୨୩ ।
ତସ୍ୟ ପ୍ରବୟସଃ ପୁତ୍ରା ଦଶ ତେଷାନ୍ତୁ ଯୋଽବମଃ ।
ବାଲୋ ନାରାୟଣୋ ନାମ୍ନା ପିତ୍ରୋଶ୍ଚ ଦୟିତୋ ଭୃଶମ୍ । ୨୪ ।

---

ଏହି ବିଷୟରେ ପୁରାତତ୍ତ୍ୱଜ୍ଞ ବ୍ୟକ୍ତିମାନେ ଏହିପରି ଗୋଟିଏ ପ୍ରାଚୀନ ଇତିହାସ ବିଷ୍ଣୁ ଦୂତ ଓ ଯମଦୂତ ସମ୍ବନ୍ଧ କହି ଥାଆନ୍ତି । ୨୦ ।

କାନ୍ୟକୁବ୍ଜ ଦେଶରେ ଅଜାମିଳ ନାମରେ ଗୋଟିଏ ବ୍ରାହ୍ମଣ ଥିଲା, ସେ ଗୋଟିଏ ଦାସୀକୁ ବିବାହ କରିଥିଲା ଓ ସେହି ଦାସୀର ସଂସର୍ଗରେ ସମସ୍ତ ସଦାଚାରରୁ ବିଚ୍ୟୁତ ହୋଇଥିଲା । ୨୧ ।

ମଳିନ ସ୍ୱଭାବ ବିଶିଷ୍ଟ ସେହି ଅଜାମିଳ ପଣକରି ଅକ୍ଷକ୍ରୀଡ଼ା, ପ୍ରବଞ୍ଚନା, ଚୌର୍ଯ୍ୟ ପ୍ରଭୃତି କୃତ୍ରିମ ଜୀବିକା ଅବଲମ୍ବନ କରି ପୋଷ୍ୟବର୍ଗଙ୍କର ଭରଣପୋଷଣଲାଗି ଅନ୍ୟ ଲୋକମାନଙ୍କୁ ଉତ୍ପୀଡ଼ିତ କରୁଥିଲା।୨୨

ହେ ମହାରାଜ ! ଏହିପରି ଗର୍ହିତଭାବରେ ଅବସ୍ଥାନ କରି ସେ ସେହି ଦାସୀଗର୍ଭଜାତ ପୁତ୍ରମାନଙ୍କୁ ଲାଳନ ପାଳନ କରୁ କରୁ ତାହାର ଜୀବନର ସୁଦୀର୍ଘକାଳ ଅର୍ଥାତ୍ ୮୮ ବର୍ଷ ଅତୀତ ହୋଇଗଲା । ୨୩ ।

ଅଜାମିଳ ବୃଦ୍ଧ ହେଲା, ତାହାର ଦଶପୁତ୍ର ମଧ୍ୟରୁ କନିଷ୍ଠ ପୁତ୍ରର ନାମ ନାରାୟଣ, ସେ ପିତା ମାତାଙ୍କର ଅତ୍ୟନ୍ତ ପ୍ରିୟ ହୋଇଥିଲା । ୨୪

---

ସେ ଇତିହାସ ପୁରାତନ
କହୁଛି ଶୁଣ ସାବଧାନ
ବିଷ୍ଣୁ ର ଶମନର ଦୂତ
ସମ୍ବାଦ ଅତି ଅଦଭୁତ ।୨୦। ।
କାନ୍ୟ କୁବ୍ଜ ନାମେ ଦେଶ
ଅଜାମିଳର ତହିଁ ବାସ
ଅଧମ ଦ୍ୱିଜ ସେ ହୋଇଲା
ସ୍ୱଭାବେ ଦାସୀ-ରତ ହୋଇ

ସଦାଚାରକୁ ନଷ୍ଟ କରି
ଦାସୀର ସଂସର୍ଗ ଆଚରି । ୨୧।
କୈତବ ଚୌର୍ଯ୍ୟ ପଣେ ଥାଇ
କୃତ୍ରିମ କର୍ମ ଆଚରଇ ।୨୨।
ଏମନ୍ତେ କେତେ ଦିନ ଗଲା
ତାହାର ପୁତ୍ର ଉପୁଜିଲା
ସେ ନେଇ ଥାଇ ଦାସୀସଙ୍ଗେ
ପୁତ୍ରପାଳନେ ସଦା ମନେ

ଅଠାଶୀ ବୟସେ ତାହାର
କାଳ ହୋଇଲା ନୃପବର ।୨୩।
ବୃଦ୍ଧ ବୟସେ ତାର ପୁତ୍ର
ହୋଇଲା ଦଶ ସମ୍ମିତ
କନିଷ୍ଠ ନାମ ନାରାୟଣ
ପିତାର ଆନନ୍ଦ କାରଣ ।୨୪।

ସ ବଦ୍ଧହୃଦୟସ୍ତସ୍ମିନ୍ନର୍ଭକେ କଳଭାଷିଣି ।
ନିରୀକ୍ଷମାଣସ୍ତଲ୍ଲୀଳାଂ ମୁମୁଦେ ଜରଠୋ ଭୃଶମ୍ । ୨୫ ।
ଭୁଞ୍ଜାନଃ ପ୍ରପିବନ୍ ଖାଦନ୍ ବାଳକଂ ସ୍ନେହଯନ୍ତ୍ରିତଃ ।
ଭୋଜୟନ୍ ପାୟୟନ୍ ମୂଢ଼ୋ ନ ବେଦାଗତମନ୍ତକମ୍ । ୨୬ ।
ସ ଏବଂ ବର୍ତ୍ତମାନୋଽଜ୍ଞୋ ମୃତ୍ୟୁକାଳ ଉପସ୍ଥିତେ ।
ମତିଞ୍ଚକାର ତନୟେ ବାଳେ ନାରାୟଣାହ୍ୱୟେ । ୨୭ ।
ସ ପାଶହସ୍ତାଂସ୍ତ୍ରୀନ୍ ଦୃଷ୍ଟ୍ୱା ପୁରୁଷାନତିଦାରୁଣାନ୍ ।
ବକ୍ରତୁଣ୍ଡାନୂର୍ଦ୍ଧ୍ୱରୋମ୍ଣ ଆତ୍ମାନଂ ନେତୁମାଗତାନ୍ । ୨୮ ।
ଦୂରେ କ୍ରୀଡ଼ନକାସକ୍ତଂ ପୁତ୍ରଂ ନାରାୟଣାହ୍ୱୟମ୍ ।
ପ୍ଲାବିତେନ ସ୍ୱରେଣୋଚ୍ଚୈରାଜୁହାବାକୁଳେନ୍ଦ୍ରିୟଃ । ୨୯ ।

---

ବୃଦ୍ଧ ଅଜାମିଳ ସେହି ଅବ୍ୟକ୍ତ ମଧୁରଭାଷି ଶିଶୁପୁତ୍ରପ୍ରତି ଅତ୍ୟନ୍ତ ଅନୁରକ୍ତ ହୋଇ ତାହାର ବାଲ୍ୟକ୍ରୀଡ଼ା ଦର୍ଶନ କରି ଅତ୍ୟନ୍ତ ସୁଖ ଅନୁଭବ କରୁଥିଲା । ୨୫ ।

ବାତ୍ସଲ୍ୟ ସ୍ନେହ ପରବଶ ହୋଇ ମୋହାଚ୍ଛନ୍ନ ଅଜାମିଳ ଯେତେବେଳେ ଯାହା ଉପଭୋଗ କରୁଥିଲା ସେହି ଶିଶୁପୁତ୍ରକୁ ଖାଦ୍ୟ ଓ ପାନାଦି ଦେଉଥିଲା କିନ୍ତୁ ତାହାର ମୃତ୍ୟୁ ଯେ ନିକଟବର୍ତ୍ତୀ ତାହା ସେ ଜାଣୁ ନ ଥିଲା । ୨୬ ।

ମୂଢ଼ ଅଜାମିଳ ଏହିପରି ଜୀବନ ଯାପନ କରୁ କରୁ ଯେତେବେଳେ ତାହାର ମୃତ୍ୟୁକାଳ ଉପସ୍ଥିତ ହେଲା ସେତେବେଳେ ନାରାୟଣ ନାମକ ଶିଶୁପୁତ୍ରଠାରେ ମନ ନିବେଶ କରିଥିଲା । ୨୭ ।

ଅଜାମିଳ ଦେଖିଲା ବକ୍ରମୁଖ, ଊର୍ଦ୍ଧ୍ୱରୋମା, ଭୀଷଣାକାର ତିନୋଟି ପୁରୁଷ ବନ୍ଧନପାଶ ନେଇ ତାହାକୁ ନେବାକୁ ଆସିଲେ, ତାହା ଦେଖି ସେ ହୃଦୟରେ ଭୟବ୍ୟାକୁଳ ହୋଇ ନାରାୟଣ ନାମକ ପୁତ୍ର ଦୂରରେ ଖେଳୁଥିବା ଦେଖି ଅଜାମିଳ ଦୃଢ଼ସ୍ୱରରେ ଉଚ୍ଚୈସ୍ୱରରେ ତାହାକୁ ଡାକିଲା । ୨୮,୨୯ ।

---

ତାହାର ଚାହିଁ ରହି ଥୋଇ
ଅନ୍ୟକୁ କେବେହେଁ ନ ଦେଇ
ବାଳକ ସ୍ୱଭାବେ ଅଳ୍ପ
କହଇ ବଚନ କୋମଳ
ତାହାର ଲୀଳାମାନ ଦେଖି
ହରଷ କେ ପାରିବ ଲେଖି ?
ଭୋଜନ ଜଳପାନ ବେଳେ
ନାନାପ୍ରକାରେ ସୁଖଭୋଳେ
ବାଳକ ସ୍ନେହେ ବଶ ହୋଇ
ଅଗ୍ରେ ଭୋଜନ ତାରେ ଦେଇ
ମରଣ ନ ଜାଣଇ ମୂଢ
ବାଳକସ୍ନେହେ ହୋଇ ଦୃଢ ।୨୫,୨୬
ମରଣକାଳ ଉପଗତ
ତକ୍ଷଣେ କରି ଦୃଢ ଚିତ୍ତ
ବାଳକ ନାମ ନାରାୟଣ
ମତି ନିବେଶିଲା ତକ୍ଷଣ ।୨୭।
ଶମନ-ଦୂତେ ପାଶକରେ
ମିଳିଲେ ତାର ସମୀପରେ
ତିନି ପୁରୁଷ ଭୟଙ୍କର
ବକ୍ରବଦନ ତାହାଙ୍କର
ଲମ୍ବ ରୋମ ସର୍ବ ଶରୀର
ଦେଖି ଅଜାମିଳ କାତର ।୨୮।
ଦୂରେ ବାଳକ ସଙ୍ଗେ ମିଳି
ତାହାର ପୁତ୍ର କରେ କେଳି
ଗମ୍ଭୀର ସ୍ୱରେ ଉଚ୍ଚ କରି
ଡାକିଲା ପୁତ୍ର ନାମ ଧରି
ଇନ୍ଦ୍ରିୟ ଆକୁଳେ ତକ୍ଷଣ
ଡାକିଲା ପୁତ୍ର ନାରାୟଣ ।୨୯।

ନିଶମ୍ୟ ମ୍ରିୟମାଣସ୍ୟମୁଖତୋ ହରିକୀର୍ତ୍ତନମ୍ ।
ଭର୍ତ୍ତୁର୍ନାମ ମହାରାଜ ପାର୍ଷଦାଃ ସହସାପତନ୍ । ୩୦ ।
ବିକର୍ଷତୋଽନ୍ତର୍ହୃଦୟାଦ୍ଦାସୀପତିମଜାମିଳମ୍ ।
ଯମପ୍ରେଷ୍ୟାନ୍ ବିଷ୍ଣୁଦୂତା ବାରୟାମାସୁରୋଜସା । ୩୧ ।
ଊଚୁର୍ନିଷେଧିତାଂସ୍ତାଂସ୍ତେ ବୈବସ୍ୱତପୁରଃସରାଃ ।
କେ ଯୂୟଂ ପ୍ରତିଯୋଦ୍ଧାରୋ ଧର୍ମରାଜସ୍ୟ, ଶାସନମ୍ । ୩୨ ।
କସ୍ୟ ବା କୁତ ଆୟାତାଃ କସ୍ମାଦସ୍ୟ ନିଷେଧଥ ।
କିଂ ଦେବା ଉପଦେବା ବା ଯୂୟଂ କିଂ ସିଦ୍ଧସତ୍ତମାଃ । ୩୩ ।
ସର୍ବେ ପଦ୍ମପଲାଶାକ୍ଷାଃ ପୀତକୌଶେୟବାସସଃ ।
କିରୀଟିନଃ କୁଣ୍ଡଳିନୋ ଲସତ୍ପୁଷ୍କରମାଳିନଃ । ୩୪ ।

---

ହେ ରାଜନ ! ଆସନ୍ନ ମୃତ୍ୟୁ ଅଜାମିଳର ମୁଖରୁ ନାରାୟଣ ନାମ ଉଚ୍ଚାରିତ ହେବାରୁ ବିଷ୍ଣୁଦୂତଗଣ ହଠାତ୍ ସେଠାରେ ଉପସ୍ଥିତ ହେଲେ, କାରଣ ସେମାନଙ୍କ ପ୍ରଭୁଙ୍କର ଏହି ନାମ । ୩୦ ।

ଯମଦୂତଗଣ ଏହି ଦାସୀ ପତି ଅଜାମିଳର ହୃଦୟାଭ୍ୟନ୍ତରରୁ ତାହାର ସୂକ୍ଷ୍ମ ଦେହାଶ୍ରିତ ଜୀବାତ୍ମାକୁ ବାହାରି କରି ନେବାକୁ ଚେଷ୍ଟା କରନ୍ତେ ବିଷ୍ଣୁଦୂତଗଣ ଅତ୍ୟନ୍ତ ତେଜସ୍ୱୀ ସ୍ୱରରେ ସେମାନଙ୍କୁ ନିଷେଧ କରିଥିଲେ । ୩୧ ।

ବିଷ୍ଣୁଦୂତମାନେ ଯମଦୂତମାନଙ୍କୁ ନିଷେଧ କରିବାରୁ ସେମାନେ ବିଷ୍ଣୁଦୂତମାନଙ୍କୁ କହିଲେ "ତୁମ୍ଭେମାନେ କିଏ" ଧର୍ମରାଜଙ୍କର ଆଦେଶ ପାଳନ କରିବାକୁ ଆମ୍ଭମାନଙ୍କୁ ନିଷେଧ କରୁଅଛ ? । ୩୨ ।

ତୁମ୍ଭେମାନେ କାହାର ଲୋକ ? କେଉଁଠାରୁ ଆସିଅଛ ! ଏହି ଅଜାମିଳକୁ ନେବା ସକାଶେ କିହେତୁ ନିଷେଧ କରୁଅଛ ? ତୁମ୍ଭେମାନେ ଦେବତା ନା ଉପଦେବତା ? ନା ସିଦ୍ଧଗଣଙ୍କ ମଧ୍ୟରେ କୌଣସି ପ୍ରଧାନ ବ୍ୟକ୍ତି ? । ୩୩ ।

ତୁମ୍ଭମାନଙ୍କର ପଦ୍ମପଳାଶ ଚକ୍ଷୁ ପୀତବର୍ଣ୍ଣ କୌଶେୟ ବସ୍ତ୍ର, ମସ୍ତକରେ ମୁକୁଟ, କର୍ଣ୍ଣରେ କୁଣ୍ଡଳ ଓ କଣ୍ଠଦେଶରେ ସୁନ୍ଦର ପଦ୍ମମାଳା ଶୋଭା ପାଉଅଛି । ୩୪ ।

---

ଗଲା ଯେ ଅଜାମିଳ ପ୍ରାଣ
ସେ ନାମ କରି ସଙ୍କୀର୍ତ୍ତନ
ଶୁଣି ସ୍ୱାମିର ସୁମରଣ
ଆସି ମିଳିଲେ ବିଷ୍ଣୁଗଣ ।୩୦।
ସେ ଅଜାମିଳ ହୃଦୟରୁ
ଜୀବକୁ ଆକର୍ଷଣ କରୁଁ
ଯମ ଦୂତଙ୍କୁ ବିଷ୍ଣୁ ଦୂତେ
ବଳେ ନିବାରିଲେ ତୁରିତେ ।୩୧।

ବଇବସ୍ୱତ ପ୍ରଭୁ ଯାର
ସେ ଦୂତମାନଙ୍କ ଉତ୍ତର
ବିଷ୍ଣୁଦୂତମାନଙ୍କୁ କହି—
ତୁମ୍ଭେ ନିବାର କାହିପାଇଁ ?
ଧର୍ମ୍ମ ରାଜାର ଆଜ୍ଞାମାନ
କିପାଇଁ କରୁଛ ଲଙ୍ଘନ ? ।୩୨।
କାହାର ତୁମ୍ଭେମାନେ ଦୂତ
କାହୁଁ ବା ଅଇଲ ତୁରିତ

କିପାଇଁ ଅମ୍ଭଙ୍କୁ ନିଷେଧ
କିବା ଉତ୍ତମ ତୁମ୍ଭେ ସିଦ୍ଧ
କିବା ଦେବତା ତୁମ୍ଭେମାନେ
ଥାଅ ଦେବଙ୍କ ସନ୍ନିଧାନେ ।୩୩।
ତୁମ୍ଭର ଚକ୍ଷୁ ପଦ୍ମଦଳ
ବିରାଜେ କିରୀଟକୁଣ୍ଡଳ
ଉରେ ଲମ୍ବଇ ବନମାଳ
ଶୋଭଇ ଯେ ପୀତଦୁକୂଳ

ସର୍ବେ ଚ ନୂତ୍ନବୟସଃ ସର୍ବେ ଚାରୁଚତୁର୍ଭୁଜାଃ ।
ଧନୁର୍ନିଷଙ୍ଗାସିଗଦାଶଙ୍ଖଚକ୍ରାମ୍ବୁଜଶ୍ରିୟଃ । ୩୫ ।
ଦିଶୋ ବିତିମିରାଲୋକାଃ କୁର୍ବନ୍ତଃ ସ୍ୱେନ ତେଜସା ।
କିମର୍ଥଂ ଧର୍ମପାଳସ୍ୟ କିଙ୍କରାନ୍ ନୋ ନିଷେଧଥ । ୩୬ ।

ଶ୍ରୀଶୁକ ଉବାଚ ।

ଇତ୍ୟୁକ୍ତେ ଯମଦୂତୈସ୍ତେ ବାସୁଦେବୋକ୍ତକାରିଣଃ ।
ତାନ୍ ପ୍ରତ୍ୟୂଚୁଃ ପ୍ରହସ୍ୟେଦଂ ମେଘନିର୍ହ୍ରାଦୟା ଗିରା । ୩୭ ।

ଶ୍ରୀବିଷ୍ଣୁଦୂତା ଊଚୁଃ ।

ଯୂୟଂ ବୈ ଧର୍ମରାଜସ୍ୟ ଯଦି ନିର୍ଦ୍ଦେଶକାରିଣଃ ।
ବ୍ରୂତ ଧର୍ମସ୍ୟ ନସ୍ତତ୍ତ୍ୱଂ ଯଚ୍ଚ ଧର୍ମସ୍ୟ ଲକ୍ଷଣମ୍ । ୩୮ ।

---

ସମସ୍ତେ ତରୁଣ ବୟସ, ସମସ୍ତେ ଚତୁର୍ହସ୍ତ ଏବଂ ଧନ, ତୂଣୀର, ଅସି; ଗଦା, ଶଙ୍ଖ, ଚକ୍ର, ପଦ୍ମ ହସ୍ତରେ ଧାରଣ କରିଅଛନ୍ତି । ୩୫ ।

ସେମାନଙ୍କର ତେଜ ଦିଙ୍ମଣ୍ଡଳର ଅନ୍ଧକାର ବିଦୂରିତ କରୁଅଛି ଏବଂ ଅନ୍ୟର ତେଜ ପରାହୂତ ହେଉଅଛି, ଆମ୍ଭେମାନେ ଧର୍ମରାଜଙ୍କର ଭୃତ୍ୟ ! ତୁମ୍ଭେମାନେ ଆମ୍ଭମାନଙ୍କୁ ନିଷେଧ କରୁଅଛ କାହିଁକି ? । ୩୬ ।

ଶ୍ରୀଶୁକଦେବ କହିଲେ :—

ଯମଦୂତମାନେ ଏହିପରି କହନ୍ତେ ବିଷ୍ଣୁଦୂତମାନେ ଉଚ୍ଚସ୍ୱରରେ ହାସ୍ୟ କରିଥିଲେ ଏବଂ ମେଘ ଗମ୍ଭୀର ସ୍ୱରରେ ସେମାନଙ୍କୁ କହିଲେ । ୩୭ ।

ଶ୍ରୀବିଷ୍ଣୁଦୂତମାନେ କହିଲେ :—

ତୁମ୍ଭେମାନେ ଯଦି ଧର୍ମରାଜଙ୍କର ଆଜ୍ଞାବହ ତେବେ ଧର୍ମର ସ୍ୱରୂପ ଓ ପ୍ରମାଣ ଆମ୍ଭମାନଙ୍କ ନିକଟରେ କୁହ ଦେଖି । ୩୮ ।

---

ସର୍ବେ ନୂତନ ତନୁ ବୟ
ସ୍ୱଚ୍ଛ ଚତ୍ୱାର ଭୁଜ ବହି
ଶଙ୍ଖ ଚକ୍ର ଗଦା କମଳ
ଏଣେ ଶୋଭ ତୁମ୍ଭେ ସକଳ
ଧନୁ ଖଡ୍ଗ ତୂଣ ଶର
ଏଣେ ଶୋଭିତ ତୁମ୍ଭ କର
ଦିଗମାନଙ୍କର ତିମିର
ଅମ୍ଭ କାନ୍ତିରେ କଲ ଦୂର

ଆମ୍ଭେ ଧର୍ମରାଜ କିଙ୍କର
କଁା ନିଷେଧ ତୁମ୍ଭେ କର ।୩୫।୩୬।

ଶ୍ରୀ ଶୁକ ଉବାଚ—

ଯମଦୂତଙ୍କ କଥା ଅନ୍ତେ
ହସି କହନ୍ତି ବିଷ୍ଣୁଦୂତେ
ମେଘ ଗମ୍ଭୀରସ୍ୱରେ ବାଣୀ
ଯମ-ଦୂତଙ୍କ ଆଗେ ଭଣି ।୩୭।

ଶ୍ରୀ ବିଷ୍ଣୁ ଦୂତା ଊଚୁ—

ତୁମ୍ଭେ ଦୂତ ଧର୍ମ ରାଜର
ତାହାଙ୍କ ଆଜ୍ଞା ଯେବେ କର
ଧର୍ମ ଅଧର୍ମର ଲକ୍ଷଣ
ଆମ୍ଭଙ୍କୁ ତତ୍ତ୍ୱ କହ ପୁଣ
ପ୍ରାଣୀ କି କଲେ ଦଣ୍ଡପାଇ
ଦଣ୍ଡର ସ୍ଥାନ କେବା ହୋଇ

କଥଂ ସ୍ୱିଦ୍ଧ୍ରିୟତେ ଦଣ୍ଡଃ କି ବାସ୍ୟ ସ୍ଥାନମୀପ୍ସିତମ୍ ।
ଦଣ୍ଡ୍ୟାଃ କିଂ କାରିଣଃ ସର୍ବେ ଆହୋସ୍ୱିତ୍ କତିଚନ୍ନୃଣାମ୍ । ୩୯ ।
ଶ୍ରୀଯମଦୂତା ଊଚୁଃ ।
ବେଦପ୍ରଣିହିତୋ ଧର୍ମୋ ହ୍ୟଧର୍ମସ୍ତଦ୍ୱିପର୍ଯ୍ୟୟଃ ।
ବେଦୋ ନାରାୟଣଃ ସାକ୍ଷାତ୍ ସ୍ୱୟମ୍ଭୂରିତି ଶୁଶ୍ରୁମ । ୪୦ ।
ଯେନ ସ୍ୱଧାମ୍ନ୍ୟମୀ ଭାବା ରଜଃସତ୍ତ୍ୱତମୋମୟାଃ ।
ଗୁଣନାମକ୍ରିୟାରୂପୈର୍ବିଭାବ୍ୟନ୍ତେ ଯଥାତଥମ୍ । ୪୧ ।
ସୂର୍ଯ୍ୟୋଽଗ୍ନିଃ ଖଂ ମରୁଦ୍ଦେବଃ ସୋମଃ ସନ୍ଧ୍ୟାହନୀ ଦିଶଃ ।
କଂ କୁଃ ସ୍ୱୟଂ ଧର୍ମ ଇତି ହ୍ୟେତେ ଦୈହ୍ୟସ୍ୟ ସାକ୍ଷିଣଃ । ୪୨ ।
ଏତୈରଧର୍ମୋ ବିଜ୍ଞାତଃ ସ୍ଥାନଂ ଦଣ୍ଡସ୍ୟ ଯୁଜ୍ୟତେ ।
ସର୍ବେ କର୍ମାନୁରୋଧେନ ଦଣ୍ଡମର୍ହନ୍ତି କାରିଣଃ । ୪୩ ।

---

କିପରି ଦଣ୍ଡଧାରଣ କରିବାକୁ ହୁଏ, ଦଣ୍ଡର ଉପଯୁକ୍ତ ବିଷୟ କଣ, କର୍ମ ପଥରେ ପ୍ରବୃତ୍ତ ମନୁଷ୍ୟ ମାତ୍ରକେ ଦଣ୍ଡାର୍ହ ବା କେହି କେହି ଦଣ୍ଡଯୋଗ୍ୟ । ୩୯ ।

ଶ୍ରୀଯମଦୂତମାନେ କହିଲେ :—

ଯାହା ବେଦ ବିହିତ ତାହାହିଁ ଧର୍ମ, ତାହାର ବିପରୀତ ଅର୍ଥାତ୍ ବେଦ ନିଷିଦ୍ଧ ବିଷୟ ଅଧର୍ମ, ଭଗବାନଙ୍କ ନିଶ୍ୱାସମାନେ ତାହାଙ୍କଠାରୁ ପ୍ରକାଶିତ ବେଦ ସାକ୍ଷାତ୍ ନାରାୟଣ ସ୍ୱରୂପ ବୋଲି ଆମ୍ଭେମାନେ ଶୁଣୁଅଛୁ ।୪୦

ଯେ ନିଜ ସ୍ୱରୂପରେ ଅବସ୍ଥିତ ଥାଇଁ ସତ୍ତ୍ୱ, ରଜଃ, ତମଃ ଏହି ତ୍ରିବିଧ ଗୁଣମୟ ପ୍ରାଣୀବର୍ଗଙ୍କୁ ଗୁଣ ନାମ, କ୍ରିୟା ଏବଂ ଆକୃତିର ସହକାରେ ବିବିଧପ୍ରକାରେ ସୃଷ୍ଟି କରିଅଛନ୍ତି, ସେହି ନାରାୟଣ । ୪୧ ।

ସୂର୍ଯ୍ୟ, ଅଗ୍ନି, ଆକାଶ, ବାୟୁ, ଚନ୍ଦ୍ର, ସନ୍ଧ୍ୟା, ଦିବା, ରାତ୍ରି, ଦିକ୍‌ସମୂହ, ଜଳ, ପୃଥିବୀ ଏବଂ ସ୍ୱୟଂ ଧର୍ମ ଏମାନେ ଜୀବର ସକଳ କର୍ମର ସାକ୍ଷୀ । ୪୨ ।

ଏହି ସାକ୍ଷୀମାନଙ୍କ ଦ୍ୱାରା ଯାହା ଅଧର୍ମ ବୋଲି ଜଣାଯାଏ ତାହାହିଁ ଦଣ୍ଡଯୋଗ୍ୟ । ଅଧର୍ମକାରୀ ମାନଙ୍କର ଅପରାଧର ତାରତମ୍ୟ ଅନୁସାରେ ସେମାନେ ଗୁରୁ ବା ଲଘୁ ଦଣ୍ଡର ଯୋଗ୍ୟ ହୋଇ ଥାଆନ୍ତି ।୪୩।

---

ଦଣ୍ଡକୁ ସହିଇ କେମନ୍ତେ
ମନୁଷ୍ୟ ଜନ୍ତୁ ଏ ଜଗତେ ।୩୮ ।୩୯

ଶ୍ରୀ ଯମଦୂତା ଊଚୁ—

ବେଦ ବିହିତ ଯେତେ କର୍ମ
ସେହି ସଂସାରେ ନିତ୍ୟ ଧର୍ମ
ତା ବିନା ଅନ୍ୟ କର୍ମ ଯେତେ
ଅଧର୍ମ ବୋଲନ୍ତି ଜଗତେ
ସାକ୍ଷାତେ ବେଦ ନାରାୟଣ
ଏ କହନ୍ତେ ବ୍ରହ୍ମାର ବଚନ ।୪୦।
ଏ ବେଦ ଆପଣା ଶକ୍ତିରେ
ସତ୍ତ୍ୱ ରଜ ତମ ଗୁଣରେ
ଗୁଣ ନାମ କ୍ରିୟା ରୂପରେ
ଯଥା ତଥାରେ ଭିନ୍ନ କରେ ।୪୧।
ସୂର୍ଯ୍ୟ ଚନ୍ଦ୍ର ଦିଗ ଆକାଶ
ପବନ ସନ୍ଧ୍ୟା ଅହର୍ନିଶ
ଦେବ ଭୂ ଜଳ ଅଗ୍ନି ଧର୍ମ
ମନୁଷ୍ୟ କର୍ମର ସାକ୍ଷିଣ । ୪୨।
ପାପକୁ ଏଣେ କରି ଜାଣି
ଦଣ୍ଡର ସ୍ଥାନ ପରମାଣି
କର୍ମ ଅନୁରୂପ ହୋଇ ଜନ
ଦଣ୍ଡରେ ହୁଅଇ ଭାଜନ ।୪୩।

ସମ୍ଭବନ୍ତି ହି ଭଦ୍ରାଣି ବିପରୀତାନି ଚାନଘାଃ ।
କାରଣଂ ଗୁଣସଙ୍ଗୋଽସ୍ତି ଦେହବାନ୍ନ ହ୍ୟକର୍ମକୃତ୍ । ୪୪ ।
ଯେନ ଯାବାନ୍ ଯଥାଽଧର୍ମୋ ଧର୍ମୋ ବେହ ସମୀହିତଃ ।
ସ ଏବ ତତ୍‌ଫଳଂ ଭୁଂକ୍ତେ ତଥା ତାବଦମୁତ୍ର ବୈ । ୪୫ ।
ଯଥେହ ଦେବପ୍ରବରାସ୍ତ୍ରୈବିଧ୍ୟମୁପଲଭ୍ୟତେ ।
ଭୂତେଷୁ ଗୁଣବୈଚିତ୍ର୍ୟାତ୍ ତଥାନ୍ୟତ୍ରାନୁମୀୟତେ । ୪୬ ।
ବର୍ତ୍ତମାନୋଽନ୍ୟୟୋଃ କାଲୋ ଗୁଣାଭିଜ୍ଞାପକୋ ଯଥା ।
ଏବଂ ଜନ୍ମାନ୍ୟୟୋରେତଦ୍ଧର୍ମାଧର୍ମ ନିଦର୍ଶନମ୍ । ୪୭ ।

---

ହେ ନିଷ୍ପାପ ପୁରୁଷଗଣ ! କର୍ମୀମାନଙ୍କର ପାପ ଓ ପୁଣ୍ୟ ଉଭୟ ସମ୍ଭବପର କାରଣ ସେମାନଙ୍କ ମଧ୍ୟରେ ସତ୍ତ୍ୱାଦି ଗୁଣର ଯୋଗ ଅଛି, ଦେହଧାରୀମାନଙ୍କ ମଧ୍ୟରେ କର୍ମ ରହିତ ହୋଇ କେହି ନାହିଁ ।୪୪

ଇହ ଜନ୍ମରେ ଯେ ଯେଉଁଭାବରେ ଯେଉଁପରିମାଣରେ ଧର୍ମ ବା ଅଧର୍ମ ଆଚରଣ କରେ ସେ ପରଜନ୍ମରେ ସେହି ପରିମାଣରେ ତାହାର ଫଳ ଭୋଗ କରେ । ୪୫ ।

ହେ ଦେବ ପ୍ରବର ! ଇହ ଜନ୍ମରେ ପ୍ରାଣୀମାନଙ୍କର ଶାନ୍ତତ୍ୱ, ଘୋରତ୍ୱ, ଓ ମୂଢତ୍ୱ ପ୍ରଭୃତି ଗୁଣ ଭେଦ ହେତୁ ଯେପରି ତିନିପ୍ରକାର ଭେଦ ଲକ୍ଷିତ ହୁଏ, ସେହିପରି ପରଜନ୍ମରେ ମଧ୍ୟ ଏହିପ୍ରକାର ଭେଦ ଅଛି, ଏହା ଅନୁମାନ ସିଦ୍ଧ । ୪୬ ।

ବର୍ତ୍ତମାନ୍ ବସନ୍ତାଦିକାଳ ଦେଖି ଯେପରି ଅତୀତ ଓ ଭବିଷ୍ୟତ୍ ବସନ୍ତ କାଳର ପୁଷ୍ପଫଳାଦି ଗୁଣଗଣ ଅବଗତ ହେବାକୁ ହୁଏ, ସେହିପରି ବର୍ତ୍ତମାନ୍ ଜନ୍ମ ଦେଖି ଅତୀତ ଓ ଭବିଷ୍ୟତ୍ ଜନ୍ମର ପାପ, ପୁଣ୍ୟାଦି ଜଣାଯାଇ ପାରେ । ୪୭ ।

---

ଅହେ ନିଷ୍ପାପେ ପ୍ରାଣିମାନେ !
କର୍ମ କରନ୍ତି ଯେତେ ଜନେ
ସତ୍କର୍ମ ଯେମାନେ କରନ୍ତି
ସତ୍କର୍ମ ଫଳ ସେ ଲଭନ୍ତି
ମନ୍ଦ କର୍ମରେ ଯୁକ୍ତ ଯେହୁ
ସୁଫଳ ଲଭତ ସେ କାହୁଁ
ବିଧି ନିଷେଧ ବେନି କର୍ମ
ଏ ନିତ୍ୟ କହନ୍ତି ଆଗମ
ବିହିତ କର୍ମ ଯେ କରଇ
ତାର ପାପକୁ ଭୟ ନାହିଁ
ନିଷେଧ କର୍ମ କରେ ଯେହୁ
ସକଳ ଦଣ୍ଡ ସହେ ସେହୁ
ଏ ଲେଖା ବେଦ ବ୍ରହ୍ମମୟେ
ସୁଜନ ବେଦମାର୍ଗେ ରହେ
ଧର୍ମ ଅଧର୍ମ ଆଚରଣ
କରନ୍ତି ଯେତୁ ପ୍ରାଣିମାନ
ସେ ପ୍ରାଣିମାନେ ଅବନୀରେ
ଫଳାଫଳକୁ ଭୋଗ କରେ ।୪୪।୪୫
ହେ ଦେବଶ୍ରେଷ୍ଠ ଭୂତମାନେ
ସଂସାରେ ପ୍ରାଣିମାନେ ଯେତ୍କେ
ତ୍ରିବିଧ ଲକ୍ଷଣ ଲଭନ୍ତି
ଯେ ଯଥା କର୍ମ ଆଚରନ୍ତି
ଗୁଣ ସବନ୍ତ କରୁଁ କରି
ପ୍ରାଣିଙ୍କ ବିଷୟ ଆଚରି
କାଳର ବର୍ତ୍ତମାନ ଗୁଣ
ଭୂତ ଭବିଷ୍ୟତ ପ୍ରମାଣ
ତେସନେ ପ୍ରାଣୀ ଇହ ଜନ୍ମ
ପ୍ରକାଶ କରେ ଧର୍ମାଧର୍ମ ।୪୬।୪୭

ମନସୈବ ପୁରେ ଦେବଃ ପୂର୍ବରୂପଂ ବିପଶ୍ୟତି ।
ଅନୁମୀମାଂସତେ ପୂର୍ବଂ ମନସା ଭଗବାନଜଃ । ୪୮ ।
ଯଥାଜ୍ଞସ୍ତମସା ଯୁକ୍ତ ଉପାସ୍ତେ ବ୍ୟକ୍ତମେବ ହି ।
ନ ବେଦ ପୂର୍ବମପରଂ ନଷ୍ଟଜନ୍ମସ୍ମୃତିସ୍ତଥା । ୪୯ ।
ପଞ୍ଚଭିଃ କୁରୁତେ ସ୍ୱାର୍ଥାନ୍ ପଞ୍ଚ ବେଦାଥ ପଞ୍ଚଭିଃ ।
ଏକସ୍ତୁ ଷୋଡ଼ଶେନ ତ୍ରୀନ୍ ସ୍ୱୟଂ ସପ୍ତଦଶୋଽଶ୍ନୁତେ । ୫୦ ।
ତଦେତତ୍ ଷୋଡଶକଳଂ ଲିଙ୍ଗଂ ଶକ୍ତିତ୍ରୟଂ ମହତ୍ ।
ଧତ୍ତେଽନୁସଂସୃତିଂ ପୁଂସି ହର୍ଷଶୋକଭୟାର୍ତ୍ତିଦାମ୍ । ୫୧ ।

---

ଧର୍ମରାଜ ନିଜ ପୁରରେ ରହି ମନଦ୍ୱାରା ଜୀବର ଧର୍ମଅଧର୍ମାଦିଯୁକ୍ତ ପୂର୍ବ ଜନ୍ମର ଅବସ୍ଥା ବୁଝି ପାରନ୍ତି ଏବଂ ପରେ ମନଦ୍ୱାରାହିଁ ତାହାର ଭାବି ଫଳାଫଳ ନିର୍ଦ୍ଧାରଣ କରି ଥାଆନ୍ତି, କାରଣ ସେ ସାକ୍ଷାତ୍ ବ୍ରହ୍ମାଙ୍କ ତୁଲ୍ୟ ଏବଂ ସର୍ବଜ୍ଞ । ୪୮ ।

ନିଦ୍ରିତ ବ୍ୟକ୍ତି ଯେପରି କେବଳ ସ୍ୱପ୍ନଦୃଷ୍ଟ ବିଷୟ ଗୁଡ଼ିକୁ ପରମାର୍ଥ ବୋଲି ମନେ କରେ ଏବଂ ତାହାର ପୂର୍ବାପର କୌଣସି ବିଷୟ ଅନୁଭବ କରି ନ ପାରେ, ଅବିଦ୍ୟାଚ୍ଛନ୍ନ ଜୀବ ମଧ୍ୟ ସେହିପରି ଜନ୍ମ ଦ୍ୱାରା ତାହାର ପୂର୍ବ ସ୍ମୃତି ଲୁପ୍ତ ହୋଇ ଯାଏ; ସୁତରାଂ ବର୍ତ୍ତମାନ୍ ଦେହାଦିକୁ ସେ ସର୍ବସ୍ୱ ବୋଲି ମନେ କରେ, ପୂର୍ବ ବା ପର ଜନ୍ମର କୌଣସି ବିଷୟ ବୁଝିବାକୁ କ୍ଷମ ହୁଏ ନାହିଁ । ୪୯ ।

ଜୀବ ହସ୍ତାଦି ପାଞ୍ଚୋଟି କର୍ମେନ୍ଦ୍ରିୟ ଦ୍ୱାରା ଗ୍ରହଣାଦି ପଞ୍ଚକାର୍ଯ୍ୟ ସାଧନ କରେ । ଚକ୍ଷୁ ପ୍ରଭୃତି ପାଞ୍ଚୋଟି ଜ୍ଞାନେନ୍ଦ୍ରିୟ ଦ୍ୱାରା ରୂପାଦି ପଞ୍ଚବିଧ ବିଷୟ ଅନୁଭବ କରେ ଏବଂ ସ୍ୱୟଂ ଏକାକୀ ହେଲେ ମଧ୍ୟ ମନ ସହିତ ମିଳିତ ହୋଇ ତ୍ରିବିଧ ବିଷୟଙ୍କ ଅର୍ଥାତ୍ କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ ଓ ମନ ବିଷୟକୁ ଭୋଗ କରିଥାଏ । ୫୦ ।

ସତ୍ତ୍ୱାଦି ଗୁଣତ୍ରୟ ଜନିତ ଷୋଡ଼ଶ କଳା ବିଶିଷ୍ଟ ଏହି ଶରୀର ଜୀବର ହର୍ଷ, ଶୋକ, ଭୟ ଓ ପୀଡ଼ା ଇତ୍ୟାଦି ସାଂସାରିକ ଅବସ୍ଥା ସମ୍ପାଦନ କରେ । ୫୧ ।

---

ଯେ ଧର୍ମରାଜ ଜନ୍ତୁସାଇଁ
ସେ ସଂଯମନୀପୁରେ ଥାଇ
ପ୍ରାଣିର ଅନ୍ତର୍ଯ୍ୟାମୀ ହୋଇ
ଧର୍ମ ଅଧର୍ମକୁ ଜାଣଇ ।୪୮।
ତମୋଗୁଣରେ ଯୁକ୍ତ ହୋଇ
ପ୍ରାଣୀ ସ୍ୱକର୍ମ ନ ଜାଣଇ
ଏ ଦେହେ ଅହମିକା ବହି
ଜନ୍ମ ଅକାରଣେ ନାଶଇ ।୪୯।

ଜ୍ଞାନ-କରମ-ଦଶେନ୍ଦ୍ରିୟ
ମନ ଆଉ ପଞ୍ଚ ବିଷୟ
ଏ ଷୋଡଶ ଲିଙ୍ଗ ଦେହି
ଏ ଜୀବ ଭୁଞ୍ଜଇ ବିଷୟେ
ଯେ ଅବା ପଞ୍ଚଭୂତ ଗୁଣ
ସୃଷ୍ଟିକି କରଇ ଭିଆଣ
ମହତତତ୍ତ୍ୱ ଅହଂକାର
ଏ ଆଦି ଯେତେକ ଅପର

ତ୍ରିଗୁଣ ଶକ୍ତି ଆଦି ଯେତେ
ଏହାକୁ ଧରି ହୃଦଗତେ
ଏମନ୍ତ ପ୍ରକାରେଣ ଦେହୀ
ହରଷ ଶୋକକୁ ଲଭଇ ।୫୦।୫୧।

ଦେହ୍ୟଜ୍ଞୋଽଜିତଷଡ଼ବର୍ଗୋ ନେଚ୍ଛନ୍ କାର୍ଯ୍ୟାଣି କାର୍ଯ୍ୟତେ ।
କୋଶକାର ଇବାତ୍ମାନଂ କର୍ମଣାଚ୍ଛାଦ୍ୟ ମୁହ୍ୟତି । ୫୨ ।
ନହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍ ।
କାର୍ଯ୍ୟତେ ହ୍ୟବଶଃ କର୍ମ ଗୁଣୈଃ ସ୍ୱାଭାବିକୈର୍ବଲାତ୍ । ୫୩ ।
ଲବ୍ଧ୍ୱା ନିମିତ୍ତମବ୍ୟକ୍ତଂ ବ୍ୟକ୍ତାବ୍ୟକ୍ତଂ ଭବତ୍ୟୁତ ।
ଯଥାଯୋନି ଯଥାବୀଜଂ ସ୍ୱଭାବେନ ବଲୀୟସା । ୫୪ ।
ଏଷ ପ୍ରକୃତିସଙ୍ଗେନ ପୁରୁଷସ୍ୟ ବିପର୍ଯ୍ୟୟଃ ।
ଆସୀତ୍ ସ ଏବ ନ ଚିରାଦୀଶସଙ୍ଗାଦ୍ୱିଲୀୟତେ । ୫୫ ।
ଅୟଂ ହି ଶ୍ରୁତସମ୍ପନ୍ନଃ ଶୀଲବୃତ୍ତଗୁଣାଳୟଃ ।
ଧୃତବ୍ରତୋ ମୃଦୁର୍ଦାନ୍ତଃ ସତ୍ୟବାଙ୍ମନ୍ତ୍ରବିଚ୍ଛୁଚିଃ । ୫୬ ।

---

ଯେଉଁ ବ୍ୟକ୍ତି କାମାଦି ଷଡ଼ରିପୁ ଜୟ କରିପାରି ନାହିଁ ସେପରି ଅନଭିଜ୍ଞ ଜୀବ, ଅନିଚ୍ଛୁକ ହେଲେ ମଧ୍ୟ ଶରୀର ତାହାକୁ କର୍ମରେ ପ୍ରବୃତ୍ତ କରାଏ, ଯେପରି କୌଣସି କୌଣସି କୀଟ କୋଷ ପ୍ରସ୍ତୁତ କରି ତଦ୍ୱାରା ନିଜକୁ ଆବୃତ୍ତ କରିଥାନ୍ତି ସେହିପରି ଜୀବ ସ୍ୱକର୍ମ ଜନିତ ଆବରଣରେ ନିଜକୁ ଆବୃତ କରି ମୁଗ୍‌ଧ କରିଥାଏ । ୫୨ ।

କଦାପି କେହି କ୍ଷଣକାଳପାଇଁ କର୍ମ ନ କରି ରହି ନ ପାରେ । କାରଣ ପୂର୍ବ ସଂସ୍କାର ଜନିତ ରାଗାଦିବଶତଃ ଜୀବ ସର୍ବଦା କର୍ମକରିବାକୁ ବାଧ୍ୟ, ତାହାର ମଧ୍ୟ ସ୍ୱାଧୀନତା ନ ଥାଏ । ୫୩ ।

ଅଦୃଷ୍ଟ ପୂର୍ବକାରଣ ବଶରେ ପ୍ରବଳ କର୍ମବାସନାନୁସାରେ ଜୀବର ପିତୃ ମାତୃ ତୁଲ୍ୟ ସ୍ଥୂଳ ଓ ସୂକ୍ଷ୍ମ ଶରୀରର ଉତ୍ପନ୍ନ ହୋଇଥାଏ । ୫୪ ।

ପ୍ରକୃତି ସହିତ ଯୋଗ ହେତୁ ଜୀବର ଏହି ସଂସାରିକ ଅବସ୍ଥାମାନ ଉପସ୍ଥିତ ହୁଏ । ପୁଣି ଭଗବାନଙ୍କ ପ୍ରତି ଭକ୍ତିଯୋଗ ଅବଲମ୍ବନ କଲେ ଅତି ଅଳ୍ପକାଳରେ ସଂସାର ବନ୍ଧନରୁ ମୁକ୍ତ ହୋଇ ସେ ପରମାନନ୍ଦରେ ମଗ୍ନ ହୁଏ । ୫୫ ।

ଏହି ଅଜାମିଳ ଶାସ୍ତ୍ରଜ୍ଞ, ସଚ୍ଚରିତ୍ର, ସଦାଚାର ସମ୍ପନ୍ନ, ଗୁଣୀ, ସଂଯମାଦି ନିୟମବ୍ରତୀ, ବିନୟୀ, ଜିତେନ୍ଦ୍ରିୟ, ସତ୍ୟବାଦୀ, ମନ୍ତ୍ରକୁଶଳ ଓ ପବିତ୍ର ଥିଲା । ୫୬ ।

---

ତେଣୁ ଯେ ଷଡ଼୍‌ବର୍ଗ ଅଜିତ
କରଇଁ କର୍ମ ବିପରୀତ
କୋଷକାରକ ପ୍ରାୟ ହୋଇ
କର୍ମରେ ଆତ୍ମାକୁ ରଖଇ
ଏଅନନ୍ତରେ ପୁଣି ସେହି
ତହୁଁ ରହଇ ମୋହ ହୋଇ ।୫୨।

ସ୍ୱଭାବେ କର୍ମବଶ ହୋଇ
ଜୀବନେ କର୍ମକୁ କରଇ
ଏଥିଅନ୍ତରେ ପୁଣ ସେହି
ଅଦୃଷ୍ଟବଶେ ଦେହବହି
ମାତା ପିତାର ଅନୁରୂପ
ଲଭଇ ସ୍ଥୂଳ ସୂକ୍ଷ୍ମରୂପ ।୫୩।୫୪।

ପ୍ରକୃତି ସଙ୍ଗରୁ ପୁରୁଷ
ଏରୂପେ ସର୍ବ କରେ ନାଶ ।୫୫।
ପୂର୍ବ ବୃତ୍ତାନ୍ତ ଏବେ ଶୁଣ
ବେଦ ସମ୍ପୂର୍ଣ୍ଣ ଏ ବ୍ରାହ୍ମଣ
ଧର୍ମଜ୍ଞ ଶୀଳବନ୍ତ ଗୁଣ
ସୁସାଧୁ ମହତ ଲକ୍ଷଣ

ଗୁର୍ବଗ୍ନ୍ୟତିଥିବୃଦ୍ଧାନାଂ ଶୁଶ୍ରୂଷୁରନହଂକୃତଃ ।
ସର୍ବଭୂତସୁହୃତ୍ ସାଧୁର୍ମିତବାଗନସୂୟକଃ । ୫୭ ।
ଏକଦାସୌ ବନଂ ଯାତଃ ପିତୃସନ୍ଦେଶକୃଦ୍‌ଦ୍ୱିଜଃ ।
ଆଦାୟ ତତ ଆବୃତ୍ତଃ ଫଳପୁଷ୍ପସମିତ୍‌କୁଶାନ୍ । ୫୮ ।
ଦଦର୍ଶ କାମିନଂ କଞ୍ଚିଚ୍ଛୂଦ୍ରଂ ସହ ଭୁଜିଷ୍ୟୟା ।
ପୀତ୍ୱା ଚ ମଧୁ ମୈରେୟଂ ମଦାଘୂର୍ଣ୍ଣିତନେତ୍ରୟା । ୫୯ ।
ମତ୍ତୟା ବିଶ୍ଳଥନ୍ନୀବ୍ୟା ବ୍ୟପେତଂ ନିରପତ୍ରପମ୍ ।
କ୍ରୀଡ଼ନ୍ତମନୁଗାୟନ୍ତଂ ହସନ୍ତମନୟାନ୍ତିକେ । ୬୦ ।
ଦୃଷ୍ଟ୍ୱା ତାଂ କାମଲିପ୍ତେନ ବାହୁନା ପରିରମ୍ଭିତାମ୍ ।
ଜଗାମ ହୃଚ୍ଛୟବଶଂ ସହସୈବ ବିମୋହିତଃ । ୬୧ ।

---

ଯେ ଗୁରୁଜନ, ଅତିଥି, ବୃଦ୍ଧ ସେବା ତତ୍ପର ଥିଲେ, ଏହାଙ୍କର ଅହଙ୍କାର ନ ଥିଲା, ସର୍ବପ୍ରାଣୀଙ୍କ ପ୍ରତି ସହାନୁଭୂତ ଥିଲେ, ସର୍ବଦା ସଦନୁଷ୍ଠାନ କରୁଥିଲେ, ଅଳ୍ପଭାଷୀ ଥିଲେ, କାହାର ପ୍ରତି ତାହାର ହିଂସା ନଥିଲା ।୫୭

ପିତାଙ୍କର ଆଜ୍ଞାପାଳନକାରୀ ଅଜାମିଳ ଦିନେ ବନକୁ ଯାଇ ସେଠାରୁ ଫଳ, ପୁଷ୍ପ, ସମିଧ, କୁଶ ସଂଗ୍ରହ କରି ଆସୁଥିଲେ, ପଥମଧ୍ୟରେ ଦେଖିଲେ ଗୋଟିଏ ଦାସୀ ଅତ୍ୟନ୍ତ ସୁରାପାନ କରି ନିଶାରେ ଉନ୍ମତ୍ତ, ତାହାର ଚକ୍ଷୁ ଦୁଇଟି ଘୂର୍ଣ୍ଣାୟମାନ, ତାହାସହିତ ଗୋଟିଏ ଶୂଦ୍ର କାମ ପରାୟଣ ହୋଇ ଅବସ୍ଥାନ କରୁଥିଲା । ୫୮,୫୯ ।

କାମୋନ୍ମତ୍ତ ସେହି ଦାସୀର କଟିଦେଶରୁ ବସ୍ତ୍ର ଶିଥିଳ ହୋଇଥିଲା, ଅଜାମିଳର ସମ୍ମୁଖରେ ସେହି ଶୂଦ୍ର ଆସ୍ପର ଓ ଲଜ୍ଜା ପରିତ୍ୟାଗ କରି ସେହି ଦାସୀ ସହିତ କ୍ରୀଡ଼ା କୌତୁକ ଓ ହାସ୍ୟ ଗାନ ପ୍ରଭୃତି କରିବାକୁ ଲାଗିଲା । ୬୦ ।

ସେହି କାମୁକ କାମୋଦ୍ଦୀପକ ହରିଦ୍ରାପ୍ରସାଦ ରଞ୍ଜିତ ନିଜର ବାହୁ ବେଷ୍ଟନ ଦ୍ୱାରା ଆଲିଙ୍ଗନ କରିଥିଲା, ତାହା ଦେଖି ଅଜାମିଳ ହଠାତ୍ ମୋହିତ ଓ କାମ ବଶୀଭୂତ ହୋଇ ପଡ଼ିଲା । ୬୧ ।

---

ମୃଦୁ ମଧୁର ଶୁଚ ଦାତା
ସତ୍ୟବଚନ ଧୃତବ୍ରତା
ଅତିଥି ବୃଦ୍ଧ ଗୁରୁ ଅଗ୍ନି
ଏହାଙ୍କ ସେବା ଶିରେ ଘେନି
ସର୍ବଭୂତରେ ମୈତ୍ରପଣ
କ୍ରୋଧବର୍ଜିତ ସାଧୁଗୁଣ
ଅଶେଷ ଗୁଣେ ସ୍ଥାନ ଏହି
ସୁଶୀଳ ବୃତ୍ତିରେ ଥାଅଇ ।୫୬।୫୭
ପିତା ଆଜ୍ଞାରେ ଏ ବ୍ରାହ୍ମଣ
ଏକ କାଳେ ବନଗମନ

ପୁଷ୍ପ ସମିଧ ଫଳ କୁଶ
ଘେନି ଆସନ୍ତେ ମନ ତୋଷ ।୫୮।
ପ୍ରିୟା ସହିତେ ବନେ ଥିଲା
କାମୀ ଶୂଦ୍ରକୁ ଏ ଦେଖିଲା
ମଦ୍ୟପାନରେ ରକ୍ତ ନେତ୍ର
ବିହ୍ୱଳ ହୋଇଅଛି ଗାତ୍ର । ୫୯ ।
ନୀବି ଖସିଛି ମତ୍ତଭରେ
ଶୂଦ୍ରା ଲଜ୍ଜାକୁ କରିଦୂରେ
ହାସ୍ୟ ଗାୟନ କ୍ରୀଡ଼ାରସେ
ଲୀଳା କରଇ ତାର ପାଶେ ।୬୦।

କନ୍ଦର୍ପେ ଲିପ୍ତ ମନ ହୋଇ
ଭୁଜେ ଆଲିଙ୍ଗନ କରଇ
ବିପ୍ର ପ୍ରିୟାକୁ ଦେଖିକରି
ଇନ୍ଦ୍ରିୟବଶେ ଅନୁସରି
ଏମନ୍ତେ ତାହାକୁ ଦେଖିଲା
ମନରେ ମୋହିତ ହୋଇଲା ।୬୧।

ସ୍ତମ୍ଭୟନ୍ନାତ୍ମନାତ୍ମାନଂ ଯାବତ୍‌ସତ୍ତ୍ୱଂ ଯଥାଶ୍ରୁତମ୍ ।
ନ ଶଶାକ ସମାଧାତୁଂ ମନୋ ମଦନବେପିତମ୍ । ୬୨ ।
ତନ୍ନିମିତ୍ତସ୍ମରବ୍ୟାଜଗ୍ରହଗ୍ରସ୍ତୋ ବିଚେତନଃ ।
ତାମେବ ମନସା ଧ୍ୟାୟନ୍ ସ୍ୱଧର୍ମାଦ୍‌ବିରରାମ ହ । ୬୩ ।
ତାମେବ ତୋଷୟାମାସ ପିତ୍ର୍ୟେଣାର୍ଥେନ ଯାବତା ।
ଗ୍ରାମ୍ୟୈର୍ମନୋରମୈଃ କାମୈଃ ପ୍ରସୀଦେତ ଯଥା ତଥା । ୬୪ ।
ବିପ୍ରାଂ ସ୍ୱଭାର୍ଯ୍ୟାମପ୍ରୌଢ଼ାଂ କୁଳେ ମହତି ଲମ୍ଭିତାମ୍ ।
ବିସସର୍ଜାଚିରାତ୍ ପାପଃ ସ୍ୱୈରିଣ୍ୟାପାଙ୍ଗବିଦ୍ଧଧୀଃ । ୬୫ ।
ଯତସ୍ତତଶ୍ଚୋପନିନ୍ୟେ ନ୍ୟାୟତୋଽନ୍ୟାୟତୋ ଧନମ୍ ।
ବଭାରାସ୍ୟାଃ କୁଟୁମ୍ବିନ୍ୟାଃ କୁଟୁମ୍ବଂ ମନ୍ଦଧୀରୟମ୍ । ୬୬ ।

---

ସେ ଧୈର୍ଯ୍ୟ ଓ ଜ୍ଞାନ ଅନୁସାରେ ନିଜକୁ ସଂଯତ କରିବାକୁ ଯତ୍ନବାନ ହେଲେ ମଧ୍ୟ ମନକୁ ଦମନ କରିପାରିଲା ନାହିଁ । ୬୨ ।

ସେହି କୁତ୍ସିତ ବ୍ୟାପାର ଦର୍ଶନକରି କାମରୂପୀଗ୍ରହର ଆକ୍ରମଣ ଦ୍ୱାରା ବିବେକ ହରାଇ ଅଜାମିଳ ସେହି ଦାସୀକୁ ମନେ ମନେ ଚିନ୍ତା କରୁ କରୁ ନିଜେ ସ୍ୱଧର୍ମରୁ ସ୍ଖଳିତ ହେଲା । ୬୩ ।

ଯେପରି ସେହି ଦାସୀ ପ୍ରସନ୍ନା ହେବ ସେଥିପାଇଁ ଗ୍ରାମ୍ୟ ବିବିଧ ମନୋହର ଉପହାର ଏବଂ ପୈତୃକ ସମସ୍ତ ଧନରତ୍ନ ଆଦି ବ୍ୟୟଦ୍ୱାରା ତାହାର ସନ୍ତୋଷ ବିଧାନ କରିବାକୁ ଚେଷ୍ଟା କଲା । ୬୪ ।

ଏହି ପାପାତ୍ମା ଅଜାମିଳ ସେହି ଦୁଶ୍ଚରିତ୍ରା ଦାସୀର କଟାକ୍ଷରେ ବ୍ୟାକୁଳଚିତ୍ତ ହୋଇ ଅଚିରେ ନିଜ ଧର୍ମପତ୍ନୀକୁ ପରିତ୍ୟାଗ କରିଥିଲା, ସେ ଏହି ପତ୍ନୀକୁ ଅତି ଉଚ୍ଚ ବଂଶରୁ ଲାଭ କରିଥିଲା, ସେ ବ୍ରାହ୍ମଣ କନ୍ୟା ଏବଂ ଯୁବତୀ ଥିଲା । ୬୫ ।

ଏହାର ବୁଦ୍ଧିବୃତ୍ତି ଏପରି ମନ୍ଦ ହେଲା ଯେ ଯେଉଁଠାରୁ ଇଚ୍ଛା ସେଠାରୁ ନ୍ୟାୟ ବା ଅନ୍ୟାୟ ଉପାୟରେ ଧନ ଆଣି ସେହି ପ୍ରିୟ ଦାସୀର ଆତ୍ମୀୟ ବର୍ଗଙ୍କୁ ପୋଷଣ କଲା । ୬୬ ।

---

ଆପଣା ଆତ୍ମା ସ୍ଥିର କରି
ମନରେ ବହୁତ ବିଚାରି
ହେଲେହେଁ ସତ୍ତ୍ୱଗୁଣେ ସ୍ଥିତ
କନ୍ଦର୍ପେ ହୋଇଲା ପୀଡ଼ିତ ।୬୨
ପ୍ରିୟା ବିଷୟେ ଅଭିରାମ
କପଟ ଗ୍ରହ ହୋଇ କାମ
ତେଣେ ପ୍ରମତ୍ତ ମନ ତାର
ନିଜ ଧର୍ମକୁ କଲା ଦୂର ।୬୩।

ପ୍ରେମ ଉଦ୍ଭବ ମନୋହରେ
ସେହିରେ ପ୍ରିୟ ବିଷୟରେ
ତାହାକୁ ପରିତୋଷ କରି
ପ୍ରସନ୍ନ ଯେପରେ ସୁନ୍ଦରୀ
ନିଜ ଯୁବତୀ କୁଳସ୍ତ୍ରୀ
ତ୍ୟଜିଲା ଦୁଷ୍ଟ ମନ୍ଦାଶ୍ରୀ
ସ୍ୱୈରିଣୀ * ଅପାଙ୍ଗ ଇଙ୍ଗିତେ
ବନ୍ଦୀ ହୋଇଲା ତାର ଚିତ୍ତେ ।୬୫

ଅଧର୍ମବୁଦ୍ଧି ଏ ବ୍ରାହ୍ମଣ
ନିରତେ ବେଶ୍ୟାପରାୟଣ
ଧର୍ମେ ଅଧର୍ମେ ଧନ ଆଣି
ସନ୍ତୋଷ କରଇ ସ୍ୱୈରିଣୀ ।୬୬।

*ସ୍ୱୈରିଣୀ—ଭ୍ରଷ୍ଟାନାରୀ

ଯଦସୌ ଶାସ୍ତ୍ରମୁଲ୍ଲଙ୍ଘ୍ୟ ସ୍ୱୈରଚାର୍ଯ୍ୟତିଗର୍ହିତଃ ।
ଅବର୍ତ୍ତତ ଚିରଂ କାଳମଘାୟୁରଶୁଚିର୍ମଲାତ୍ ।୬୭ ।
ତତ ଏନଂ ଦଣ୍ଡପାଣେଃ ସକାଶଂ କୃତକିଲ୍‌ବିଷମ୍ ।
ନେଷ୍ୟାମୋଽକୃତନିର୍ବେଶଂ ଯତ୍ର ଦଣ୍ଡେନ ଶୁଦ୍ଧ୍ୟତି । ୬୮ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଅଜାମିଳୋପାଖ୍ୟାନେ ଶ୍ରୀବିଷ୍ଣୁଯମପୁରୁଷ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ । ୧ ।

---

ଏହି ବ୍ରାହ୍ମଣ ଅଜାମିଳର ଜୀବନ ଅତି ପାପମୟ, ବହୁକାଳଧରି ଏ ବ୍ୟକ୍ତି ଶାସ୍ତ୍ରବିଧି ଲଙ୍ଘନ କରି ସେହି ଦୁଷ୍ଟା ଦାସୀର ଅନ୍ନାଦି ଭକ୍ଷଣକରି ଅତି ଗର୍ହିତ ଭାବରେ ସ୍ୱେଚ୍ଛାଚାରରେ ଜୀବନଯାପନକଲା ଏବଂ ଅମୃତ ପାପର କୌଣସି ପ୍ରାୟଶ୍ଚିତ୍ତ କଲା ନାହିଁ, ଅତଏବ ଏହି ପାପିଷ୍ଠକୁ ଯମରାଜାଙ୍କ ନିକଟ ନେଇ ସେଠାରେ ଦଣ୍ଡ ଦେଲେ ଜୀବ ନିସ୍ତୃତ ଲାଭ କରିବ । ୬୭,୬୮ ।

---

ଯେଉଁ କାରଣୁ ଲଂଘି ଶାସ୍ତ୍ର
ସ୍ୱୈରିଣୀ ରତ ଅବିରତ
ଗର୍ହିତ କର୍ମେ ପ୍ରବର୍ତ୍ତିଲା
ପୂର୍ବର ଧର୍ମ୍ମ ନାଶ କଲା ।୬୭

ଏଣୁ ଏ ଦ୍ୱିଜ ପାପୀ ନେଇ
ଯମର ଛାମୁରେ ଦେବଇ ।୬୮ ।
ବୋଲଇ ଜଗନ୍ନାଥ ଦାସ
ଯମ-ଦୂତେ ବେଦ ପ୍ରକାଶ ।





**ଭାବାର୍ଥ :—**

ପ୍ରବୃତ୍ତିମାର୍ଗ, ନିବୃତ୍ତିମାର୍ଗ ମନ୍ୱନ୍ତର ଏବଂ ପୃଥିବୀ, ଗ୍ରହ, ନକ୍ଷତ୍ର, ଚନ୍ଦ୍ର, ସୂର୍ଯ୍ୟ ଏବଂ ନରକ ଇତ୍ୟାଦିର ବୃତ୍ତାନ୍ତ ଯାହାକି ଦ୍ୱିତୀୟସ୍କନ୍ଧଠାରୁ ପଞ୍ଚମସ୍କନ୍ଧ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଅଛି, ସଂକ୍ଷେପରେ ପ୍ରଥମ ଛଗୋଟି ଶ୍ଳୋକରେ ତାହା ଷଷ୍ଠସ୍କନ୍ଧର ପ୍ରସ୍ତାବନାରୂପେ ଉଲ୍ଲେଖ କରାଯାଇଅଛି । ନରକମାନ ଏବଂ ତନ୍ମଧ୍ୟ ଯନ୍ତ୍ରଣାମାନ ପୁର ଶୁଣି ମହାରାଜପରୀକ୍ଷିତଙ୍କ ହୃଦୟ ଅତ୍ୟନ୍ତ ବ୍ୟାକୁଳିତ ହେବା ସ୍ୱାଭାବିକ, ସୁତରାଂ ସେ ଗୁରୁ ଶ୍ରୀ ଶୁକଦେବଙ୍କୁ ପ୍ରଶ୍ନ କଲେ "ସଂସାରୀମାନେ କି ଉପାୟ ଅବଲମ୍ବନ କଲେ ଏହି ନରକ ଯନ୍ତ୍ରଣାରୁ ରକ୍ଷା ପାଇ ପାରିବେ" ? । ପ୍ରଥମତଃ ପ୍ରାୟଶ୍ଚିତ୍ତର ପ୍ରସଙ୍ଗ ଉଲ୍ଲେଖ କରି ଶ୍ରୀ ଶୁକଦେବ କର୍ମ, ଜ୍ଞାନ ଓ ଭକ୍ତି ମାର୍ଗର କଥା କହିଲେ । ଉଦାହରଣ ସ୍ୱରୂପ ସେ ଅଜାମିଳ ଉପାଖ୍ୟାନ ଶ୍ରୀରାଜା ପରୀକ୍ଷିତଙ୍କୁ ଶୁଣାଇଥିଲେ, ଅଜାମିଳର ପ୍ରଥମ ଜୀବନ ବିଶୁଦ୍ଧ, ସେ ଜଣେ ସଂଯମୀ, ନିଷ୍ଠାବାନ୍, ଚରିତ୍ରବାନ୍, ଶିକ୍ଷିତ, ଦେବଦ୍ୱିଜ ଗୁରୁଭକ୍ତ ବ୍ୟକ୍ତି ଥିଲେ, ମାତ୍ର ମନୁଷ୍ୟର ମନର ଦୁର୍ବଳତା ପୂର୍ବସ୍କନ୍ଧରେ ଉଲ୍ଲେଖ କରାଯାଇ ଅଛି, ସେହି ଦୁର୍ବଳ ମନର ବଶବର୍ତ୍ତୀ ହୋଇ ସେ ଦିନେ ସତ୍‌ମାର୍ଗରୁ ବିଚ୍ୟୁତ ହେଲେ, ଗୋଟିଏ ଶୂଦ୍ରା ଦାସୀର ପାପ ପ୍ରଣୟରେ ପଡ଼ି, ତାଙ୍କର ଏପରି ଅଧୋଗତି ହେଲା ଯେ ସେ ସତ୍ ବା ଅସତ୍ କଅଣ ତାହା ନିର୍ଣ୍ଣୟ କରିବା ଦୂରେ ଥାଉ, ଯେ କୌଣସି ଉପାୟରେ ଅର୍ଥୋପାର୍ଜ୍ଜନ କରି ସେହି ଦାସୀର ତୁଷ୍ଟି ବିଧାନ କଲେ ଚୌର୍ଯ୍ୟ, ଶଠତା, ପ୍ରଭୃତି ତାହାଙ୍କର ଜୀବନର କର୍ମପନ୍ଥା ହେଲା, ସେହି ଦାସୀ ଗର୍ଭରୁ ତାଙ୍କର ଦଶଟିପୁତ୍ର ଜନ୍ମିଲେ, କନିଷ୍ଠର ନାମ 'ନାରାୟଣ', ସେହି କନିଷ୍ଠ ପୁତ୍ରପ୍ରତି ସେ ଅତ୍ୟନ୍ତ ସ୍ନେହୀଥିଲେ । ବୃଦ୍ଧେ ତାହାଙ୍କର ମୃତ୍ୟୁ ନିକଟବର୍ତ୍ତୀ ହୁଅନ୍ତେ ଯମଦୂତମାନେ ତାହାଙ୍କର ଅନ୍ତର ମଧ୍ୟରୁ ଜୀବାତ୍ମାକୁ ବାହାରକରି ଯମଦ୍ୱାରକୁ ନେବାକୁ ଉପସ୍ଥିତ ହେଲେ, ସେମାନଙ୍କ ଭୀଷଣାକୃତି ଦେଖି ଅଜାମିଳ ଭୀତତ୍ରସ୍ତ ହୋଇ ନାରାୟଣ' ପୁତ୍ରକୁ ଡ଼ାକିଲା । ନାରାୟଣ ଡ଼ାକ ଶୁଣି ବିଷ୍ଣୁଦୂତମାନେ ସେଠାରେ ଆସି ଉପସ୍ଥିତ ହେଲେ, ବିଷ୍ଣୁଦୂତମାନେ ଅଜାମିଳଙ୍କୁ ଯମଦୂତମାନେ ନେବା ବିଷୟରେ ବାଧା ଦେଲେ, ଏହିଠାରେ ଯମଦୂତ ଓ ବିଷ୍ଣୁ ଦୂ॰ମାନଙ୍କ ମଧ୍ୟରେ କଥୋପକଥନ ହେଲା । ବିଷ୍ଣୁଦୂତମାନଙ୍କର ପ୍ରଶ୍ନର ଉତ୍ତରରେ ଯମଦୂତମାନେ ବେଦ ନିର୍ଦ୍ଦେଶିତ ପନ୍ଥାକୁ ଧର୍ମ ଓ ବେଦ ନିଷିଦ୍ଧମାର୍ଗକୁ ଅଧର୍ମ ବୋଲି ବ୍ୟାଖ୍ୟା କଲେ, ଯମଦୂତମାନେ ଅଜାମିଳର ଜୀବନ ବୃତ୍ତାନ୍ତ ଓ ତତ୍‌କୃତ ପାପ ପ୍ରସଙ୍ଗ ବିଷ୍ଣୁଦୂତମାନଙ୍କୁ ଶୁଣାଇଥିଲେ । ଯମଦୂତମାନେ ଅଜାମିଳଙ୍କର ପୂର୍ବ ବୃତ୍ତାନ୍ତ ବିଷ୍ଣୁଦୂତମାନଙ୍କୁ ଶୁଣାଥିଲେ, ଏଥିର ଉଦ୍ଦେଶ୍ୟ ଅଜାମିଳର ଶିକ୍ଷା ଦୀକ୍ଷା ଆଦି ଦୃଷ୍ଟେ ତାଙ୍କର ଦୃଢ଼ମନା ନ ହୋଇ ଧର୍ମପଥରୁ ସ୍ଖଳିତ ହେବା ଉଚିତ ନ ଥିଲା, କାରଣ ଜଣେ ସାଧାରଣ ଅଶିକ୍ଷିତ ବ୍ୟକ୍ତି ଯାହା କଲେ ଦୋଷୀ ହୋଇ ନ ପାରେ ବା ତାର ପାପ ଗୁରୁତର ହୋଇ ନ ପାରେ, ଜଣେ ଶିକ୍ଷିତ ବ୍ୟକ୍ତି ତାହା କଲେ ଅଧିକ ଅପରାଧୀ, ତେଣୁ ଶ୍ରୀମଦ୍ ଭଗବଦ୍‌ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ, କହିଅଛନ୍ତି :—

ଯଦ୍‌ଯଦା ଚରତଶ୍ରେଷ୍ଠ ସ୍ତତ୍ତଦେବେତର ଜନାଃ ।
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ॥ [ଗୀତା]

ଏହି ଶ୍ଳୋକ ସାମାନ୍ୟ ପରିବର୍ତ୍ତିତ ହୋଇ ୨ୟ ଅଧ୍ୟାୟରେ ୪ର୍ଥ ଶ୍ଳୋକରେ ବର୍ଣ୍ଣିତ ହୋଇଅଛି । ସମାଜର ଅଗ୍ରଣୀସ୍ଥାନୀୟ ବ୍ୟକ୍ତିମାନେ ଯେଉଁ ମାର୍ଗ ଅବଲମ୍ବନ କରନ୍ତି, ସାଧାରଣ ବ୍ୟକ୍ତି ତାହା ଅନୁସରଣ କରନ୍ତି, ସୁତରାଂ ଅଗ୍ରଣୀସ୍ଥାନୀୟ ବ୍ୟକ୍ତି ନିଜର ବ୍ୟକ୍ତିଗତ ଦାୟିତ୍ୱ ସକାଶେ ଅପରାଧୀ ଏବଂ ସମାଜକୁ ପଥ ଭ୍ରଷ୍ଟ କରାଇବା ସକାଶେ ମଧ୍ୟ ଦାୟୀ, ବିଷ୍ଣୁଦୂତମାନଙ୍କର ଉତ୍ତର ପର ଅଧ୍ୟାୟରେ ଆଲୋଚିତ ହେବ ।

## ଦ୍ୱି ତୀ ୟ ଅ ଧ୍ୟା ୟ ।

ଦ୍ୱିତୀୟେ ବୈଷ୍ଣବୈର୍ଯାମ୍ୟାନ୍ ନାମମାହାତ୍ମ୍ୟମଦ୍ଭୁତମ୍ ।
ଶ୍ରାବୟିତ୍ୱା ଦ୍ୱିଜୋ ବିଷ୍ଣୁଲୋକଂ ନୀତ ଇତୀର୍ଯ୍ୟତେ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀବାଦରାୟଣିରୁବାଚ ।

ଏବଂ ତେ ଭଗବଦ୍ଦୂତା ଯମଦୂତାଭିଭାଷିତମ୍ ।
ଉପଧାର୍ଯ୍ୟାଥ ତାନ୍ ରାଜନ୍ ପ୍ରତ୍ୟାହୁର୍ନୟକୋବିଦାଃ । ୧ ।

ଶ୍ରୀବିଷ୍ଣୁଦୂତା ଊଚୁଃ ।

ଅହୋ କଷ୍ଟଂ ଧର୍ମ୍ମଦୃଶାମଧର୍ମ୍ମଃ ସ୍ପୃଶତେ ସଭାମ୍ ।
ଯତ୍ରାଦଣ୍ଡ୍ୟେଷ୍ୱପାପେଷୁ ଦଣ୍ଡୋ ଯୈର୍ଧ୍ରିୟତେ ବୃଥା । ୨ ।
ପ୍ରଜାନାଂ ପିତରୋ ଯେ ଚ ଶାସ୍ତାରଃ ସାଧବଃ ସମାଃ ।
ଯଦି ସ୍ୟାତ୍ତେଷୁ ବୈଷମ୍ୟଂ କଂ ଯାନ୍ତି ଶରଣଂ ପ୍ରଜାଃ । ୩ ।

---

### ବିଷ୍ଣୁଦୂତମାନଙ୍କ ପ୍ରତ୍ୟୁତ୍ତର ଓ ଅଜାମିଳର ବୈକୁଣ୍ଠ ଗମନ ।

ଦ୍ୱିତୀୟ ଅଧ୍ୟାୟରେ ବିଷ୍ଣୁଦୂତମାନେ ଯମଦୂତମାନଙ୍କୁ ନାମର ଅଦ୍ଭୁତ ମାହାତ୍ମ୍ୟ ଶୁଣାଇ ଦ୍ୱିଜ ଅଜାମିଳକୁ ବୈକୁଣ୍ଠପୁରକୁ ନେବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ସେହି ନ୍ୟାୟ ନିପୁଣ ବିଷ୍ଣୁଦୂତଗଣ ଯମଦୂତମାନଙ୍କ ବାକ୍ୟ ଶ୍ରବଣ କରି ସେମାନଙ୍କୁ କହିଲେ । ୧ ।

ଶ୍ରୀବିଷ୍ଣୁଦୂତମାନେ କହିଲେ :—

"ଆହା କି ଦୁଃଖର ବିଷୟ ! ଧର୍ମାନୁଗତ ସାଧୁପୁରୁଷମାନଙ୍କ ସଭାରେ ଅଧର୍ମ ସ୍ପର୍ଶ କରିଅଛି । କାରଣ ସେ ସଭାରେ ଅଦଣ୍ଡନୀୟ ନିଷ୍ପାପ ବ୍ୟକ୍ତିମାନଙ୍କ ପ୍ରତି ଅନର୍ଥକ ଦଣ୍ଡ ବିଧାନ କରାଯାଉଅଛି । ୨ ।

ଯେଉଁ ମହାପୁରୁଷମାନେ ପିତୃତୁଲ୍ୟ ଅପକ୍ଷପାତଭାବରେ ପ୍ରଜାମାନଙ୍କ ଶାସନକାର୍ଯ୍ୟରେ ରତ, ସେମାନଙ୍କମଧ୍ୟରେ ଯଦି ବୈଷମ୍ୟ ଘଟେ ତେବେ ସେମାନେ କାହାର ଶରଣାପନ୍ନ ହେବେ ? । ୩ ।

---

ଦ୍ୱିତୀୟାଧ୍ୟାୟେ ବିଷ୍ଣୁଦୂତେ, ନାମ ମହିମା ଯମଦୂତେ । ଶୁଣାଇ ବିପ୍ର ଅଜାମିଳେ, ବିଷ୍ଣୁ-ଲୋକକୁ ଘେନିଗଲେ

ଶ୍ରୀ ବାଦରାୟଣିରୁବାଚ—
ଏମନ୍ତ କହୁଁ ଯମଦୂତେ
ତା ଶୁଣି ଭଗବତ ଦୂତେ
ରାଜନ ଶୁଣ ଏ ଅନ୍ତରେ
ତାହାଙ୍କ ବାକ୍ୟ ଅନୁସାରେ
ସକଳ ଧର୍ମ୍ମ ସେ ଜାଣନ୍ତି
ଯମ-ଦୂତଙ୍କୁ ବୋଲୁଛନ୍ତି ।୧।

ଶ୍ରୀ ବିଷ୍ଣୁଦୂତା ଊଚୁଃ—
ଏତ ଅତ୍ୟନ୍ତ ଅଦଭୁତ
ଦେଖିଲୁଁ ତୁମ୍ଭର ଚରିତ
ସମଦରଶୀ ସାଧୁଜନେ
ଅଧର୍ମ୍ମ ପରଶେ କେସନେ
ଅଦଣ୍ଡ୍ୟ ଅପାପୀ ଯେ ପ୍ରାଣୀ
ତାହାଙ୍କୁ ଦଣ୍ଡ ବ୍ୟର୍ଥେ ପୁଣି ।୨।

ପ୍ରଜାମାନଙ୍କ ପିତା ଯେହୁ
ସେ ଯେବେ ପ୍ରଜାଶାସ୍ତି ଦେଇ
ତେବେ ସେ କାହାର ଶରଣ
ହୋଇବ କହ ଏ କାରଣ ।୩।

ଯଦ୍‌ଯଦାଚରତି ଶ୍ରେୟାନିତରସ୍ତତ୍ତଦୀହତେ ।
ସ ଯତ୍‌ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ । ୪ ।
ଯସ୍ୟାଙ୍କେ ଶିର ଆଧାୟ ଲୋକଃ ସ୍ୱପିତି ନିର୍ବୃତଃ ।
ସ୍ୱୟଂ ଧର୍ମ୍ମମଧର୍ମ୍ମଂ ବା ନ ହି ବେଦ ଯଥା ପଶୁଃ । ୫ ।
ସ କଥଂ ନ୍ୟର୍ପିତାତ୍ମାନଂ କୃତମୈତ୍ରମଚେତନମ୍ ।
ବିସ୍ରମ୍ଭଣୀୟୋ ଭୂତାନାଂ ସଘୃଣୋ ଦ୍ରୋଗ୍‌ଧୁମର୍ହତି । ୬ ।
ଅୟଂ ହି କୃତନିର୍ବେଶୋ ଜନ୍ମକୋଟ୍ୟଂହସାମପି ।
ଯଦ୍‌ବ୍ୟାଜହାର ବିବଶୋ ନାମସ୍ୱସ୍ତ୍ୟୟନଂ ହରେଃ । ୭ ।
ଏତେନୈବ ହ୍ୟଘୋନୋଽସ୍ୟ କୃତଂ ସ୍ୟାଦଘନିଷ୍କୃତମ୍ ।
ଯଦା ନାରାୟଣାୟେତି ଜଗାଦ ଚତୁରକ୍ଷରମ୍ । ୮ ।

---

ଶ୍ରେଷ୍ଠ ବ୍ୟକ୍ତିମାନେ ଯେଉଁ ଆଚରଣ କରନ୍ତି, ସାଧାରଣଲୋକେ ତାହାହିଁ କରନ୍ତି, ସେମାନେ ଯାହା କର୍ତ୍ତବ୍ୟ ରୂପେ ପ୍ରମାଣିତ କରନ୍ତି, ଅନ୍ୟମାନେ ତହିଁର ଅନୁବର୍ତ୍ତୀ ହୁଅନ୍ତି । ୪ ।

ଲୋକେ ଯାହାର କୋଡ଼ରେ ମସ୍ତକରଖି ନିର୍ଭୟରେ ନିଦ୍ରା ଯାନ୍ତି, ପଶୁତୁଲ୍ୟ ନିଜେ ଧର୍ମ ଅଧର୍ମର ପାର୍ଥକ୍ୟ ବୁଝିପାରନ୍ତି ନାହିଁ, ସର୍ବପ୍ରାଣୀଙ୍କର ବିଶ୍ୱାସ ସ୍ଥଳ ସେହି ପୁରୁଷ ଯଦି ଦୟାବାନ୍ ନ ହୁଅନ୍ତି, ତାହା ହେଲେ ସେ ସେହି ମିତ୍ରଭଞ୍ଜନକର ଆଶ୍ୱସ୍ତ ଆତ୍ମସମର୍ପଣ କାରୀ, ହିତାହିତ ଜ୍ଞାନଶୂନ୍ୟ ବ୍ୟକ୍ତିର ଅନିଷ୍ଟ ସାଧନରେ କପରି ପ୍ରବୃତ୍ତ ହେବେ ? । ୫,୬ ।

ଏହି ଅଜାମିଳ ମୃତ୍ୟୁର ଅବ୍ୟବହିତ କାଳରେ ଅବସନ୍ନ ହୋଇ ଭବବନ୍ଧନ ମୋଚନକାରୀ ନାରାୟଣ ନାମ ଉଚ୍ଚାରଣ କରିବା ଦ୍ୱାରା ତାହାର କୋଟି ଜନ୍ମାର୍ଜ୍ଜିତ ପାପରାଶିର ପ୍ରାୟଶ୍ଚିତ୍ତ ହୋଇ ସାରିଅଛି । ୭ ।

"ନାରାୟଣ ଆସ" ଏହି ଶବ୍ଦ ଉଚ୍ଚାରଣ ଦ୍ୱାରା ନାରାୟଣ ଭଗବାନଙ୍କର ନାମ ଏହି ଅକ୍ଷର ଚତୁଷ୍ଟୟ ଉଚ୍ଚାରିତ ହେବାମାତ୍ରେ ପାପି ଅଜାମିଳର ପାପର ପ୍ରାୟଶ୍ଚିତ୍ତ ହୋଇ ଯାଇଅଛି । ୮ ।

---

ମହତେ ଯାହା ଆଚରିବେ
ଇତରେ ତାହାହିଁ କରିବେ
ସେ ଯାହା ପ୍ରମାଣ କରିବେ
ଲୋକେ ସେ ପଥେ ପ୍ରବର୍ତ୍ତିବେ ।୪
ଯାହାର ଅଙ୍କେ ଶିର ଦେଇ
ନିଃଶଙ୍କେ ନିଦ୍ରା ଜନ ଯାଇ
ପଶୁ ଯେସନେ ମୂଢେ ଥାଇ
ଧର୍ମ୍ମ ଅଧର୍ମ୍ମ ନ ଜାଣଇ

ମିତ୍ର ସ୍ୱଭାବେ ଯାର ତହିଁ
ବିଶ୍ୱାସେ ଆତ୍ମା ସମର୍ପଇ
ବିଶ୍ୱାସ ସର୍ବ ପ୍ରାଣିଙ୍କର
ଦୟା ପୂରିତ ଯା ଶରୀର
ବିଶ୍ୱାସି ପ୍ରାଣିଙ୍କି କେମନ୍ତେ
ସେ ହିଂସା କରେ ହୃଦଗତେ ।୫।୬।
କୋଟି ଜନ୍ମର ଶୁଭଫଳ
କଲା ଏ ଦ୍ୱିଜ ଅଜାମିଳ

ଯେଣୁ ଆକୁଳେ "ନାରାୟଣ"
ମଙ୍ଗଳ କଲା ଉଚ୍ଚାରଣ । ୭ ।
ଏଣୁ ଏ ପାପ ମଳକୃତ
ସଂଜାତ କଲା ପ୍ରାୟଶ୍ଚିତ୍ତ
ଯେଣୁ ଚତୁରାକ୍ଷର ନାମ
ମୁଖେ ବୋଇଲା 'ନାରାୟଣ' ।୮।

ସ୍ତେନଃ ସୁରାପୋ ମିତ୍ରଧ୍ରୁଗ୍ ବ୍ରହ୍ମହା ଗୁରୁତଳ୍ପଗଃ ।
ସ୍ତ୍ରୀରାଜପିତୃଗୋହନ୍ତା ଯେ ଚ ପାତକିନୋଽପରେ । ୯ ।
ସର୍ବେଷାମପ୍ୟଘବତାମିଦମେବ ସୁନିଷ୍କୃତମ୍ ।
ନାମବ୍ୟାହରଣଂ ବିଷ୍ଣୋର୍ଯତସ୍ତଦ୍ୱିଷୟା ମତିଃ । ୧୦ ।
ନ ନିଷ୍କୃତୈରୁଦିତୈର୍ବ୍ରହ୍ମବାଦିଭିସ୍ତଥା ବିଶୁଦ୍ଧ୍ୟତ୍ୟଘବାନ୍ ବ୍ରତାଦିଭିଃ ।
ଯଥା ହରେର୍ନାମ ପଦୈରୁଦାହୃତୈସ୍ତଦୁତ୍ତମଃଶ୍ଳୋକଗୁଣୋପଲମ୍ଭକମ୍ ।୧୧।
ନୈକାନ୍ତିକଂ ତଦ୍ଧି କୃତେଽପି ନିଷ୍କୃତେ ମନଃ ପୁନର୍ଧାବତି ଚେଦସତ୍ପଥେ ।
ତତ୍ କର୍ମନିର୍ହାରମଭୀପ୍ସତାଂ ହରେର୍ଗୁଣାନୁବାଦଃ ଖଲୁ ସତ୍ତ୍ୱଭାବନଃ ।୧୨।
ଅଥୈନଂ ମାପନୟତ କୃତାଶେଷାଘନିଷ୍କୃତମ୍ ।
ଯଦସୌ ଭଗବନ୍ନାମ ମ୍ରିୟମାଣଃ ସମଗ୍ରହୀତ୍ । ୧୩ ।

ହେ ଯମଦୂତଗଣ ! ସ୍ୱର୍ଣ୍ଣ ଚୌର୍, ମଦ୍ୟପାୟୀ, ମିତ୍ରଦ୍ରୋହୀ, ବ୍ରହ୍ମହତ୍ୟାକାରୀ, ଗୁରୁପତ୍ନୀଗାମୀ, ସ୍ତ୍ରୀହତ୍ୟାକାରୀ, ରାଜଦ୍ରୋହୀ, ପିତୃହନ୍ତା; ଗୋହନ୍ତା, ବା ଅନ୍ୟ ଯେ କୌଣସି ପ୍ରକାରେ ପାପୀ ହେଉ ପଛକେ ସର୍ବପ୍ରକାର ପାପିଙ୍କର ପକ୍ଷରେ ଭଗବାନଙ୍କ ନାମୋଚ୍ଚାରଣହିଁ ଶ୍ରେଷ୍ଠ ପ୍ରାୟଶ୍ଚିତ, କାରଣ ଯେଉଁ ବ୍ୟକ୍ତି ସେ ନାମ ଉଚ୍ଚାରଣ କରେ ତାହାପ୍ରତି ଭଗବାନଙ୍କର ମମତା ଜନ୍ମିଥାଏ । ୯, ୧୦ ।

ଭଗବାନଙ୍କର ନାମୋଚ୍ଚାରଣରେ ଯେପରି ଶୁଦ୍ଧି ଜନ୍ମେ, ବେଦାର୍ଥବାଦୀ, ମନ୍ୱାଦିମୁନିଗଣ ପାପିଙ୍କେକ ପକ୍ଷରେ ପରାକ, ଚାନ୍ଦ୍ରାୟଣ ପ୍ରଭୃତି ବ୍ରତାଦି ବିଧାନ କରିଅଛନ୍ତି । ପାପିମାନେ ତଦ୍ୱାରା ଯେପରି ଶୁଦ୍ଧିଲାଭ ନ କରି ପାରନ୍ତି, କେବଳ ପୁଣ୍ୟକୀର୍ତ୍ତି ଭଗବାନଙ୍କର ନାମୋଚ୍ଚାରଣରେ ତଦପେକ୍ଷା ଅଧିକ ଶୁଦ୍ଧି ହୁଏ ।୧୧

ପ୍ରାୟଶ୍ଚିତ୍ତ କଲେ ମନ ଯଦି ପୁଣି ଅସତ୍‌ପଥରେ ଧାବିତ ହୁଏ ତେବେ ସେ ପ୍ରାୟଶ୍ଚିତର ଫଳ ପାପ ଶୋଧକ ହୋଇ ନ ପାରେ, ସୁତରାଂ ଯେଉଁମାନେ ଏକାବେଳକେ ପାପ ମୂଳଚ୍ଛେଦନ କରିବାକୁ ଇଚ୍ଛା କରନ୍ତି, ସେମାନେ ଥରେ ମାତ୍ର ଶ୍ରୀହରିଙ୍କର ଗୁଣକୀର୍ତ୍ତନ କଲେ ସେମାନଙ୍କର ସମୁଚିତ ପ୍ରାୟଶ୍ଚିତ୍ତ ହୁଏ ଏବଂ ସେମାନଙ୍କର ଚିତ୍ତ ଶୁଦ୍ଧି ଜନ୍ମିଥାଏ । ୧୨ ।

ତୁମ୍ଭେମାନେ ଏହି ଅଜାମିଳକୁ ଆଉ ଦୁଃଖମୟ ଯମଦଣ୍ଡମାର୍ଗରେ ନେଇ ଯାଅନାହିଁ । ଯେଉଁ ବ୍ୟକ୍ତିର ସର୍ବପାପର ପ୍ରାୟଶ୍ଚିତ ହୋଇ ଯାଇଅଛି କାରଣ ଆସନ୍ନ ମୃତ୍ୟୁକାଳରେ ଭଗବାନଙ୍କର ନାମୋଚ୍ଚାରଣ କରିଅଛି (ତାହାପ୍ରତି ଯମଦଣ୍ଡ ନାହିଁ ) । ୧୩ ।

ଯେ ବ୍ରହ୍ମହତ୍ୟା ମଦ୍ୟପାନ
ଗୁରୁପତ୍ନୀ-ଅଭିଗମନ
ମିତ୍ର ବିଷୟେ ଅପରାଧୀ
ପିତ ରାଜା ସ୍ତ୍ରୀଏ ଗୋବଧୀ
ଏ ଆଦି ପାପ ଯେ ଅପରେ
ସର୍ବ ଦୁରିତ ନଷ୍ଟେ ହରେ
ପ୍ରାୟଶ୍ଚିତ୍ତ ସର୍ବ ପ୍ରାଣିଙ୍କର
ନାମ ଉଚ୍ଚାରଣ ବିଷ୍ଣୁର
ଯାହାର ବିଷ୍ଣୁକୁ ହେବେ ମତି
ପାପରେ ଗ୍ରସ୍ତ ସେ ନୁହନ୍ତି ।୯।୧୦
ବ୍ରତ ପ୍ରାୟଶ୍ଚିତ ଏମାନ
ଅଧିକ ତହୁଁ ହରିନାମ
ଶୁଦ୍ଧ ସତ୍ତ୍ୱକୁ ପରକାଶେ
ପାପର ମୂଳବୀଜ ନାଶେ ।୧୧।୧୨
ଏଣୁ ଏହାକୁ ତୁମ୍ଭେମାନେ
ନେଇ ଯାଅ ନାହିଁ ଭୁବନେ
ଏହାର ଯେତେ ପାପମାନ
ନିଶ୍ଚୟ କଲି ଏ ଖଣ୍ଡନ
ଯେଣୁ ଏ ଦ୍ୱିଜ ଅଜାମିଳ
ନିକଟ ମରଣର କାଳ
ତୁଣ୍ଡେ ଉଚ୍ଚାରି ନାରାୟଣ
ପ୍ରାଣ ଛାଡ଼ିଲା ତତକ୍ଷଣ । ୧୩ ।

ସାଙ୍କେତ୍ୟଂ ପାରିହାସ୍ୟଂ ବା ସ୍ତୋଭଂ ହେଳନମେବ ବା ।
ବୈକୁଣ୍ଠନାମଗ୍ରହଣମଶେଷାଘହରଂ ବିଦୁଃ । ୧୪ ।
ପତିତଃ ସ୍ଖଳିତୋ ଭଗ୍ନଃ ସଂଦଷ୍ଟସ୍ତପ୍ତ ଆହତଃ ।
ହରିରିତ୍ୟବଶେନାହ ପୁମାନ୍ ନାର୍ହତି ଯାତନାଃ । ୧୫ ।
ଗୁରୂଣାଞ୍ଚ ଲଘୂନାଞ୍ଚ ଗୁରୂଣିଚ ଲଘୂନି ଚ ।
ପ୍ରାୟଶ୍ଚିତ୍ତାନି ପାପାନାଂ ଜ୍ଞାତ୍ୱୋକ୍ତାନି ମହର୍ଷିଭିଃ । ୧୬ ।
ତୈସ୍ତାନ୍ୟଘାନି ପୂୟନ୍ତେ ତପୋଦାନବ୍ରତାଦିଭିଃ ।
ନାଧର୍ମଜଂ ତଦ୍ଧୃଦୟଂ ତଦପୀଶାଙ୍ଘ୍ରି ସେବୟା । ୧୭ ।
ଅଜ୍ଞାନାଦଥବା ଜ୍ଞାନାଦୁତ୍ତମଃଶ୍ଳୋକନାମ ଯତ୍ ।
ସଙ୍କୀର୍ତ୍ତିତମଘଂ ପୁଂସୋ ଦହେଦେଧୋ ଯଥାନଳଃ । ୧୮ ।

ପୁତ୍ରାଦିଙ୍କର ନାମାନୁସାରେ ପରିହାସଚ୍ଛଳରେ ସୁଦ୍ଧା କମ୍ବା ଗୀତର ପାଦପୂରଣରେ ଅବହେଳାକ୍ରମେ ଯେ ଭାବରେ ହେଉ ପଛକେ, ଭଗବାନଙ୍କର ନାମୋଚ୍ଚାରଣରେ ସର୍ବପାପ ଦୂରୀଭୂତ ହୁଏ । ୧୪ ।

କୌଣସି ଉଚ୍ଚ ସ୍ଥାନରୁ ପତନ ବେଳେ, ପଥରେ ଖୁଣ୍ଟି ଖୁଣ୍ଟି ପଦସ୍ଖଳନବେଳେ ବା ଭଗ୍ନ ଦେହ, ସର୍ପ ଦଂଶନ, ଉଗ୍ର ତାପସନ୍ତପ୍ତ, କମ୍ବା ଦଣ୍ଡାହତ ଯେ କୌଣସି ବ୍ୟକ୍ତି ଅବଶତାରେ ଶ୍ରୀହରିଙ୍କର ନାମୋଚ୍ଚାରଣ କରେ ତାହାକୁ ଆଉ ଯମ ଯାତନା ଭୋଗ କରିବାକୁ ହୁଏ ନାହିଁ । ୧୫ ।

ମନୁ ପ୍ରଭୃତି ମହର୍ଷିଗଣ ପାପର ଗୁରୁତ୍ୱ ଓ ଲଘୁତ୍ୱ ବିଷୟରେ ଗୁରୁ ଓ ଲଘୁ ପ୍ରାୟଶ୍ଚିତ୍ତ କରିଅଛନ୍ତି । ୧୬ ।

ସେହି ମହର୍ଷିମାନଙ୍କ କର୍ତ୍ତୃକ ବିହିତ ତପସ୍ୟା, ଦାନ, ବ୍ରତ ପ୍ରଭୃତି ପ୍ରାୟଶ୍ଚିତ୍ତ ଦ୍ୱାରା ପାପମାନ ନଷ୍ଟ ହୋଇଥାଏ ସତ୍ୟ କିନ୍ତୁ ପାପଜନିତ ସଂସ୍କାର ନଷ୍ଟ ହୁଏ ନାହିଁ, କେବଳ ଭଗବାନଙ୍କର ପାଦପଦ୍ମ ସେବା ଦ୍ୱାରା ତାହା ନଷ୍ଟ ହୁଏ । ୧୭ ।

ପୁଣ୍ୟଶ୍ଳୋକ ଭଗବାନଙ୍କର ନାମ ଜ୍ଞାନ ବା ଅଜ୍ଞାନତଃ ଉଚ୍ଚାରଣ କଲେ ଅଗ୍ନି ସଂଯୋଗରେ କାଷ୍ଠ ଭସ୍ମୀଭୂତ ହେଲା ପ୍ରାୟ ନାମୋଚ୍ଚାରଣକାରୀର ସର୍ବପାପ ବିନଷ୍ଟ ହୋଇଥାଏ । ୧୮ ।

ସଙ୍କେତ ପରିହାସ କରି
ଶ୍ରଦ୍ଧା ହେଳାରେ ଯେ ଉଚ୍ଚାରି
ବୈକୁଣ୍ଠ ନାମର ସ୍ମରଣ
ଅଶେଷ ପାପ ସେ ଦହନ
ପତନ ସ୍ଖଳନ ଭଗ୍ନରେ
ନାନାପ୍ରକାରେ ଯେତୁ ସ୍ମରେ
ଭୁଞ୍ଜେ ଉଚ୍ଚାରେ ହରିନାମ
ତାହାକୁ ନ ଦଣ୍ଡଇ ଯମ ।୧୪।୧୫

ଅଳ୍ପ ବହୁତ ପାପମାନ
ପ୍ରାୟଶ୍ଚିତ୍ତହିଁ ଯଥାକ୍ରମ
ପାପଙ୍କ ଗୁରୁ ଲଘୁ ଜାଣି
ମୁନି କହିଲେ ପରମାର୍ଥି
ତପସ୍ୟା ଆଦି ବ୍ରତଦାନେ
ପାପ ନାଶନ୍ତି ଏଣେ ଜନେ
ପାପର ବୀଜ ନାଶ ନୋହି
ଚିତ୍ତ ନିର୍ମ୍ମଳ ନୋହେ ତହିଁ

ଯେମନ୍ତ ଶ୍ରୀହରି କୀର୍ତ୍ତନେ
ପାଦପଙ୍କଜସେବାଧ୍ୟାନେ ।୧୬,୧୭
ଜ୍ଞାନେ ଅଜ୍ଞାନେ ଯେଉଁ ପ୍ରାଣୀ
ସ୍ମରଣକରେ ଚକ୍ରପାଣି
ନାମ କରଇ ସଙ୍କୀର୍ତ୍ତନ
ପାପକୁ କରଇ ଦହନ
ଯେସନେ ବହୁ କାଷ୍ଠ ଶୁଣି
ଅନଳ ପ୍ରବେଶେ ଦହାଣି ।୧୮।

ଯଥାଗଦଂ ବୀର୍ଯ୍ୟତମମୁପଯୁକ୍ତଂ ଯଦୃଚ୍ଛୟା
ଅଜାନତୋଽପ୍ୟାତ୍ମଗୁଣଂ କୁର୍ଯ୍ୟାନ୍ମନ୍ତ୍ରୋଽପ୍ୟୁଦାହୃତଃ । ୧୯ ।

ଶ୍ରୀଶୁକ ଉବାଚ ।

ତଂ ଏବଂ ସୁବିନିର୍ଣ୍ଣୀୟ ଧର୍ମଂ ଭାଗବତଂ ନୃପ ।
ତଂ ଯାମ୍ୟପାଶାନ୍ନିର୍ମୁଚ୍ୟ ବିପ୍ରଂ ମୃତ୍ୟୋରମୂମୁଚନ୍ । ୨୦ ।
ଇତି ପ୍ରତ୍ୟୁଦିତା ଯାମ୍ୟା ଦୂତା ଯାତ୍ୱା ଯମାନ୍ତିକମ୍ ।
ଯମରାଜ୍ଞେ ଯଥା ସର୍ବମାଚଚକ୍ଷୁରରିନ୍ଦମ । ୨୧ ।
ଦ୍ୱିଜଃ ପାଶାଦ୍‌ବିନିର୍ମୁକ୍ତୋ ଗତଭୀଃ ପ୍ରକୃତିଂ ଗତଃ ।
ବବନ୍ଦେ ଶିରସା ବିଷ୍ଣୋଃ କିଙ୍କରାନ୍ ଦର୍ଶନୋତ୍‌ସବଃ । ୨୨ ।

---

କୌଣସି ବ୍ୟକ୍ତି ଅଜ୍ଞାନରେ ହଠାତ୍ ଯଦି ଅତ୍ୟନ୍ତ ଶକ୍ତିଶାଳୀ କୌଣସି ଔଷଧ ପାନକରେ ତେବେ ସେ ଔଷଧ ଯେପରି ଅବଶ୍ୟ ତାହାର ଗୁଣ ପ୍ରକାଶ କରେ, ସେହିପରି ଭଗବାନଙ୍କର ନାମରୂପ ମନ୍ତ୍ର ନ ଜାଣି ସୁଦ୍ଧା ଉଚ୍ଚାରଣ କଲେ ତାହା ନିଶ୍ଚୟ ତାହାର ମାହାତ୍ମ୍ୟ ପ୍ରକାଶ କରିବ । ୧୯ ।

ଶ୍ରୀଶୁକଦେବ କହିଲେ :—

ହେ ମହାରାଜ ! ବିଷ୍ଣୁ ଦୂତମାନେ ଏହିପରି ଶ୍ରୀହରିଙ୍କର ନାମ ମହିମା କୀର୍ତ୍ତନ କରି ଅଜାମିଳକୁ ଯମଦୂତମାନଙ୍କର ବନ୍ଧନରୁ ମୁକ୍ତକରି ମୃତ୍ୟୁରୁ ରକ୍ଷା କରିଥିଲେ । ୨୦ ।

ହେ ଶତ୍ରୁଦମନଶୀଳ ମହାରାଜ ! ଯମଦୂତମାନେ ଏହିପରି ତିରସ୍କୃତ ହୋଇ ଯମ ରାଜାଙ୍କର ନିକଟରେ ଉପସ୍ଥିତ ହୋଇ ସମସ୍ତ ବୃତ୍ତାନ୍ତ ଯଥାଯଥ ଭାବରେ ବର୍ଣ୍ଣନା କରିଥିଲେ । ୨୧ ।

ଯମଦୂତମାନଙ୍କର ବନ୍ଧନରୁ ଅଜାମିଳ ମୁକ୍ତିପାଇ ତାହାର ଭୟ ଦୂରୀଭୂତ ହୋଇଥିଲା, ସେ ପ୍ରକୃତିସ୍ଥ ହୋଇ ବିଷ୍ଣୁଦୂତମାନଙ୍କର ଦର୍ଶନରେ ଅତ୍ୟନ୍ତ ଆନନ୍ଦିତ ହୋଇ ସେମାନଙ୍କୁ ପ୍ରଣାମ କରିଥିଲା । ୨୨ ।

---

ରୋଗ ଶରୀରେ ଉପଗତ
ହେଲେ ଔଷଧ ବଳବନ୍ତ
ଅଜ୍ଞାନେ ପ୍ରୟୋଗ ହୋଇଲେ
ତେମନ୍ତ ନାମ ଉଚ୍ଚାରିଲେ
ତେବେ ସେ ଆତ୍ମ ଗୁଣେଁ ତାର
ସେ ଜନ କରେ ଉପକାର । ୧୯ ।

ଶ୍ରୀ ଶୁକ ଉବାଚ—
ବିଷ୍ଣୁ-ଦୂତଙ୍କ ଧର୍ମବାଣୀ
କୃତାନ୍ତ ଦୂତମାନେ ଶୁଣି
ଅଜାମିଳକୁ ପାଶୁଁ ଫେଇ
ମୃତ୍ୟୁରୁ ଦେଲେ ବାହୁଡ଼ାଇ । ୨୦ ।
ଯମର ଦୂତମାନେ ଗଲେ
ଏ ସର୍ବ ଯମକୁ କହିଲେ । ୨୧ ।

ପାଶରୁ ମୁକ୍ତ ଅଜାମିଳ
ଦେହ ଲଭିଲା ତତକାଳ
ବିନାଶ ସର୍ବ ଭୟ ତାର
ଶିରରେ ଦେଇ ଦୋଳକର
ବିଷ୍ଣୁ ଦୂତଙ୍କୁ ନମସ୍କାର
ଉତ୍ସାହ ହୋଇଛି ମନର । ୨୨ ।

ତଂ ବିବକ୍ଷୁମଭିପ୍ରେତ୍ୟ ମହାପୁରୁଷକିଙ୍କରାଃ ।
ସହସା ପଶ୍ୟତସ୍ତସ୍ୟ ତତ୍ରାନ୍ତର୍ଦଧିରେଽନଘ । ୨୩ ।
ଅଜାମିଲୋଽପ୍ୟାକର୍ଣ୍ଣ୍ୟ ଦୂତାନାଂ ଯମକୃଷ୍ଣୟୋଃ ।
ଧର୍ମ୍ମଂ ଭାଗବତଂ ଶୁଦ୍ଧଂ ତ୍ରୈବେଦ୍ୟଞ୍ଚ ଗୁଣାଶ୍ରୟମ୍ । ୨୪ ।
ଭକ୍ତିମାନ୍ ଭଗବତ୍ୟାଶୁ ମାହାତ୍ମ୍ୟଶ୍ରବଣାଦ୍ଧରେଃ ।
ଅନୁତାପୋ ମହାନାସୀତ୍ ସ୍ମରତୋଽଶୁଭମାତ୍ମନଃ । ୨୫ ।
ଅହୋ ମେ ପରମଂ କଷ୍ଟମଭୂଦବିଜିତାତ୍ମନଃ ।
ଯେନ ବିପ୍ଲାବିତଂ ବ୍ରହ୍ମ ବୃଷଲ୍ୟାଂ ଜାୟତାତ୍ମନା । ୨୬ ।
ଧିଙ୍ମାଂ ବିଗର୍ହିତଂ ସଦ୍ଭିର୍ଦୁଷ୍କୃତଂ କୁଳକଜ୍ଜଳମ୍ ।
ହିତ୍ୱା ବାଲାଂ ସତୀଂ ଯୋଽହଂ ସୁରାପୀମସତୀମଗାମ୍ । ୨୭ ।

---

ସେହି ନିଷ୍ପାପ ମହାପୁରୁଷ ଅର୍ଥାତ୍ ବିଷ୍ଣୁଙ୍କର କିଙ୍କରମାନେ ଅଜାମିଳର ଭାବ ଦେଖି ବୁଝିପାରିଲେ ଯେ ଏ ବାକ୍ୟ କିଛି କହିବାକୁ ଅଭିଳାଷୀ ଏହା ଭାବି ସେମାନେ ହଠାତ୍ ତାହା ସମ୍ମୁଖରୁ ଅନ୍ତର୍ହିତ ହୋଇଗଲେ । ୨୩ ।

ଅଜାମିଳ ଯମଦୂତମାନଙ୍କର କଥିତ ବେଦତ୍ରୟ ପ୍ରତିପାଦିତ ସଗୁଣ ଧର୍ମ ଓ ବିଷ୍ଣୁଦୂତମାନଙ୍କର କଥିତ ଭାଗବତ ସମ୍ପର୍କୀୟ ନିର୍ଗୁଣଧର୍ମ ବିଷୟ ଶ୍ରବଣ କରିଥିଲେ, ସେ ଭଗବାନଙ୍କର ମାହାତ୍ମ୍ୟ ଶ୍ରବଣକରି ଅବିଳମ୍ବେ ସେ ଭଗବଦ୍ଭକ୍ତି ପରାୟଣ ହୋଇଥିଲେ ଏବଂ ସ୍ୱକୃତ ପାପ ସ୍ମରଣ କରି ଅତ୍ୟନ୍ତ ଅନୁତପ୍ତ ହୋଇଲେ । ୨୪,୨୫ ।

ଅହୋ ! ମୁଁ ଆତ୍ମସଂଯମ କରି ନ ପାରି କେତେ ଦୁଷ୍କର୍ମ ବା ପାପ କଲି, ମୁଁ ଏହି କୁଳଟାର ଗର୍ଭରେ ପୁତ୍ରୋତ୍ପାଦନ କରି ନିଜର ବ୍ରାହ୍ମଣ ଧର୍ମ ନଷ୍ଟ କରିଅଛି । ୨୬ ।

ମୁଁ ସଜ୍ଜନମାନଙ୍କ ନିକଟରେ ଘୃଣିତ, ଅତ୍ୟନ୍ତ ଦୁଷ୍କର୍ମୀ ଏବଂ ବଂଶର କଳଙ୍କ ମୋତେ ଧିକ୍, କାରଣ ମୁଁ ମୋର ପତିବ୍ରତା ସ୍ତ୍ରୀକୁ ପରିତ୍ୟାଗ କରିଅଛି, ଗୋଟିଏ ସୁରାପାୟିନୀ ଦୁଶ୍ଚରିତ୍ରାକୁ ସଙ୍ଗିନୀ କରିଅଛି । ୨୭ ।

---

କଥନମୁଖ ଦେଖି ତାର
ଜାଣିଲେ ବିଷ୍ଣୁର କିଙ୍କର
ତକ୍ଷଣେ ହୋଇ ଅନ୍ତର୍ଦ୍ଧାନ
ତାହାର ନିକଟୁ ରାଜନ । ୨୩ ।
ଗୁଣ ଆଶ୍ରିତ ବେଦ ସିଦ୍ଧ
ଯେ ଭାଗବତ ଧର୍ମ ଶୁଦ୍ଧ
ଯମବିଷ୍ଣୁ ଦୂତଙ୍କ ବାଣୀ
ଗୋବିନ୍ଦ ଗୁଣ ବିପ୍ର ଶୁଣି

ତକ୍ଷଣେ ଚରଣାରବିନ୍ଦେ
ଭକ୍ତି ଲଭିଲା ଅପ୍ରମାଦେ
ହରିର ଚରିତ ଶ୍ରବଣେ
ପୂର୍ବ ଅଶୁଭ ସୁମରଣେ
ମହା ସନ୍ତାପ ମନେ ହେଲା
ତକ୍ଷଣେ ବିଷ୍ଣୁ ସୁମରିଲା । ୨୪।୨୫
ଅହୋ ମୋହର ବଡ଼ କଷ୍ଟ
ଅଜିତ ଇନ୍ଦ୍ରିୟ ମୁଁ ନଷ୍ଟ

ସୁକର୍ମ୍ମ କଲି ମୋର କ୍ଷୀଣ
କଲି ମୁଁ ବୃଷଳୀ ଗମନ । ୨୬।
ଧିକ ମୋହର ମନବୃତ୍ତ
କୁଳରେ କଳଙ୍କ ବିଦିତ
ତେଜିଣ ନିଜ ସତୀ ସଙ୍ଗ
ରମିଲି ମୁଁ ନୀଚ ଅସଙ୍ଗ । ୨୭।

ବୃଦ୍ଧାବନାଥୌ ପିତରୌ ନାନ୍ୟବନ୍ଧୂ ତପସ୍ୱିନୌ ।
ଅହୋ ମୟାଧୁନା ତ୍ୟକ୍ତାବକୃତଜ୍ଞେନ ନୀଚବତ୍ । ୨୮ ।
ସୋଽହଂ ବ୍ୟକ୍ତଂ ପତିଷ୍ୟାମି ନରକେ ଭୃଶଦାରୁଣେ ।
ଧର୍ମଘ୍ନାଃ କାମିନୋ ଯତ୍ର ବିନ୍ଦନ୍ତି ଯମଯାତନାଃ । ୨୯ ।
କିମିଦଂ ସ୍ୱପ୍ନ ଆହୋ ସ୍ୱିତ୍ ସାକ୍ଷାଦ୍ଦୃଷ୍ଟମିହାଦ୍ଭୁତମ୍ ।
କ୍ୱ ଯାତା ଅଦ୍ୟ ତେ ଯେ ମାଂ ବ୍ୟକର୍ଷନ୍ ପାଶପାଣୟଃ । ୩୦ ।
ଅଥ ତେ କ୍ୱ ଗତାଃ ସିଦ୍ଧାଶ୍ଚତ୍ୱାରଶ୍ଚାରୁଦର୍ଶନାଃ ।
ବ୍ୟାମୋଚୟନ୍ନୀୟମାନଂ ବଦ୍ଧ୍ୱା ପାଶୈରଧୋ ଭୁବଃ । ୩୧ ।
ଅଥାପି ମେ ଦୁର୍ଭଗସ୍ୟ ବିବୁଧୋତ୍ତମଦର୍ଶନେ ।
ଭବିତବ୍ୟଂ ମଙ୍ଗଳେନ ଯେନାତ୍ମା ମେ ପ୍ରସୀଦତି । ୩୨ ।

ମୋର ପିତାମାତା ବୃଦ୍ଧ, ମୋ ବ୍ୟତୀତ ସେମାନଙ୍କର ଅନ୍ୟ ପୁତ୍ର ବା ବନ୍ଧୁ କେହି ନାହାନ୍ତି । ସେମାନେ ଦ୍ୱିତୀୟ ରକ୍ଷକ ଅଭାବରୁ ମୋ ପାଇଁ ସର୍ବଦା ଦୁଃଖିତ । ମୁଁ ଅତ୍ୟନ୍ତ ନୀଚ ବ୍ୟକ୍ତି ତୁଲ୍ୟ ସେମାନଙ୍କ ପ୍ରତି ଅତ୍ୟନ୍ତ କୃତଘ୍ନ ହୋଇଅଛି । ୨୮ ।

ଧର୍ମଭ୍ରଷ୍ଟ, କାମୁକମାନେ ନରକରେ ପଡ଼ି ଯମ ଯନ୍ତ୍ରଣା ଭୋଗ କରିଥାଆନ୍ତି । ପାପାତ୍ମା ମୁଁ ସେହିପରି ଦାରୁଣ ନରକରେ ପଡ଼ିବି ଏଥିରେ ସନ୍ଦେହ ନାହିଁ, ମୁଁ ସ୍ୱପ୍ନ ଦେଖିଲି ନା ଜାଗ୍ରତ ଯେଉଁମାନଙ୍କ ହସ୍ତରେ ପାଶ ବା ବନ୍ଧନ ରଜ୍ଜୁ ଥିଲା, ସେମାନେ ଅଜ୍ଞ ମୋତେ ଆକର୍ଷଣ କରୁଥିଲେ, ସେମାନେ ଗଲେ କେଉଁଆଡ଼େ ? । ୨୯ । ୩୦ ।

ମୋତେ ପାଶବଦ୍ଧକରି ସେମାନେ ଯେତେବେଳେ ନରକର ନିମ୍ନଦେଶକୁ ନେଇ ଯାଉଥିଲେ । ସେତେବେଳେ ଚାରିଜଣ ସୌମ୍ୟମୂର୍ତ୍ତି ସିଦ୍ଧପୁରୁଷ ମୋତେ ରକ୍ଷାକଲେ । ସେମାନେ ବା ଗଲେ କେଉଁ ଆଡ଼େ ? । ୩୧ ।

ମୁଁ ଏ ଜନ୍ମରେ ମହାପାପୀ ହେଲେ ମଧ୍ୟ ମୋର ପୂର୍ବ ପୁଣ୍ୟବଳରେ ଏହି ଶ୍ରେଷ୍ଠ ଦେବଗଣଙ୍କର ଦର୍ଶନ ଲାଭକଲି । ଏହି ଦେବଦର୍ଶନରେ ମୋର ଅନ୍ତଃକରଣ ଅତ୍ୟନ୍ତ ପ୍ରସନ୍ନ ହେଲା ।୩୨।

ବୃଦ୍ଧ ଅନାଥ ପିତା ମାତ
ମୋର ବିହୀନେ ଅରକ୍ଷିତ
ତପସ୍ୱିରୂପେ ଥାନ୍ତି ବନେ
ତାହାଙ୍କୁ ତେଜି ଅକାରଣେ ।୨୮।
ମୁଁ ଏ ଅପୂର୍ବ କର୍ମ ମୋର
ନରକ ଭଲି ଜାଣ ଘର
ବିଧି ହୋଇଲା ବଡ଼ମାନ
ଲଭିବି ନରକ ଦାରୁଣ
ଧର୍ମ ହଂସକ ପାପୀ ଯନ୍ତି
ନାନା ଯାତନା ଭୁଞ୍ଜୁଥାନ୍ତି ।୨୯।

କି ଏ ସ୍ୱପନ ଅବା କେତେ
ନୟନେ ଦେଖିଲି ସାକ୍ଷାତେ
ପାଶ ଦଣ୍ଡାଦି ହସ୍ତେ କରି
ଯେ ମୋତେ ନେଉଥିଲେ ଧରି
ଏତ ଆଶ୍ଚର୍ଯ୍ୟ ବଡ଼ ଏଣେ
ଷଣକେ ଗଲେ କେଉଁଣେ କେଉଁଣେ ।୩୦
ଏ ଅନନ୍ତରେ ସିଦ୍ଧଗଣ
ଚତ୍ୱାର ସୁନ୍ଦର ଦରଶନ
ପାଶେ ବନ୍ଧନ ମୋତେ କରି
ଅଧୋଭୂମିକୁ ନେଉଁ ଧରି

ଛଡ଼ାଇ ଦେଲେ ସେହିକ୍ଷଣେ
କ୍ଷଣକେ ଗଲେ କେଉଁଣେ କେଉଁଣେ ।୩୧
ମୁଁ ତ ଅଟଇ ପାପୀ ହୀନ
ମୋହର ଦେବ ଦରଶନ
ଏଣୁ ହୋଇଲା ଏ ମଙ୍ଗଳ
ଆଶା ମୋ ହେବେ ଶୁଭଫଳ ।୩୨।

ଅନ୍ୟଥା ମ୍ରିୟମାଣସ୍ୟ ନାଶୁଚେର୍ବୃଷଳୀପତେଃ ।
ବୈକୁଣ୍ଠନାମଗ୍ରହଣଂ ଜିହ୍ୱା ବକ୍ତୁମିହାର୍ହତି । ୩୩ ।
କ୍ୱ ଚୈଷ କିତବଃ ପାପୋ ବ୍ରହ୍ମଘ୍ନୋ ନିରପତ୍ରପଃ ।
କ୍ୱ ଚ ନାରାୟଣେତ୍ୟେତଦ୍‌ଭଗବନ୍ନାମମଙ୍ଗଳମ୍ । ୩୪ ।
ସୋଽହଂ ତଥା ଯତିଷ୍ୟାମି ଯତଚିତ୍ତେନ୍ଦ୍ରିୟାନିଳଃ ।
ଯଥା ନ ଭୂୟ ଆତ୍ମାନମନ୍ଧେ ତମସି ମଜ୍ଜୟେ । ୩୫ ।
ବିମୁଚ୍ୟ ତମିମଂ ବନ୍ଧମବିଦ୍ୟାକାମକର୍ମଜମ୍ ।
ସର୍ବଭୂତସୁହୃଚ୍ଛାନ୍ତୋ ମୈତ୍ରଃ କରୁଣ ଆତ୍ମବାନ୍ । ୩୬ ।
ମୋଚୟେ ଗ୍ରସ୍ତମାତ୍ମାନଂ ଯୋଷିନ୍ମୟ୍ୟାତ୍ମମାୟୟା ।
ବିକ୍ରୀଡିତୋ ଯୟୈବାହଂ କ୍ରୀଡ଼ାମୃଗ ଇବାଧମଃ । ୩୭ ।

---

ପୂର୍ବ ପୁଣ୍ୟ ନ ଥିଲେ ମୋପରି ଅପବିତ୍ର ସ୍ୱଭାବ, କୁଳଟା ସଙ୍ଗୀ ବ୍ୟକ୍ତି ମୁମୂର୍ଷୁ ଅବସ୍ଥାରେ ଏ ପାପ ଜିହ୍ୱାରେ ଭଗବାନଙ୍କର ନାମ ଉଚ୍ଚାରଣ କରିପାରି ନ ଥାନ୍ତା । ୩୩ ।

ଧୂର୍ତ୍ତ ଅଧର୍ମୀ ବେଶ୍ୟା ପ୍ରିୟ ବ୍ରାହ୍ମଣତ୍ୱ ନାଶକ ନିର୍ଲଜ, ମୁଁ କାହିଁ ଏବଂ "ନାରାୟଣ" ଏହି ପରମମଙ୍ଗଳ ଭଗବଦ୍ ନାମ ବା କାହିଁ ? । ୩୪ ।

ଯାହା ହେଉ ମୁଁ ପ୍ରାଣାଦି ବାୟୁ, ଚିତ୍ତ, ଇନ୍ଦ୍ରିୟ ସଂଯତ କରି ଏପରି ଯତ୍ନ କରିବି ଯେପରି ଆଉ ଘୋର ପାପାନ୍ଧକାରରେ ନିମଗ୍ନ ନ ହେବି । ୩୫ ।

ଦେହରେ ଆତ୍ମବୁଦ୍ଧି ରୂପା ଅବିଦ୍ୟା ବିଷୟ ଭୋଗବିଳାସସ୍ୱରୂପ କାମ ଓ କର୍ମ ଏହି ତ୍ରିବିଧ କାରଣରୁ ବନ୍ଧନ ଉତ୍ପତ୍ତି ହୁଏ ଏବଂ ଏହି ବନ୍ଧନ ପରିତ୍ୟାଗ କରି ସର୍ବଭୂତ ହିତକାରୀ ଶାନ୍ତ ଦୟାଳୁ ଆତ୍ମବନ୍ତ ହେବି ଏବଂ ନାରୀମାୟାରେ ମୁଗ୍‌ଧ ଆତ୍ମାକୁ ଉଦ୍ଧାର କରିବାକୁ ଯତ୍ନବାନ୍ ହେବି, ନିତାନ୍ତ ଅଧମ ବ୍ୟକ୍ତି ନାରୀ ମୋହରେ, ଯେପରି କ୍ରୀଡ଼ନକପ ଶୃଙ୍ଖଳ୍ୟ ଆଜ୍ଞାନୁବର୍ତ୍ତୀ ହୋଇଥାଏ, ମୋର ଅବସ୍ଥା ମଧ୍ୟ ସେହିପରି ହୋଇଅଛି । ୩୬,୩୭ ।

---

ଅଶୁଚି ଦାସୀପତି ମୁହିଁ
ମୋ ଠାରୁଁ ପାପୀ ଅଛି କାହିଁ
ମୋହର ମରଣର କାଳେ
ବୈକୁଣ୍ଠ ନାମ ଅବହେଳେ
ଜିହ୍ୱା ମୋ କେମନ୍ତେ ବୋଇଲା
କ କଲିଆରୁ ଦୟା ଥିଲା । ୩୩ ।
କାହିଁ ମୁଁ ଧୂର୍ତ୍ତ ପାପିବର
ବ୍ରହ୍ମଘ୍ନ ଲଜ୍ଜା ଯାରି ଦୂର

କାହିଁ ମଙ୍ଗଳର କାରଣ
ବୈକୁଣ୍ଠ ନାମ ନାରାୟଣ ।୩୪।
ଇନ୍ଦ୍ରି ଅଜିତ ମୁଁ ଅଟଇ
ଏମନ୍ତ କରିବଇଁ ମୁହିଁ
ଯେମନ୍ତେ ଆତ୍ମା ଭୋଗ ଛାଡ଼ି
ବ୍ରହ୍ମ ଭାବରେ ରହେ ବୁଡ଼ି
ଅବିଦ୍ୟା କାମ କର୍ମ୍ମୁ ଜନ୍ମ
ମୋଚନ କରି ଏ ବନ୍ଧନ

ସର୍ବଭୂତରେ ଶାନ୍ତ ହୋଇ
ଦୟା ବହିବି ଏବେ ମୁହିଁ
ଏ ମାୟାଗ୍ରସ୍ତ ମୋର ମନ
ନିଶ୍ଚୟ କରିବି ମୋଚନ
ଯେଉଁ ମାୟାରେ ମୋହି ମୁହିଁ
କ୍ରୀଡ଼ାକୁରଙ୍ଗ ପ୍ରାୟ ହୋଇ

ମମାହମିତି ଦେହାଦୌ ହିତ୍ୱା ମିଥ୍ୟାର୍ଥଧୀର୍ମତିମ୍ ।
ଧାସ୍ୟେ ମନୋ ଭଗବତି ଶୁଦ୍ଧଂ ତତ୍କୀର୍ତ୍ତନାଦିଭିଃ । ୩୮ ।
ଇତି ଜାତସୁନିର୍ବେଦଃ କ୍ଷଣସଙ୍ଗେନ ସାଧୁଷୁ ।
ଗଙ୍ଗାଦ୍ୱାରମୁପେୟାୟ ମୁକ୍ତସର୍ବାନୁବନ୍ଧନଃ । ୩୯ ।
ସ ତସ୍ମିନ୍ ଦେବସଦନ ଆସୀନୋ ଯୋଗମାସ୍ଥିତଃ ।
ପ୍ରତ୍ୟାହୃତେନ୍ଦ୍ରିୟଗ୍ରାମୋ ଯୁଯୋଜ ମନ ଆତ୍ମନି । ୪୦ ।
ତତୋ ଗୁଣେଭ୍ୟ ଆତ୍ମାନଂ ବିଯୁଜ୍ୟାତ୍ମସମାଧିନା ।
ଯୁଯୁଜେ ଭଗବଦ୍ଧାମ୍ନି ବ୍ରହ୍ମଣ୍ୟନୁଭବାତ୍ମନି । ୪୧ ।
ଯର୍ହ୍ୟୁପାରତଧୀସ୍ତସ୍ମିନ୍ନଦ୍ରାକ୍ଷୀତ୍ ପୁରୁଷାନ୍ ପୁରଃ ।
ଉପଲବ୍ଧୋପଲବ୍ଧାନ୍ ପ୍ରାଗ୍ ବବନ୍ଦେ ଶିରସା ଦ୍ୱିଜଃ । ୪୨ ।

---

ଦେହାଦି ପ୍ରତି ଅହଂଭାବ ଅଭିମାନ କରୁଅଛି, ତାହା ପରିତ୍ୟାଗ କରି ସତ୍ୟ ସ୍ୱରୂପୀ ଭଗବାନଙ୍କର ଧ୍ୟାନ କରି ମୁଁ ତାହାଙ୍କର ନାମ ଗୁଣାଦି କୀର୍ତ୍ତନ କରୁ କରୁ ମନ ପବିତ୍ର କରି ତାହାଙ୍କଠାରେ ଏକାଗ୍ରଭାବରେ ମନ ସ୍ଥାପନ କରିବି । ୩୮ ।

ପରମସାଧୁ ବିଷ୍ଣୁଦୂତମାନଙ୍କ ସହିତ କ୍ଷଣକାଳ ସଂସର୍ଗ ଲାଭକରି ଅଜାମିଳର ଏପରି ନିର୍ବେଦ ଭାବ ଆସିଥିଲା ଯେ ସଂସାରର ସର୍ବପ୍ରକାର ବନ୍ଧନ ଉପେକ୍ଷା କରି ହରିଦ୍ୱାରକୁ ଗମନ କରିଥିଲେ । ୩୯ ।

ଅଜାମିଳ ସେ ହରିଦ୍ୱାରଠାରେ କୌଣସି ଦେବମନ୍ଦିରଠାରେ ଉପବେଶନ କରି ଭକ୍ତିଯୋଗରେ ଇନ୍ଦ୍ରିୟ ବିଷୟରୁ ନିବୃତ୍ତ ହୋଇ ଆତ୍ମାରେ ମନ ସଂସ୍ଥାପନ କରୁଥିଲେ । ୪୦ ।

ତଦନନ୍ତର ଦେହ ଓ ଇନ୍ଦ୍ରିୟାଦିରୁ ଆତ୍ମାକୁ ବିଶେଷଭାବରେ ନିର୍ଲିପ୍ତକରି ଚିତ୍ତର ଏକାଗ୍ରତା ଦ୍ୱାରା ଜ୍ଞାନମୟ ପରମବ୍ରହ୍ମ ସ୍ୱରୂପ ଭଗବାନଙ୍କଠାରେ ଆତ୍ମ ନିବେଦନ କରିଥିଲେ । ୪୧ ।

ଅଜାମିଳ ଭଗବାନଙ୍କଠାରେ ଚିତ୍ତ ନିବେଶକରି ରହିଅଛନ୍ତି, ଏମନ୍ତ ସମୟରେ କତିପୟ ପୁରୁଷ ସେଠାରେ ଉପସ୍ଥିତ ହେଲେ, ସେମାନଙ୍କୁ ପୂର୍ବେ ଦେଖିଥିବା ଅନୁମାନ କରି ଅଜାମିଳ ସେମାନଙ୍କ ନିକଟରେ ପ୍ରଣତ ହେଲେ । ୪୨ ।

---

ଦେହ-ସମ୍ପଦ ମୋର ଯେତେ
ଅଛଇ ଦମ୍ଭ ଅବିରତେ
ଏହାକୁ ତେଜି ଶୁଦ୍ଧ ମନ
କୃଷ୍ଣଚରଣେହେବଲୀନ ।୩୫-୩୮।

ଶ୍ରୀ ଶୁକ ଉବାଚ—

ଏମନ୍ତେ ଜାତ ଶୁଦ୍ଧ ମନ
ଯେଣୁ ତା ସାଧୁ ଦରଶନ
ତେଜିଣ ସକଳ ବନ୍ଧନ
ଗଙ୍ଗା ଗମନେ ତାର ମନ ।୩୯।
ଦେବ ସଦନେ ବିପ୍ର ଯାଇ
ନିଶ୍ଚଳ ମନେ ଯୋଗ ଧ୍ୟାଇ
ଇନ୍ଦ୍ରିୟ ନିଗ୍ରହ କରିଣ
ବ୍ରହ୍ମେ ନିବେଶି ସ୍ଥିର ମନ
ସକଳଦ୍ୱନ୍ଦ ପରିହରି
ଆତ୍ମାକୁ ସମାଧିରେ ଭରି
ପରମବ୍ରହ୍ମେ ମନ ଦେଲା
ମନକୁ ତହିଁ ନିବେଦିଲା ।୪୦,୪୧।
ବ୍ରହ୍ମଭାବନେ ସ୍ଥିରମନ
ଦେଖିଲା ବିଷ୍ଣୁଦୂତମାନ
ପୂର୍ବେ ଦେଖିଣ ଯହିଁ ଥିଲା
ଦେଖିଣ ଦଣ୍ଡବତ କଲା ।୪୨।

ହିତ୍ୱା କଳେବରଂ ତୀର୍ଥେ ଗଙ୍ଗାୟାଂ ଦର୍ଶନାଦନୁ ।
ସଦ୍ୟଃ ସ୍ୱରୂପଂ ଜଗୃହେ ଭଗବତ୍‌ପାର୍ଶ୍ୱବର୍ତ୍ତିନାମ୍ । ୪୩ ।
ସାକଂ ବିହାୟସା ବିପ୍ରୋ ମହାପୁରୁଷକିଙ୍କରୈଃ ।
ହୈମଂ ବିମାନମାରୁହ୍ୟ ଯଯୌ ଯତ୍ର ଶ୍ରିୟଃ ପତିଃ । ୪୪ ।
ଏବଂ ସ ବିପ୍ଲାବିତସର୍ବଧର୍ମା ଦାସ୍ୟାଃ ପତିଃ ପତିତୋ ଗର୍ହ୍ୟକର୍ମଣା ।
ନିପାତ୍ୟମାନୋ ନିରୟେ ହତବ୍ରତଃ ସଦ୍ୟୋ ବିମୁକ୍ତୋ ଭଗବନ୍ନାମ ଗୃହ୍ଣନ୍ । ୪୫ ।
ନାତଃ ପରଂ କର୍ମନିବନ୍ଧକୃନ୍ତନଂ ମୁମୁକ୍ଷତାଂ ତୀର୍ଥପଦାନୁକୀର୍ତ୍ତନାତ୍ ।
ନ ଯତ୍ ପୁନଃ କର୍ମସୁ ସଜ୍ଜତେ ମନୋ ରଜସ୍ତମୋଭ୍ୟାଂ କଲିଲଂ ତତୋଽନ୍ୟଥା । ୪୬ ।

---

ଅଜାମିଳ ସେମାନଙ୍କୁ ଦେଖିବା ପରେ ଗଙ୍ଗା ଗର୍ଭରେ ଦେହତ୍ୟାଗ କରି ତତ୍‌କ୍ଷଣାତ୍ ବିଷ୍ଣୁ ପାର୍ଷଦଗଣଙ୍କ ତୁଲ୍ୟ ମୂର୍ତ୍ତି ଲାଭ କରିଥିଲେ । ୪୩ ।

ଅଜାମିଳ ବିଷ୍ଣୁ ଦୂତଗଣଙ୍କ ସହିତ ସ୍ୱର୍ଣ୍ଣ ରଥରେ ଆରୋହଣ କରି ଭଗବାନ୍ ଶ୍ରୀହରିଙ୍କର ଅବସ୍ଥାନ କ୍ଷେତ୍ରକୁ ଆକାଶମାର୍ଗରେ ଗମନ କରିଥିଲେ । ୪୪ ।

ସେହି ଦୁଶ୍ଚରିତ୍ରା ଦାସୀ ପ୍ରତି ସ୍ୱୀୟ ଧର୍ମ ପରିତ୍ୟାଗ କରି ପତିତ ହୋଇଥିଲେ । ନିଜର ପତ୍ନୀ ବ୍ୟତୀତ ଅନ୍ୟ ସ୍ତ୍ରୀଠାରେ ଆସକ୍ତ ହେବା ଉଚିତ ନୁହେଁ, ପୁରୁଷର ଏହି ନିୟମ ଲଙ୍ଘନକରି ସେ ନିନ୍ଦନୀୟ କର୍ମ ହେତୁ ନରକକୁ ଯାଉଥିଲେ, ଏପରି ଅବସ୍ଥାରେ ପୁତ୍ରନାମ ଦ୍ୱାରା ଭଗବାନଙ୍କର ନାମ ଉଚ୍ଚାରଣ କରି ପାପରୁ ମୁକ୍ତ ହେଲେ । ୪୫ ।

ଯେଉଁ ଭଗବାନଙ୍କ ଶ୍ରୀଚରଣ କୃପାରୁ ସଂସାର ଯାତନାରୁ ମନୁଷ୍ୟ ମୁକ୍ତି ଲାଭ କରିପାରେ, ତାହାର ନାମଗୁଣାଦି କୀର୍ତ୍ତନ ବ୍ୟତୀତରେ ମୁକ୍ତି କାମୀବ୍ୟକ୍ତି ମାନଙ୍କ ପକ୍ଷରେ କର୍ମମୂଳ ଛେଦନକାରୀ ଅନ୍ୟ କୌଣସି ଶ୍ରେଷ୍ଠ ଉପାୟ ନାହିଁ, କାରଣ ତଦ୍ୱାରା ମନ କର୍ମପଥରେ ଆସକ୍ତ ହୋଇ ନ ଥାଏ, ମାତ୍ର ପ୍ରାୟଶ୍ଚିତାଦି ଅନ୍ୟ ଉପାୟ ଅବଲମ୍ବନ କଲେ ସେଥିରେ ମନର ରାଜସିକ ଓ ତାମସିକ ମଳିନତା ଥାଏ । ୪୬ ।

---

ଗଙ୍ଗାର ଜଳେ ଦ୍ୱିଜବର
ତେଜିଲା ନିଜ କଳେବର
ତକ୍ଷଣେ ବିଷ୍ଣୁ ଦୂତ ପ୍ରାୟେ
ହୋଇଲା ତାର ଦିବ୍ୟକାୟେ
ବିଷୟ ସଙ୍ଗ ତା ଖଣ୍ଡନ
ବେଷ୍ଟିତ ହୋଇ ବିଷ୍ଣୁଜନ
ହେମ ବିମାନ ଆରୋହିଲା
ତକ୍ଷଣେ ବୈକୁଣ୍ଠକୁ ଗଲା ।୪୩,୪୪।

ଦାସୀପତି ପତିତ କର୍ମ
ନଷ୍ଟ ତାହାର ସର୍ବ ଧର୍ମ
ବ୍ରତ ବର୍ଜିତ ନିନ୍ଦାସ୍ପଦ
ନରକେ ପଡ଼ନ୍ତା ଶରୀର
ଈଶ୍ୱର ନାମ ଗ୍ରହଣରୁ
ତତ୍କାଳ ମୁକ୍ତ ନରକରୁ । ୪୫ ।
ମୋକ୍ଷ ବାଞ୍ଛିତ ନରଙ୍କର
କୃଷ୍ଣ କୀର୍ତ୍ତନୁଁ ନାହିଁ ପର

କର୍ମ ବନ୍ଧନର ଛେଦନେ
ଯାହାର ପରେ ନାହିଁ ଆନେ
ଯେ ମନ ରଜ ତମେ ଥାଇ
କର୍ମେ ମଳିନ ସେ ହୁଅଇ ।୪୬।

ଯଂ ଏତଂ ପରମଂ ଗୁହ୍ୟମିତିହାସମଘାପହମ୍ ।
ଶୃଣୁୟାଚ୍ଛ୍ରଦ୍ଧୟା ଯୁକ୍ତୋ ଯଶ୍ଚ ଭକ୍ତ୍ୟାନୁକୀର୍ତ୍ତୟେତ୍ । ୪୭ ।
ନ ବୈ ସ ନରକଂ ଯାତି ନେକ୍ଷିତୋ ଯମକିଙ୍କରୈଃ ।
ଯଦ୍ୟପ୍ୟମଙ୍ଗଲୋ ମର୍ତ୍ତ୍ୟୋ ବିଷ୍ଣୁଲୋକେ ମହୀୟତେ । ୪୮ ।
ମ୍ରିୟମାଣୋ ହରେର୍ନାମ ଗୁଣନ୍ ପୁତ୍ରୋପଚାରିତମ୍ ।
ଅଜାମିଳୋଽପ୍ୟଗାଦ୍ଧାମ କିମୁତ ଶ୍ରଦ୍ଧୟା ଗୃଣନ୍ । ୪୯ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଅଜାମିଳୋପାଖ୍ୟାନେ ଶ୍ରୀବିଷ୍ଣୁଯମପୁରୁଷସମ୍ବାଦୋ ନାମ ଦ୍ୱିତୀୟୋଽଧ୍ୟାୟଃ । ୨ ।

---

ଯେଉଁ ବ୍ୟକ୍ତି ଶ୍ରଦ୍ଧା ପୂର୍ବକ ପରମଗୁହ୍ୟ ପାପନାଶକ ଅଜାମିଳ ଉପାଖ୍ୟାନ ଶ୍ରବଣ କରିବେ ଏବଂ ଯେଉଁ ବ୍ୟକ୍ତି ଭକ୍ତିପୂର୍ବକ ଏହା କୀର୍ତ୍ତନ କରିବେ, ସେ କଦାପି ନରକରେ ପତିତ ହେବେ ନାହିଁ, ଏପରିକି ତାହାଙ୍କପକ୍ଷରେ ଯମଦୂତମାନଙ୍କର ଦର୍ଶନ ମଧ୍ୟ ଘଟିବ ନାହିଁ, ସେ ବ୍ୟକ୍ତି ଅତ୍ୟନ୍ତ ପାପୀ ହେଲେ ମଧ୍ୟ ବିଷ୍ଣୁଲୋକରେ ପୂଜନୀୟ ହେବ । ୪୭,୪୮ ।

ଅଜାମିଳ ମୁମୂର୍ଷୁ ଅବସ୍ଥାରେ ପୁତ୍ରନାମ ଦ୍ୱାରା ଭଗବାନଙ୍କର ନାମ କୀର୍ତ୍ତନ କରି ବିଷ୍ଣୁଲୋକକୁ ଗମନ କରିଥିଲେ । ସୁତରାଂ ଯେଉଁବ୍ୟକ୍ତି ଶ୍ରଦ୍ଧାପୂର୍ବକ ବିଷ୍ଣୁ ନାମ ଉଚ୍ଚାରଣକରେ ତାହା କଥା କଣ କହିବା ।୪୯

---

ପରମ ଗୁହ୍ୟ ଅଘ ନାଶ
ନାମ ମହାତ୍ମ୍ୟ ଇତିହାସ
ଶୁଣଇ ଶ୍ରଦ୍ଧାଯୁକ୍ତ ହୋଇ
ବଦନେ କୀର୍ତ୍ତନ କରଇ
ସେ ପ୍ରାଣୀ ନରକେ ନ ଯାଇ
ଯମ ଯାତନା ତାକୁ ନାହିଁ

ତେବେ ନିର୍ମ୍ମଳ ପ୍ରାଣୀ ହୋଏ
ନିଃଶଙ୍କେବିଷ୍ଣୁଲୋକେରହେ୪୭୪୮
ନିକଟେ ତାହାର ମରଣ
ପୁତ୍ରର ନାମ ନାରାୟଣ
ସକଳ ପାପେ ଅଧିକାରୀ
ସେହି ଲଭିଲା ନରହରି

ଶ୍ରଦ୍ଧାରେ ନାମ ଯେ ଉଚ୍ଚାରେ
ତାର ମହିମା କେ ବର୍ଣ୍ଣାରେ ।୪୯
ବୋଲଇ ବିପ୍ର ଜଗନ୍ନାଥ
ଏ ଷଷ୍ଠ ସ୍କନ୍ଧ ଭାଗବତ
ବିଷ୍ଣୁର ନାମର ମହିମା
ଶୁକ କହିଲେ ଗୁଣ ସୀମା

---

**ବିଶଦାର୍ଥ :—**

ଶ୍ରୀମଦ୍ ଭାଗବତରେ ଅଜାମିଳ ଉପାଖ୍ୟାନ ଗୋଟିଏ ପ୍ରଧାନ ନୀତି କଥା, ଏଥିରେ ବହୁ ଶିକ୍ଷଣୀୟ ନୀତି ରହିଅଛି, ଅଜାମିଳ ପ୍ରଥମ ଜୀବନରେ ଜଣେ ଚରିତ୍ରବାନ୍, ବିଦ୍ୱାନ, କୁଳୀନ ଏବଂ ଲୋକପୂଜ୍ୟ ବ୍ରାହ୍ମଣ ଥିଲେ, ପରେ ତାହାଙ୍କର ଅସଂଯତ ମନ କର୍ତ୍ତବ୍ୟ ପଥରୁ ଭ୍ରଷ୍ଟ ହେଲା, ସେ ଗୋଟିଏ ଚରିତ୍ରହୀନା ମଦ୍ୟପାୟିନୀ ଶୂଦ୍ରା ନାରୀକୁ ଅସଂଯତ ଅବସ୍ଥାରେ ଦେଖି ତାହାପ୍ରତି ଆକୃଷ୍ଟ ହେଲେ । ନୀତିଶାସ୍ତ୍ର ବିଧି ଅନୁସାରେ ମନୁଷ୍ୟ ଏକପତ୍ନୀ ବ୍ରତ ଅବଲମ୍ବନ କରି "ମାତୃବତ୍ ପରଦାରେଷୁ" ଅର୍ଥାତ୍ ଅନ୍ୟସ୍ତ୍ରୀକୁ ମାତୃବତ୍ ମନେ କରିବ । ଏହି କର୍ତ୍ତବ୍ୟ ପଥରୁ ସେ ଭ୍ରଷ୍ଟ ହୋଇ ନିଜର ପତିବ୍ରତା ସ୍ତ୍ରୀକୁ ପରିତ୍ୟାଗ କରିଥିଲେ ଏବଂ ଏହି କଳଙ୍କିନୀ ଶୂଦ୍ରା ସ୍ତ୍ରୀ ସହବାସ କଲେ, ତାହାର ଗର୍ଭରେ ଦଶଗୋଟି ପୁତ୍ର ଉତ୍ପାଦନ କରିଥିଲେ, ଏମାନଙ୍କ ମଧ୍ୟରୁ କନିଷ୍ଠ ପୁତ୍ରର ନାମ ନାରାୟଣ, ଅଜାମିଳଙ୍କର ଏପରି ଅଧୋଗତି ଘଟିଲା ଯେ ସେ ନିଜର ପିତା ମାତାଙ୍କ ପ୍ରତି କର୍ତ୍ତବ୍ୟ ଭୁଲିଗଲେ, ସ୍ତ୍ରୀ ପ୍ରତି କର୍ତ୍ତବ୍ୟ ଭୁଲିଗଲେ, ସେହି ଦୁଷ୍ଟାସ୍ତ୍ରୀର

କୃଷିବିଧାନ ନିମିତ୍ତ ନାନାପ୍ରକାର ଉପଚ୍ଚାର ଦ୍ରବ୍ୟ ଲାଗି ତାହାଙ୍କର ପ୍ରଚୁର ଅର୍ଥର ପ୍ରୟୋଜନ ହେଲା । ପୈତୃକ ସମସ୍ତ ଧନରତ୍ନ ନିଃଶେଷ କରି ଚୌର୍ଯ୍ୟ, ଶଠତା ଇତ୍ୟାଦି ନାନାପ୍ରକାର ଅସତ୍ ଉପାୟରେ ଅର୍ଥୋପାର୍ଜନ କରିବାକୁ ଲାଗିଲେ, କ୍ରମେ ତାହାଙ୍କର ଦୁଷ୍କର୍ମମାନ ସୀମା ଲଙ୍ଘନ କଲା । କେତେକାଳ ପରେ ତାହାଙ୍କର ମୃତ୍ୟୁ ସନ୍ନିକଟ ହୁଅନ୍ତେ ଯମଦୂତମାନେ ତାହାଙ୍କୁ ନେଇଯିବାକୁ ଉପସ୍ଥିତ ହେଲେ । ଯମଦୂତମାନଙ୍କର ଭୀଷଣାକୃତି ଦେଖି ଭୟ ବିହ୍ୱଳ ଅଜାମିଳ କନିଷ୍ଠପୁତ୍ର ନାରାୟଣଙ୍କୁ ଡାକପକାଇଲେ । ନାରାୟଣ ଭଗବାନ୍ ବିଷ୍ଣୁଙ୍କର ଗୋଟିଏ ନାମ । ଅଜାମିଳ ଯଥାର୍ଥରେ ଭଗବାନଙ୍କୁ ଡାକିବା ଉଦ୍ଦେଶ୍ୟରେ ନାରାୟଣ ଶବ୍ଦ ଉଚ୍ଚାରଣ କରି ନ ଥିଲେ, ମାତ୍ର ସେ ନାମର ମହାତ୍ମ୍ୟ ଏପରି ଯେ ବିଷ୍ଣୁଦୂତମାନେ ସେଠାରେ ଉପସ୍ଥିତ ହୋଇ ଅଜାମିଳଙ୍କୁ ଯମଦୂତମାନଙ୍କ ହସ୍ତରୁ ରକ୍ଷା କରିଥିଲେ, ଅଜାମିଳ ସ୍ୱକୃତ ପାପ ନିମିତ୍ତ ଅନୁତପ୍ତ ହୋଇ ହରିଦ୍ୱାରରେ ବାସ କଲେ । ଅବଶେଷରେ ତାହାଙ୍କର ଗଙ୍ଗାପ୍ରାପ୍ତି ହୋଇଥିଲା ଏବଂ ସେ ବିଷ୍ଣୁଲୋକକୁ ଗମନ କରିଥିଲେ ।

ଅଜାମିଳର ପ୍ରଥମ ଜୀବନର ପ୍ରସଙ୍ଗ ଏହି ଉପାଖ୍ୟାନରେ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି, ସାଧାରଣବ୍ୟକ୍ତି ଅନ୍ୟାୟଆଚରଣ କଲେ ତାହା ଯେତେଦୂର ଦୋଷାବହ ନୁହେଁ, ସମାଜର ଜଣେ ପଦସ୍ଥବ୍ୟକ୍ତି ପକ୍ଷରେ ତାହା ଅଧିକ ଦୋଷାବହ, କାରଣ ସ୍ୱକୃତ ଅପରାଧ ଦ୍ୱାରା ସେ ଯେ କେବଳ ନିଜର ଅନିଷ୍ଟ ସାଧନ କରେ ତାହା ନୁହେଁ, ତାହାର କାର୍ଯ୍ୟଦ୍ୱାରା ସମାଜ ମଧ୍ୟ ପତିତ ହୁଏ ।

ଅଜାମିଳ କାମ ପରବଶ ହେବା ହେତୁରୁ ତାହାର ସମସ୍ତ ଆନୁସଙ୍ଗିକ ଅଧୋଗତି ଘଟିଥିଲା, ମନୁଷ୍ୟ କାମପରବଶ ହେଲେ ତାହାକୁ ନିଜର କାମ ପ୍ରବୃତ୍ତି ଚରିତାର୍ଥ କରିବା ପାଇଁ ନାନାପ୍ରକାର ଅସତ୍ କାର୍ଯ୍ୟ କରିବାକୁ ହୁଏ । ନାରୀ ଭଗବତ୍ ସୃଷ୍ଟିରେ ମାୟା ସ୍ୱରୂପା, ସେହି ନାରୀ ଚରିତ୍ରହୀନା ଓ କଳଙ୍କିନୀ ହେଲେ ତାହାପ୍ରତି ଆକୃଷ୍ଟ ପୁରୁଷର ଯେଉଁ ଅଧୋଗତି ଘଟିଥାଏ, ତାହାର ସହସ୍ର ସହସ୍ର ଦୃଷ୍ଟାନ୍ତ ଆମ୍ଭେମାନେ ନିତ୍ୟ ପ୍ରତ୍ୟକ୍ଷ କରୁଅଛୁଁ । ଯେଉଁ ନାରୀ ତ୍ରୈଣ୍ୟ ପ୍ରହେଳିକା ପୁରୁଷ ସମକ୍ଷରେ ବିସ୍ତାରିକରି ତାହାକୁ କ୍ରୀଡ଼ା ପୁତ୍ତଳୀ ବା କ୍ରୀଡ଼ା ପଶୁତୁଲ୍ୟ କରିରଖିଥାଏ ସେହି ନାରୀଦ୍ୱାରା ବା ସେହି ନାରୀହସ୍ତରେ ସେହି ମାୟାଚ୍ଛନ୍ନ ପୁରୁଷର ବିଷମ ପରିଣାମ ଘଟେ, କାମମତ୍ତ ପୁରୁଷ ଶାରୀରିକ, ମାନସିକ ବିବିଧ ଯନ୍ତ୍ରଣା ଭୋଗ କରେ, ବିବିଧ ଦୁରାରୋଗ୍ୟ ରୋଗ ତାହାର ଜୀବନକୁ ଯନ୍ତ୍ରଣାମୟ କରିଦିଏ, ମାନସିକଅଶାନ୍ତି ତାହାର ପରିଣାମ ହୁଏ ।

ଏହି ଉପାଖ୍ୟାନରେ ଆମ୍ଭେମାନେ ଭୀଷଣାକୃତି ଯମଦୂତ ଓ ସୌମ୍ୟ ମୂର୍ତ୍ତି ବିଷ୍ଣୁଦୂତର ଉଭୟଙ୍କର ଚିତ୍ର ଦେଖୁ, ଯମ ଧର୍ମରାଜ, ଅନ୍ୟାୟର ଦଣ୍ଡଦାତା, ମାତ୍ର ପାପୀ ପ୍ରତି ଦଣ୍ଡବିଧାନ ଏକମାତ୍ର ଉପାୟ ନୁହେଁ ପାପୀ ପାଇଁ ଭଗବାନଙ୍କ ରାଜ୍ୟରେ କ୍ଷମାର ମଧ୍ୟ ବ୍ୟବସ୍ଥା ଅଛି, ମହାପାପୀ ସତ୍‌ସଙ୍ଗ ଲାଭକରି ନିଜର ଚରିତ୍ର ପରିବର୍ତ୍ତନ କରିପାରେ, ଭଗବାନ୍ ସର୍ବଦା ଜଣେ ଦଣ୍ଡଦାତା ପୁରୁଷ ହୋଇ ବସିଅଛନ୍ତି ଏବଂ ସ୍ଖଳିତ ମାନବଙ୍କୁ ଯେ କେବଳ କଠିନ ଶାସ୍ତି ଦେଉଅଛନ୍ତି, ତାହା ନୁହେଁ, ସେ କ୍ଷମାସାଗର, ତାହାଙ୍କ କ୍ଷମାର ଅନ୍ତନାହିଁ । କ୍ଷୁଦ୍ରମାନବ ନିଜର କ୍ଷୁଦ୍ର ବୁଦ୍ଧି ଓ କ୍ଷୁଦ୍ର ମାପକାଠିରେ ସେହି କ୍ଷମାସାଗରର ଇୟତ୍ତା କରିବାକୁ ଚେଷ୍ଟା କରେ । ଭକ୍ତକବି ମଧୁସୂଦନଙ୍କ ଭାଷାରେ—

"ମାନବର ମାନଦଣ୍ଡେ କଳନୀୟ ନୁହଁ
ଚରମ ସୀମାନ୍ତ ମୋର ପ୍ରେମ କରୁଣାର,

ଲଭିଲ ମୋ କ୍ଷମା ସିନ୍ଧୁ ଜଳେ ବୁଡ଼ିଯିବ
ଫିଙ୍ଗିଦେଲେ ମେରୁ ସମ ଘୋର ପାପଭର,
( ମଧୁସୂଦନ, କ୍ଷମାସାଗର—ବସନ୍ତଗାଥା )

ଭଗବାନ୍‌ଙ୍କର ସେହି କ୍ଷମାସାଗର ମଧ୍ୟରେ ପାପୀର ପାପଭର ମେରୁ ପ୍ରମାଣ ହେଲେ ମଧ୍ୟ ତାହା କ୍ଷୁଦ୍ର ଉପଳଖଣ୍ଡପରି ବୁଡ଼ିଯିବ ଏବଂ ସେହି ପାପରାଶି ଜଳ ବୁଦ୍‌ବୁଦ ପ୍ରାୟ ମୁହୂର୍ତ୍ତକେ ଉଭେଇ ଯିବ। ଅଜାମିଳଉପାଖ୍ୟାନରେ ତାହାହିଁ ପ୍ରତିପାଦନ କରାଯାଇଅଛି।

ଅଜାମିଳ ସମକ୍ଷରେ ଯମଦୂତମାନେ ପାପ ଓ ପୁଣ୍ୟର ସଂଜ୍ଞା ପ୍ରତିପାଦନ କରିଥିଲେ। ସେମାନଙ୍କ ମତରେ ବେଦ ବିହିତ କର୍ମ ପୁଣ୍ୟ ଓ ବେଦ ବାଧି ଗର୍ହିତ କର୍ମ ପାପ। ଅଜାମିଳ ବେଦବାଧି ଗର୍ହିତ କର୍ମ କରିଥିବାରୁ ସେ ଦଣ୍ଡ ପାଇବାର ଯୋଗ୍ୟ, ଏହାହିଁ ସେମାନେ ବୁଝାଇଥିଲେ। ମାତ୍ର ବିଷ୍ଣୁଦୂତମାନେ ପ୍ରତିପାଦନ କରିଥିଲେ ଯେ ମାନବ ଯେତେ ପାପ କରୁ ପଛକେ ଭଗବତ୍ ନାମ ଯେ କୌଣସି କାରଣରୁ ଉଚ୍ଚାରଣ କଲେ ସେ ପାପରୁ ମୁକ୍ତହୁଏ। ଭକ୍ତକବି ଧ୍ୟାନକୃଷ୍ଣ ଦାସ ରସକଲ୍ଲୋଳରେ ଲେଖିଅଛନ୍ତି—

କୃଷ୍ଣ ନାମରେ ପାପକ୍ଷୟ ଯେତେ । କରି ନ ପାରେ ପାପୀ ପାପ ସେତେ ॥
କୁଧର ପ୍ରମାଣ ତୁଳାକୁ ଶିଖି । କଣ ମାତ୍ରକେ ନ ଦହଇ ରଖି ॥

ଭଗବତ୍ ନାମ ଯେଉଁଠାରେ ଉଚ୍ଚାରିତ ହୁଏ, ସେଠାରେ ସାଧୁଜନମାନେ ସମାବିଷ୍ଟ ହୁଅନ୍ତି, ସାଧୁ ସଂସର୍ଗର ଫଳରେ କୁପଥଗାମୀମାନଙ୍କର ପରିବର୍ତ୍ତନ ଘଟେ। ସେହି ପରିବର୍ତ୍ତନ ହେତୁ ତାହାର ହୃଦୟରେ ଅନୁତାପ ବହ୍ନି ଜଳି ଉଠେ। ତେଣୁ ସେ ଭଗବାନଙ୍କର କୃପାପାତ୍ର ହୁଏ। ଅଜାମିଳ ତାହାହିଁ କରିଥିଲା।

ନାମ ମାହାତ୍ମ୍ୟ ପ୍ରତିପାଦନ କରୁ କରୁ ଭାଗବତ ପ୍ରଣେତା ମଧ୍ୟ ଦେଖାଇ ଅଛନ୍ତି ଯେ ଦାନ ଯଜ୍ଞ, ବ୍ରତ ଉପାସନା ଇତ୍ୟାଦି ପ୍ରକାର ପ୍ରାୟଶ୍ଚିତ୍ତ ମନୁଷ୍ୟକୁ ପୁଣି କର୍ମବନ୍ଧନରେ ଜଡ଼ିତ କରେ। ମାତ୍ର ଭଗବତ୍ ନାମୋଚ୍ଚାରଣରେ ମାନବର ସେପରି ଆଶଙ୍କା ନ ଥାଏ। ବରଂ ଏହି ନାମୋଚ୍ଚାରଣ କରି ସେ କର୍ମବନ୍ଧନରୁ ମୁକ୍ତିଲାଭ କରେ। ମନୁଷ୍ୟ କର୍ମବନ୍ଧନରେ ଯେତେ ଜଡ଼ିତ ହୁଏ, ତାହାର ବନ୍ଧନ ସେତିକି ଦୃଢ଼ୀଭୂତ ହୁଏ। ତେଣୁ ନିର୍ଲିପ୍ତ ଭାବରେ କର୍ମ କରିବାକୁ କର୍ମୀରଶ୍ରେଷ୍ଠ ଆଦର୍ଶ ବୋଲି ନିର୍ଦ୍ଦେଶ କରାଯାଇଅଛି।

ଶ୍ରୀମଦ୍ ଭଗବଦ୍‌ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ କହିଅଛନ୍ତି,—

"ସର୍ବଦା କର୍ମକର ମାତ୍ର ତହିଁର ଫଳ ପାଇଁ ବ୍ୟସ୍ତ ହୁଅନାହିଁ, ତୁମ୍ଭର ସର୍ବ କର୍ମର ଫଳ ମୋତେ ସମର୍ପଣ କର" ଅର୍ଥାତ୍ ନିଷ୍କାମ କର୍ମାନୁଷ୍ଠାନ କର୍ମୀର ଆଦର୍ଶ ପନ୍ଥା।

ମନୁଷ୍ୟର ଏହି ଜୀବନରେ ସ୍ୱର୍ଗ ଓ ନରକ ଉଭୟ ଅବସ୍ଥା ଘଟେ। "ସ୍ୱର୍ଗ ନରକ ବେଳ ବାଣୀ, ଏହି ଜନମେ ପରମାଣି"। ତେଣୁ ବୁଝା ଯାଇଅଛି ମନୁଷ୍ୟ ସ୍ୱକୃତକର୍ମ ହେତୁରୁ ସ୍ୱର୍ଗର ସୁଖ ବା ନରକର ଯନ୍ତ୍ରଣା ଇହ ଜୀବନରେ ଭୋଗ କରିଥାଏ।

## ତୃତୀୟ ଅଧ୍ୟାୟ ।

ତୃତୀୟେ ତୁ ଯମେନାପି ବୈଷ୍ଣବୋତ୍କର୍ଷବର୍ଣ୍ଣନୈଃ ।
ସାନ୍ତ୍ୱୟିତ୍ୱା ସ୍ୱଦୂତାସ୍ତେ ବୈଷ୍ଣବେ କିଙ୍କରୀକୃତାଃ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀରାଜୋବାଚ ।

ନିଶମ୍ୟ ଦେବଃ ସ୍ୱଭଟୋପବର୍ଣ୍ଣିତଂ ପ୍ରତ୍ୟାହ କିଂ ତାନପି ଧର୍ମ୍ମରାଜଃ ।
ଏବଂ ହତାଜ୍ଞୋ ବିହତାନ୍ ମୁରାରେର୍ନୈଦେଶିକୈର୍ଯସ୍ୟ ବଶେ ଜନୋଽୟମ୍ । ୧ ।
ଯମସ୍ୟ ଦେବସ୍ୟ ନ ଦଣ୍ଡଭଙ୍ଗଃ କୁତଶ୍ଚନର୍ଷେ ଶ୍ରୁତପୂର୍ବ ଆସୀତ୍ ।
ଏତନ୍ମୁନେ ବୃଶ୍ଚତି ଲୋକସଂଶୟଂ ନ ହି ତ୍ୱଦନ୍ୟ ଇତି ମେ ବିନିଶ୍ଚିତମ୍ । ୨ ।

---

### ଯମରାଜାଙ୍କ କର୍ତ୍ତୃକ ବିଷ୍ଣୁନାମ ମାହାତ୍ମ୍ୟ କୀର୍ତ୍ତନ ।

ତୃତୀୟ ଅଧ୍ୟାୟରେ ଧର୍ମରାଜ ଯମ ମଧ୍ୟ ନିଜର ଦୂତମାନଙ୍କ ନିକଟରେ ବୈଷ୍ଣବମାନଙ୍କର ଉତ୍କର୍ଷ ବିଷୟ ବର୍ଣ୍ଣନା କରି ସାନ୍ତ୍ୱନା କରିଥିଲେ, ଏବଂ ବୈଷ୍ଣବମାନଙ୍କର କିଙ୍କର କରାଇଥିଲେ । ୦ ।

ଶ୍ରୀ ରାଜା କହିଲେ —

ମର୍ତ୍ତ୍ୟବାସୀ ଲୋକମାନେ ଯମରାଜାଙ୍କର ଅଧୀନ, ଯମରାଜ ନିଜର ଦୂତମାନଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶ୍ରବଣକରି ବୁଝିଲେ, ଯେ ତାହାଙ୍କର ଆଦେଶ ପାଳିତ ହେଲନାହିଁ, ବିଷ୍ଣୁ ଦୂତମାନେ ଯମଦୂତମାନଙ୍କୁ ବାଧା ଦେଇଅଛନ୍ତି, ଏହା ଶୁଣି ଯମରାଜ କଅଣ କହିଲେ ? । ୧ ।

ହେ ମୁନିବର ! ଯମରାଜାଙ୍କର ଦଣ୍ଡାଜ୍ଞାରେ ଯେ ବାଧା ଘଟେ ଏହା ମୁଁ ଶୁଣି ନଥିଲି । ଆପଣଙ୍କ ଭିନ୍ନ ମୋର ସଂଶୟ କେହି ଦୂର କରି ନ ପାରେ । ୨ ।

---

ତୃତୀୟ ଅଧ୍ୟାୟରେ ଯମ,ବୈଷ୍ଣବ ଉତ୍କର୍ଷ ବର୍ଣ୍ଣନ । ନିଜ ଦୂତଙ୍କୁ ଶାନ୍ତକଲେ,ସେମାନେ ବୈଷ୍ଣବ ଭଜିଲେ ।୩।

ଶ୍ରୀ ରାଜୋବାଚ—

ଆପଣା ଦୂତ ବାକ୍ୟ ଶୁଣି
କି କି ବୋଇଲେ ଦଣ୍ଡପାଣି
ଯମ ରାଜାର ଆଜ୍ଞା ହତ
ଯେଣୁ ହୋଇଲା ବିପରୀତ

ବିଷ୍ଣୁ ଦୂତରେ ପରାଜିତ
ଯେଣୁ ହୋଇଲେ ଯମଦୂତ
ଯାହାର ବଶ ସର୍ବଜନେ
ଏତ ବିଚିତ୍ର ମୋର ମନେ
ଯମର ଦଣ୍ଡ ଭଗ୍ନ ନାହିଁ
ପୂର୍ବେ ଶୁଣିଲା କେହି ନାହିଁ

ଏତ ସଂଶୟ ଅଦଭୁତ
ହେ ମୁନି କହିବା ଉଚିତ
ତୁମ୍ଭର ବିହୁଁ ଅନ୍ୟ କେହୁ
ସଂଶୟ ଛେଦିବ ମୋ ବହୁଁ ।୧,୨

ଶ୍ରୀଶୁକ ଉବାଚ ।

ଭଗବତ୍‌ପୁରୁଷୈ ରାଜନ୍ ଯାମ୍ୟାଃ ପ୍ରତିହତୋଦ୍ୟମାଃ ।
ପତିଂ ବିଜ୍ଞାପୟାମାସୁର୍ଯମଂ ସଂଯମନୀପତିମ୍ । ୩ ।

ଶ୍ରୀଯମଦୂତା ଊଚୁଃ ।

କତି ସନ୍ତୀହ ଶାସ୍ତାରୋ ଜୀବଲୋକସ୍ୟ ବୈ ପ୍ରଭୋ ।
ତ୍ରୈବିଧ୍ୟଂ କୁର୍ବତଃ କର୍ମ ଫଳାଭିବ୍ୟକ୍ତିହେତବଃ । ୪ ।
ଯଦି ସ୍ୟୁର୍ବହବୋ ଲୋକେ ଶାସ୍ତାରୋ ଦଣ୍ଡଧାରିଣଃ ।
କସ୍ୟ ସ୍ୟାତାଂ ନ ବା କସ୍ୟ ମୃତ୍ୟୁଶ୍ଚାମୃତମେବ ବା । ୫ ।
କିନ୍ତୁ ଶାସ୍ତୃବହୁତ୍ୱେ ସ୍ୟାଦ୍‌ବହୂନାମିହ କର୍ମିଣାମ୍ ।
ଶାସ୍ତୃତ୍ୱମୁପଚାରୋ ହି ଯଥା ମଣ୍ଡଳବର୍ତ୍ତିନାମ୍ । ୬ ।

---

ଶ୍ରୀ ଶୁକଦେବ କହିଲେ,—

ହେ ରାଜନ୍ ! ବିଷ୍ଣୁ ଦୂତମାନେ ଯମଦୂତମାନଙ୍କର କାର୍ଯ୍ୟରେ ବ୍ୟାଘାତ ଜନ୍ମାଇବାରୁ ସେମାନେ ସଂଯମନୀପତି ଯମରାଜାଙ୍କୁ କହିଲେ । ୩ ।

ଯମଦୂତମାନେ କହିଲେ—

ହେ ପ୍ରଭୋ ! ସଂସାରରେ କାୟିକ, ବାଚକ, ମାନସିକ ତ୍ରିବିଧ କର୍ମକରି ପ୍ରାଣୀମାନେ କର୍ମଫଳ ଭୋଗ ନିମନ୍ତେ କେତେ ଶାସନକର୍ତ୍ତାଙ୍କର ବ୍ୟବସ୍ଥାରେ ଚଳିଥାଆନ୍ତି । ୪ ।

ଜଗତରେ ଯଦି ଦଣ୍ଡବିଧାନ କର୍ତ୍ତା ଶାସକ ଏକାଧିକ ହୁଅନ୍ତି ତାହାହେଲେ ଦଣ୍ଡବିଧାନରେ ବିପର୍ଯ୍ୟୟ ଘଟିଥାଏ । କାରଣ ଯଦି ସେମାନଙ୍କ ମଧ୍ୟରେ ବିବାଦ ଘଟେ ତାହାହେଲେ ସୁଖ ବା ଦୁଃଖଭୋଗ ପ୍ରାଣୀ ଭାଗ୍ୟରେ ଘଟେ ନାହିଁ । ୫ ।

ଜଗତରେ ବିଭିନ୍ନ ପ୍ରକାର କର୍ମୀଙ୍କପାଇଁ ବିଭିନ୍ନପ୍ରକାର ଶାସକ ଥାନ୍ତି । ତାହାହେଲେ ମଧ୍ୟ ପ୍ରକୃତ ଶାସନ ଭାର ମୂଳଶାସନ କର୍ତ୍ତାଙ୍କ ଉପରେ ନ୍ୟସ୍ତ ଥାଏ, ଅନ୍ୟାନ୍ୟ ଅଧୀନସ୍ଥ ବ୍ୟକ୍ତିମାନଙ୍କଠାରେ ସେହି ଶାସନଭାର ଅର୍ପିତ ହୋଇଥାଏ ମାତ୍ର, ସମ୍ରାଟ୍ ପ୍ରକୃତ ଶାସନ କର୍ତ୍ତା, ଅନ୍ୟ ଅଧୀନସ୍ଥବ୍ୟକ୍ତିମାନେ ଉପଲକ୍ଷ ମାତ୍ର । ୬ ।

---

ଶ୍ରୀବାଦରାୟଣିରୁବାଚ

ବିଷ୍ଣୁ ଦୂତରେ ପରାଜିତ
ଯେଣୁ ହୋଇଲେ ଯମଦୂତ
ଯମର ଛାମୁରେ ମିଳିଲେ
ସକଳ ବାରତା କହିଲେ ।୩।

ଯମଦୂତା ଊଚୁଃ—
ସଂସାରେ ଜନ୍ତୁ ଛନ୍ତି ଯେତେ
ଏହାଙ୍କ ଶାସ୍ତା ଅବା କେତେ
ତ୍ରିବିଧ କର୍ମ ଯେ କରନ୍ତି
କା ଠାରୁଁ ସେ ଫଳ ଭୁଞ୍ଜନ୍ତି ।୪।
ଯେବେ ଏ ଅଖିଳ ଲୋକର
ଦଣ୍ଡର କରତା ଅପାର

କାହାର ମୃତ୍ୟୁ ଅବା କାହିଁ
ଅମୃତ ଅଛୁ ଅବାକାହିଁ ।୫।
କର୍ମର ବଶ ହୋଇଜନ୍ତୁ
ଶାସ୍ତି ଲଭନ୍ତି କର୍ମ ହେତୁ
ତେଣୁ ଏ ଶାସ୍ତା ଏକଜଣ
ଯେସନ୍ତେ ଦୁଷ୍ଟ ଶାସ୍ତା ରାଜନ ।୬

ଅତସ୍ତ୍ୱମେକୋ ଭୂତାନାଂ ସେଶ୍ୱରାଣାମଧୀଶ୍ୱରଃ ।
ଶାସ୍ତା ଦଣ୍ଡଧରୋ ନୃଣାଂ ଶୁଭାଶୁଭବିବେଚନଃ । ୭ ।
ତସ୍ୟ ତେ ବିହିତୋ ଦଣ୍ଡୋ ନ ଲୋକେ ବର୍ତ୍ତତେଽଧୁନା ।
ଚତୁର୍ଭିରଦ୍ଭୁତୈଃ ସିଦ୍ଧୈରାଜ୍ଞା ତେ ବିପ୍ରଲମ୍ଭିତା । ୮ ।
ନୀୟମାନଂ ତବାଦେଶାଦସ୍ମାଭିର୍ଯାତନାଗୃହାନ୍ ।
ବ୍ୟମୋଚୟନ୍ ପାତକିନଂ ଛିତ୍ତ୍ୱା ପାଶାନ୍ ପ୍ରସହ୍ୟ ତେ । ୯ ।
ତାଂସ୍ତେ ବେଦିତୁମିଚ୍ଛାମୋ ଯଦି ନୋ ମନ୍ୟସେ କ୍ଷମମ୍ ।
ନାରାୟଣେତ୍ୟଭିହିତେ ମାଭୈରିତ୍ୟାଯଯୁର୍ଦ୍ରୁତମ୍ । ୧୦ ।
ଶ୍ରୀବାଦରାୟଣିରୁବାଚ— ଇତି ଦେବଃ ସ ଆପୃଷ୍ଟଃ ପ୍ରଜାସଂଯମନୋ ଯମଃ ।
ପ୍ରୀତଃ ସ୍ୱଦୂତାନ୍ ପ୍ରତ୍ୟାହ ସ୍ମରନ୍ ପାଦାମ୍ବୁଜଂ ହରେଃ । ୧୧ ।

---

ରାଜା ପ୍ରଜା ପ୍ରଭୃତି ସମସ୍ତପ୍ରାଣୀଙ୍କର ଅଧିପତି ଆପଣ ଏକମାତ୍ର ଶାସନ କର୍ତ୍ତା ଏବଂ ଦୋଷାଦୋଷ ବୁଝି ଆପଣ ସମୁଚିତ ଦଣ୍ଡବିଧାନ କରିଥାନ୍ତି ଏହା ଆମ୍ଭେମାନେ ଜାଣୁ । ୭ ।

ଆପଣଙ୍କ ବିହିତ ଦଣ୍ଡ ବର୍ତ୍ତମାନ ଆଉ ଲୋକସମାଜରେ ଗୃହୀତ ହେଉନାହିଁ, ଚାରିଜଣ ଅଦ୍ଭୁତ ସିଦ୍ଧ ପୁରୁଷ ଆପଣଙ୍କ ଆଦେଶ ଲଙ୍ଘନ କରିଅଛନ୍ତି । ୮ ।

ଆପଣଙ୍କର ଆଜ୍ଞାନୁସାରେ ଆମ୍ଭେମାନେ ଜଣେ ପାପୀକୁ ଦଣ୍ଡସ୍ଥାନକୁ ଆଣୁଥିଲୁ କିନ୍ତୁ ସେହି ସିଦ୍ଧପୁରୁଷମାନେ ତାହାକୁ ବଳ ପୂର୍ବକ ବନ୍ଧନ ମୁକ୍ତ କରିଦେଲେ । ୯ ।

ଆପଣ ଯଦି ଆମ୍ଭମାନଙ୍କର ମଙ୍ଗଳ ଇଚ୍ଛା କରନ୍ତି ତାହାହେଲେ ସେ ସିଦ୍ଧ ପୁରୁଷମାନେ କିଏ ତାହା ଆମ୍ଭମାନଙ୍କୁ କୁହନ୍ତୁ । ପୂର୍ବୋକ୍ତ ପାପୀ ନାରାୟଣଶବ୍ଦ ଉଚ୍ଚାରଣ କରିବା ମାତ୍ରେ ସେମାନେ 'ଭୟନାହିଁ ଭୟନାହିଁ' କହି ସେଠାରେ ତୁରନ୍ତ ଉପସ୍ଥିତ ହେଲେ । ୧୦ ।

ଶ୍ରୀଶୁକଦେବ କହିଲେ :—ଲୋକ ଶାସନକର୍ତ୍ତା ଯମରାଜା ସ୍ୱୀୟ ଦୂତମାନଙ୍କଠାରୁ ଏହି ପ୍ରଶ୍ନ ଶ୍ରବଣକରି ଶ୍ରୀହରି ପାଦପଦ୍ମ ସ୍ମରଣ କରି ଆନନ୍ଦିତ ଚିତ୍ତରେ ଉତ୍ତର ଦେଲେ । ୧୧ ।

---

ଏଣୁ ଅଶେଷ ଜନ୍ତୁଙ୍କର
ତୁମ୍ଭେ ଯେ ଶାସ୍ତା ଦଣ୍ଡଧର
ଈଶ୍ୱରମାନଙ୍କ ଈଶ୍ୱର
ଶୁଭ ଅଶୁଭର ଠାକୁର । ୭।
ତୁମ୍ଭର ଦଣ୍ଡ ଏବେ ନାହିଁ
ପାପିଷ୍ଠ ଲୋକଙ୍କର ତହିଁ
ଅଦ୍ଭୁତ ସିଦ୍ଧ ଚାରିଜଣ
ତୁମ୍ଭଙ୍କୁ କଲେ ଅବଜ୍ଞାନ ।୮।
ତୁମ୍ଭ ଆଦେଶ ଘେନି ଶିରେ
ଆମ୍ଭେ ଆଣୁଥିଲୁଁ ପାପରେ
ଯାତନା ଗୃହକୁ ଆଣନ୍ତେ
ମୋଚନ କରିଣ ତୁରିତେ
ପାଶ ଛେଦିଦେଲେ ସେ ପ୍ରତ୍ୟକ୍ଷେ
ସେ ସିଦ୍ଧେ ଗଲେ ଅନ୍ତରୀକ୍ଷେ ।୯।
ତାହାଙ୍କୁ ଜାଣିବାର ପାଇଁ
ଇଚ୍ଛା କରିଛୁ ଦଣ୍ଡସାଇଁ
ଶୁଣିବାକ୍ଷମ ଅଛୁ ଯେବେ
ଏ କଥା କହ ପ୍ରଭୁ ତେବେ
ଯେ କ୍ଷଣେ ସେ ପାପୀ ଦୁର୍ଜ୍ଜନ
ଉଚ୍ଚାରି କଲା "ନାରାୟଣ"
"ଭୟ ନ କର ହୋ" ବୋଇଲେ
ତକ୍ଷଣେ ଆସି ସେ ମିଳିଲେ ।୧୦।

ଶ୍ରୀ ବାଦରାୟଣିରୁବାଚ—

ଦୂତଙ୍କ ବାକ୍ୟ ଶୁଣି ଯମ
ଆନନ୍ଦେ ହରଷ ବଦନ
ଶ୍ରୀ ବିଷ୍ଣୁ ଅଭୟଚରଣ
ତକ୍ଷଣେ କରି ସୁମରଣ
ଅତ୍ୟନ୍ତ ପ୍ରୀତ ହୋଇ ମନେ
ବୋଲଇ ଶୁଣ ଭୃତ୍ୟଗଣେ ।୧୧।

ଝି

ଶ୍ରୀ ଯମ ଉବାଚ ।

ପରୋ ମଦନ୍ୟୋ ଜଗତସ୍ତସ୍ଥୁଷଶ୍ଚ ଓତଂ ପ୍ରୋତଂ ପଟବଦ୍ ଯତ୍ର ବିଶ୍ୱମ୍ ।
ଯଦଂଶତୋଽସ୍ୟ ସ୍ଥିତିଜନ୍ମନାଶା ନାସ୍ୟୋତବଦ୍ୟସ୍ୟ ବଶେ ଚ ଲୋକଃ ।୧୨।
ଯୋ ନାମଭିର୍ବାଚି ଜନଂ ନିଜାୟାଂ ବଧ୍ନାତି ତନ୍ତ୍ର୍ୟାମିବ ଦାମଭିର୍ଗାଃ ।
ଯସ୍ମୈ ବଳିଂ ତ ଇମେ ନାମ କର୍ମନିବନ୍ଧବଦ୍ଧାଶ୍ଚକିତା ବହନ୍ତି । ୧୩ ।
ଅହଂ ମହେନ୍ଦ୍ରୋ ନିର୍ଋତିଃ ପ୍ରଚେତାଃ ସୋମୋଽଗ୍ନିରୀଶଃ ପବନୋ ବିରିଞ୍ଚିଃ ।
ଆଦିତ୍ୟବିଶ୍ୱେ ବସବୋଽଥସାଧ୍ୟା ମରୁଦ୍ଗଣା ରୁଦ୍ରଗଣାଃ ସସିଦ୍ଧାଃ । ୧୪ ।
ଅନ୍ୟେ ଚ ଯେ ବିଶ୍ୱସୃଜୋଽମରେଶା ଭୃଗ୍ୱାଦୟୋଽସ୍ପୃଷ୍ଟରଜସ୍ତମସ୍କାଃ ।
ଯସ୍ୟେହିତଂ ନ ବିଦୁଃ ସ୍ପୃଷ୍ଟମାୟାଃ ସତ୍ତ୍ୱପ୍ରଧାନା ଅପି କିଂ ତତୋଽନ୍ୟେ । ୧୫ ।

---

ଯମରାଜ କହିଲେ, ମୋ ବ୍ୟତୀତ ଚରାଚର ବିଶ୍ୱର ଆଉଜଣେ ଅଧିପତି ଅଛନ୍ତି । ବସ୍ତ୍ର ଯେପରି ସୂତ୍ର ସହିତ ଜଡ଼ିତ ସେହିପରି ଏହି ବିଶ୍ୱ ମଧ୍ୟ ତାହାଙ୍କଠାରେ ଜଡ଼ିତ; ବ୍ରହ୍ମା ବିଷ୍ଣୁ ମହେଶ୍ୱର ତାହାଙ୍କର ଅଂଶ ସ୍ୱରୂପ ହୋଇ ସୃଷ୍ଟି, ସ୍ଥିତି, ଲୟ ସାଧନ କରୁଅଛନ୍ତି । ସମସ୍ତ ବିଶ୍ୱ ନାସିକାବଦ୍ଧ ବଳୀବର୍ଦ୍ଦ ତୁଲ୍ୟ ତାହାଙ୍କର ବଶୀଭୂତ ହୋଇ ବିଚରଣ କରୁଅଛି । ୧୨ ।

ଲୋକେ ଯେପରି ଗୋରୁମାନଙ୍କୁ ରଜ୍ଜୁରେ ବାନ୍ଧି ରଖନ୍ତି ସେହିପରି ଯେ ବେଦ ବାକ୍ୟ ସୂତ୍ରରେ ଲୋକମାନଙ୍କୁ ବାନ୍ଧି ରଖିଅଛନ୍ତି, ଜୀବମାନେ ନାମ କର୍ମାଦି ବନ୍ଧନରେ ଅବଦ୍ଧ ହୋଇ ଯାହାଙ୍କର ଉଦ୍ଦେଶ୍ୟରେ ଚକିତ ଭାବରେ ଉପହାରାଦି ଅର୍ପଣ କରି ଥାଆନ୍ତି, ସେ ଏକା ସର୍ବେଶ୍ୱର । ୧୩ ।

ମୁଁ ଇନ୍ଦ୍ର, ନିରୃତ, ବରୁଣ, ଚନ୍ଦ୍ର, ଅଗ୍ନି, ଶିବ, ବାୟୁ, ବ୍ରହ୍ମା, ଦ୍ୱାଦଶ ଆଦିତ୍ୟ, ବିଶ୍ୱଦେବଗଣ, ଅଷ୍ଟବସୁ, ସାଧ୍ୟଗଣ, ଦେବଗଣ, ସିଦ୍ଧଗଣ, ଏକାଦଶ ରୁଦ୍ର, ଅନ୍ୟାନ୍ୟଦେବଗଣ, ବିଶ୍ୱସ୍ରଷ୍ଟା, ଭୃଗୁପ୍ରଭୃତି ମହର୍ଷିଗଣ ରଜଃ ଓ ତମୋଗୁଣ ଅତିକ୍ରମକରି ପ୍ରଧାନରୂପେ ସତ୍ତ୍ୱ ଗୁଣାଧିଷ୍ଠିତ ହୋଇ ଅଛନ୍ତି । ସେମାନେ ମଧ୍ୟ ମାୟା ବଶରେ ତାହାଙ୍କର କାର୍ଯ୍ୟ ବୁଝି ପାରନ୍ତି ନାହିଁ, ଅନ୍ୟମାନଙ୍କ କଥା କିଣ କହିବା । ୧୪,୧୫ ।

---

ଶ୍ରୀ ଯମ ଉବାଚ—

ମୋ ଠାରୁଁ ଅନ୍ୟ ଶ୍ରେଷ୍ଠ ଶୁଣ
ଜଗତ ଯାହାର ଉଆଣ
ସୂତାରେ ଯେସନ୍ତେ ବସ୍ତ୍ର ହୋଇ
ବିଶ୍ୱ ତେମନ୍ତ ତାର ଠାଇଁ
ଯାହାର ଅଂଶରୁ ଜଗତ
ଜନ୍ମ ପାଳନ ପୁଣ ହତ
ଯାହାର ନାମ ମନ୍ତ୍ର ଗୁଣ
ବନ୍ଧନ କରେ ପ୍ରାଣି ମନ
ରଜ୍ଜୁରେ ଗୋରୁ ଯେହ୍ନେ ଥାଇ
କେଣିକି ନ ପାରଇ ଯାଇ
ନିୟମ ଡୋରେ ତାହାଙ୍କର
ବନ୍ଧା ହୋଇଛି ଚରାଚର
ନାନାକର୍ମରେ ବନ୍ଧା ହୋଇ
ଜଗତ ଯାହାକୁ ସେବଇ ।୧୨,୧୩
ମୁହିଁ ମହେନ୍ଦ୍ର ନଇଋତ
ବରୁଣ ଆଦି ଦିଗପତ
ସୋମ ଅନଳ ମହେଶ୍ୱର
ପବନ ବ୍ରହ୍ମା ଦିବାକର
ବିଶ୍ୱଦେବା ଯେ ବସୁ ଯେତେ
ରୁଦ୍ର ମରୁଦ୍ଗଣ ସହିତେ
ସିଦ୍ଧ କିନ୍ନର ଆଦିକରି
ଯେତେ ସଂସାରେ ଅଧିକାରୀ
ସଂସାରେ କର୍ତ୍ତା ଆଦି ଯେତେ
ଭୃଗୁ ଆଦି ଋଷି ସହିତେ
ଏ ଆଦି ଯେତେକ କହିଲୁ
ତାହାର ମାୟା ନ ଜାଣିଲୁ ।୧୪,୧୫

ଯଂ ବୈ ନ ଗୋଭିର୍ମନସାସୁଭିର୍ବା ହୃଦା ଗିରା ବାସୁଭୃତୋ ବିଚକ୍ଷତେ ।
ଆତ୍ମାନମନ୍ତର୍ହୃଦି ସନ୍ତମାତ୍ମନାଂ ଚକ୍ଷୁର୍ଯଥୈବାକୃତୟସ୍ତତଃପରମ୍ । ୧୬ ।
ତସ୍ୟାତ୍ମତନ୍ତ୍ରସ୍ୟ ହରେରଧୀଶିତୁଃ ପରସ୍ୟ ମାୟାଧିପତେର୍ମହାତ୍ମନଃ ।
ପ୍ରାୟେଣ ଦୂତା ଇହ ବୈ ମନୋହରାଶ୍ଚରନ୍ତି ତଦ୍ରୂପଗୁଣସ୍ୱଭାବାଃ । ୧୭ ।
ଭୂତାନି ବିଷ୍ଣୋଃ ସୁରପୂଜିତାନି ଦୁର୍ଦ୍ଦର୍ଶଲିଙ୍ଗାନି ମହାଦ୍‌ଭୁତାନି ।
ରକ୍ଷନ୍ତି ତଦ୍‌ଭକ୍ତିମତଃପରେଭ୍ୟୋ ମତ୍ତଶ୍ଚ ମର୍ତ୍ତ୍ୟାନଥ ସର୍ବତଶ୍ଚ । ୧୮ ।
ଧର୍ମନ୍ତୁ ସାକ୍ଷାଦ୍‌ଭଗବତ୍‌ପ୍ରଣୀତଂ ନବୈବିଦୁର୍ଋଷୟୋ ନାପି ଦେବାଃ ।
ନ ସିଦ୍ଧମୁଖ୍ୟା ଅସୁରା ମନୁଷ୍ୟାଃ କୁତୋ ନୁ ବିଦ୍ୟାଧରଚାରଣାଦୟଃ । ୧୯ ।
ସ୍ୱୟମ୍ଭୂର୍ନାରଦଃ ଶମ୍ଭୁଃ କୁମାରଃ କପିଳୋ ମନୁଃ ।
ପ୍ରହ୍ଲାଦୋ ଜନକୋ ଭୀଷ୍ମୋ ବଳିର୍ବୈୟାସକିର୍ବୟମ୍ । ୨୦ ।

---

ଯେ ଜୀବଗଣଙ୍କ ହୃଦୟ ମଧ୍ୟରେ ସାକ୍ଷୀରୂପେ ବିରାଜମାନ ସେହି ଅନ୍ତର୍ଯ୍ୟାମୀ ଭଗବାନଙ୍କୁ କେହି ଇନ୍ଦ୍ରିୟ, ମନ, ପ୍ରାଣ, ଚିତ୍ତ ବା ବାକ୍ୟ ଦ୍ୱାରା ଉପଲବ୍ଧି କରି ନ ପାରେ, ଯେପରି ଚକ୍ଷୁ ସମସ୍ତରୂପଙ୍କୁ ଦେଖେ ମାତ୍ର ଚକ୍ଷୁକୁ କୌଣସି ଲୋକ ଦେଖି ନ ପାରେ । ୧୬ ।

ଭଗବାନ୍ ସ୍ୱାଧୀନ ଏବଂ ସର୍ବାଧିପତି, ସର୍ବଶ୍ରେଷ୍ଠ ଏବଂ ସର୍ବ ମାହାତ୍ମ୍ୟ ପୂର୍ଣ୍ଣ, ସେ ମାୟାକୁ ବଶୀଭୂତ କରି ରଖିଅଛନ୍ତି, ତାହାଙ୍କର ଦୂତମାନେ ମଧ୍ୟ ତାଙ୍କର ସଦୃଶ ଗୁଣ ଓ ସ୍ୱଭାବ ବିଶିଷ୍ଟ ହୋଇ ସୌମ୍ୟ ମୂର୍ତ୍ତିରେ ଜଗତରେ ବିଚରଣ କରୁଅଛନ୍ତି । ୧୭ ।

ଭଗବାନଙ୍କର ଭୃତ୍ୟଗଣ ଦେବତାମାନଙ୍କର ମଧ୍ୟ ପୂଜ୍ୟ, ଭକ୍ତିହୀନ ବ୍ୟକ୍ତିମାନେ ସେମାନଙ୍କର ମୂର୍ତ୍ତି ଦେଖି ପାରନ୍ତି ନାହିଁ, ସେମାନଙ୍କର କାର୍ଯ୍ୟକଳାପ ଅତ୍ୟନ୍ତ ବିଚିତ୍ର, ସେମାନେ ବିଷ୍ଣୁଭକ୍ତମନୁଷ୍ୟମାନଙ୍କୁ ଶତ୍ରୁଠାରୁ, ମୋଠାରୁ ଓ ସର୍ବସଙ୍କଟରୁ ରକ୍ଷା କରିଥାଆନ୍ତି । ୧୮ ।

ସ୍ୱୟଂ ଭଗବାନ୍ ଯେଉଁ ଧର୍ମ ବିଧାନ କରିଅଛନ୍ତି ତାହା ମହର୍ଷିଗଣ, ଦେବଗଣ, ପ୍ରଧାନ ସିଦ୍ଧ ପୁରୁଷଗଣ, ଅସୁରଗଣ, ମନୁଷ୍ୟ ବିଦ୍ୟାଧର ଚାରଣ କେହି ଅବଗତ ନୁହନ୍ତି । ୧୯ ।

ବ୍ରହ୍ମା, ନାରଦ, ଶଙ୍କର, ସନତ୍‌କୁମାର, କପିଳ, ମନୁ, ପ୍ରହ୍ଲାଦ, ଜନକ, ଭୀଷ୍ମ, ବଳି, ଶୁକଦେବ

---

କେବା ଜାଣିବ ତା ମହିମା
ପ୍ରଭୁର ନାମ ଗୁଣ ସୀମା
ଇନ୍ଦ୍ରି ହୃଦୟ ବାକ୍ୟ ମନେ
ଯାହାକୁ ନ ଜାଣନ୍ତି ଜନେ
ସର୍ବ ଶରୀରେ ଆତ୍ମାରୂପ
ଯେ ଇନ୍ଦ୍ରିୟଙ୍କର ଅଧିପ । ୧୬ ।
ସେ ପ୍ରଭୁ ଆତ୍ମାତନ୍ତ୍ରେ ଥାଇ
ସଂସାର ଚେଷ୍ଟା ସେ କରାଇ
ତାହାର ଦୂତଗଣେ କରି
ତାହାର ରୂପଗୁଣ ଧରି

ସଂସାରେ ଭର୍ମନ୍ତେ ବିହରେ ।
ଦ୍ୱେଷେକ ଅଶେଷ ପ୍ରାଣୀଙ୍କାରେ । ୧୭
ଦେବେ ପୂଜିତ ତେଜଯୁକ୍ତ
ଅତି ଅଦ୍ଭୁତ ବିଷ୍ଣୁ ଦୂତ
ଭକ୍ତିବନ୍ତ ପ୍ରାଣିମାନଙ୍କୁ
ଶତ୍ରୁ ସକାଶରୁ ତାହାଙ୍କୁ
ଆମ୍ଭ ଭୟରୁ ସେ ରଖନ୍ତି
ସର୍ବବି ସ୍ଥାନେ ବିରାଜନ୍ତି । ୧୮ ।

ବିଷ୍ଣୁ ବିଷୟେ ଯେଉଁ ଧର୍ମ
ଅଜ୍ଞାତ ଦେବ ଋଷିଗଣ
ମନୁଷ୍ୟ ବିଦ୍ୟାଧରମାନ
ସିଦ୍ଧ ଅସୁର ଯେ ଚାରଣ
ଏ ସର୍ବେ ଜାଣିବେ କେମନ୍ତ
ଯାହାର ମହିମା ଅନନ୍ତ । ୧୯ ।
ସ୍ୱୟମ୍ଭୁ ନାରଦ କୁମାର
ଶିବ କପିଳ ମନୁବର

ଦ୍ୱାଦଶୈତେ ବିଜାନୀମୋ ଧର୍ମଂ ଭାଗବତଂ ଭଟାଃ ।
ଗୁହ୍ୟଂ ବିଶୁଦ୍ଧଂ ଦୁର୍ବୋଧଂ ଯଂ ଜ୍ଞାତ୍ୱାମୃତମଶ୍ନୁତେ । ୨୧ ।
ଏତାବାନେବ ଲୋକେଽସ୍ମିନ୍ ପୁଂସାଂ ଧର୍ମଃ ପରଃ ସ୍ମୃତଃ ।
ଭକ୍ତିଯୋଗୋ ଭଗବତି ତନ୍ନାମଗ୍ରହଣାଦିଭିଃ । ୨୨ ।
ନାମୋଚ୍ଚାରଣମାହାତ୍ମ୍ୟଂ ହରେଃ ପଶ୍ୟତ ପୁତ୍ରକାଃ ।
ଅଜାମିଳୋଽପି ଯେନୈବ ମୃତ୍ୟୁପାଶାଦମୁଚ୍ୟତେ । ୨୩ ।
ଏତାବତାଲମଘନିର୍ହରଣାୟ ପୁଂସାଂ ସଂକୀର୍ତ୍ତନଂ ଭଗବତୋ ଗୁଣକର୍ମନାମ୍ନାମ୍ ।
ବିକ୍ରୁଶ୍ୟ ପୁତ୍ରମଘବାନ୍ ଯଦଜାମିଳୋଽପି ନାରାୟଣେତି ମ୍ରିୟମାଣ ଇୟାୟ ମୁକ୍ତିମ୍ ।୨୪।
ପ୍ରାୟେଣ ବେଦ ତଦିଦଂ ନ ମହାଜନୋଽୟଂ ଦେବ୍ୟା ବିମୋହିତମତିର୍ବତ ମାୟୟାଲମ୍
ତ୍ରୟ୍ୟାଂ ଜଡ଼ୀକୃତମତିର୍ମଧୁ ପୁଷ୍ପିତାୟାଂ ବୈତାନିକେ ମହତି କର୍ମଣି ଯୁଜ୍ୟମାନଃ ।୨୫। ।

---

ଏବଂ ମୁଁ ଏହି ବାରଜଣ ଭାଗବତ ଧର୍ମ ବିଶେଷ ଭାବରେ ଅବଗତ ଅଛୁ, ଏହି ଧର୍ମ ଅତିପବିତ୍ର, ଏବଂ ଦୁର୍ଜ୍ଞେୟ ଓ ଗୋପନୀୟ ଏହା ଜାଣିଲେ ମୁକ୍ତି ଲାଭ ହୁଏ । ୨୦,୨୧ ।

ନାମ ସଂକୀର୍ତ୍ତନାଦି ଦ୍ୱାରା ଯେଉଁ ଭଗବଦ୍ ଭକ୍ତି ଜନ୍ମେ ତାହା ଜୀବର ଶ୍ରେଷ୍ଠ ଧର୍ମ, ବତ୍ସଗଣ ! ଶ୍ରୀହରିଙ୍କର ନାମ ମହାତ୍ମ୍ୟ ଦେଖ ଯେଉଁ ନାମ ମହାତ୍ମ୍ୟ ହେତୁ ମହାପାପୀ ଅଜାମିଳ ମୃତ୍ୟୁ ପାଶରୁ ମୁକ୍ତ ହେଲା । ୨୨,୨୩ ।

ଭଗବାନ୍ ଶ୍ରୀହରିଙ୍କ ଗୁଣ, କର୍ମ ଏବଂ ନାମ ସମ୍ୟକରୂପେ କୀର୍ତ୍ତନ କଲେ ଲୋକର ଯେ କେବଳ ପାପ କ୍ଷୟ ହୁଏ ଏହା କହିବା ଠିକ୍ ନୁହେଁ । କାରଣ ମହାପାପୀ ଅଜାମିଳ ମୁମୂର୍ଷୁ ଅବସ୍ଥାରେ ପୁତ୍ରକୁ ସମ୍ବୋଧନ କରି ମୁକ୍ତି ଲାଭ କଲା । ୨୪ ।

ଜୈମିନି ପ୍ରଭୃତ ଶାସ୍ତ୍ରକାର ମହାପୁରୁଷମାନଙ୍କର ବୁଦ୍ଧି ଭଗବାନଙ୍କର ମାୟା ଶକ୍ତିରେ ମୋହିତ ହୋଇଥିଲା, ମନୋହର ଅର୍ଥବାଦ ପ୍ରଭୃତି ଦ୍ୱାରା ପରିପୁଷ୍ଟ ବେଦ ବିଷୟରେ ନିବିଷ୍ଟ ହୋଇ ସେମାନେ ସୁବିସ୍ତୃତ ଯାଗ ଯଜ୍ଞାଦି କର୍ମ ପଥରେ ଅନୁରକ୍ତ ହୋଇଥିଲେ । ସୁତରାଂ ଭଗବାନଙ୍କର ନାମ କୀର୍ତ୍ତନାଦିରୁ ଭକ୍ତି ତତ୍ତ୍ୱରେ ସେମାନେ ସମ୍ୟକ୍ ଅଭିଜ୍ଞତା ଲାଭ କରି ନ ଥିଲେ । ୨୫ ।

---

ପ୍ରହ୍ଲାଦ ଜନକ ସ୍ୱୟମ୍ଭୂ
ବଳି ଶୁକ ମୁନି ଦ୍ୱାଦଶ
ହେ ଦୂତେ ଶୁଣ ମୋର ବାଣୀ
ବିଷ୍ଣୁ ଭକତ ଏତେ ଜାଣି
ଗୁପତ ବିଶୁଦ୍ଧ ଦୁର୍ବୋଧ
ଯେ ଧର୍ମ ଜାଣି ମୃତ୍ୟୁଚ୍ଛେଦ ୨୦,୨୧
କୃଷ୍ଣ ଚରଣେ ଯାର ମନ
ସଂସାରେ ଶ୍ରେଷ୍ଠ ସେହି ଜନ
ନାମ ଉଚ୍ଚାରନ୍ତି ଯେ ବାରେ
ଭକତ ବୋଲି ବୋଲୁ ତାରେ

ଭାଗବତର ଧର୍ମ ଜାଣି
କୋଟିକେ ଗୋଟି ପରମାଣି ।୨୨।
ହେ ଦୂତେ ଈଶ୍ୱରର ନାମ
ମହିମା ଦେଖ ଉଚ୍ଚାରଣ
ଅଜାମିଳହିଁ ଯେ ନାମରୁ
ମୁକ୍ତ ହେଲା ମୃତ୍ୟୁ ପାଶରୁ ।୨୩।
କୃଷ୍ଣର ନାମ ସଂକୀର୍ତ୍ତନ
ପ୍ରାଣିଙ୍କ ପାପ ବିମୋଚନ

ଯେ କ୍ଷଣେ ନିକଟେ ମରଣ
ପୁତ୍ରର ନାମ ନାରାୟଣ
ଉଚ୍ଚାର କଲା ଅଜାମିଳ
ମୁକ୍ତି ଲଭିଲା ତତକାଳ ।୨୪।
ନାମ ମହିମା ନ ଜାଣନ୍ତି
ବିଷ୍ଣୁ ମାୟାରେ ମୋହ ହୁଅନ୍ତି
ଯଜ୍ଞାଦି କରି ମୂଢମତି
ନାନାପ୍ରକାରେ ପ୍ରବର୍ତ୍ତନ୍ତି ।୨୫

ଏବଂ ବିମୃଶ୍ୟ ସୁଧିୟୋ ଭଗବତ୍ୟନନ୍ତେ ସର୍ବାତ୍ମନା ବିଦଧତେ ଖଲୁ ଭାବଯୋଗମ୍ ।
ତେ ମେ ନ ଦଣ୍ଡମର୍ହନ୍ତ୍ୟଥ ଯଦ୍ୟମୀଷାଂ ସ୍ୟାତ୍ପାତକଂ ତଦପି ହନ୍ତ୍ୟୁରୁଗାୟବାଦଃ । ୨୬ ।
ତେ ଦେବସିଦ୍ଧ ପରିଗୀତପବିତ୍ରଗାଥା ଯେ ସାଧବଃ ସମଦୃଶୋ ଭଗବତ୍ପ୍ରପନ୍ନାଃ ।
ତାନ୍ନୋପସୀଦତ ହରେର୍ଗଦୟାଭିଗୁପ୍ତାନ୍ନୈଷାଂ ବୟଂ ନଚବୟଃ ପ୍ରଭବାମ ଦଣ୍ଡେ ।୨୭।
ତାନାନୟଧ୍ୱମସତୋ ବିମୁଖାନ୍ ମୁକୁନ୍ଦପାଦାରବିନ୍ଦମକରନ୍ଦରସାଦଜସ୍ରମ୍ ।
ନିଷ୍କିଞ୍ଚନୈଃ ପରମହଂସକୁଲୈରସଙ୍ଗୈର୍ଜୁଷ୍ଟାଦ୍ଗୃହେ ନିରୟବର୍ତ୍ମନି ବଦ୍ଧତୃଷ୍ଣାନ୍ ।୨୮।
ଜିହ୍ୱା ନ ବକ୍ତି ଭଗବଦ୍ଗୁଣନାମଧେୟଂ ଚେତଶ୍ଚ ନ ସ୍ମରତି ତଚ୍ଚରଣାରବିନ୍ଦମ୍ ।
କୃଷ୍ଣାୟ ନୋ ନମତି ଯଚ୍ଛିର ଏକଦାପି ତାନାନୟଧ୍ୱମସତୋଽକୃତ ବିଷ୍ଣୁ କୃତ୍ୟାନ୍ ।୨୯।

---

ସୁବୁଦ୍ଧିମାନ୍ ବ୍ୟକ୍ତିମାନେ ଏସମସ୍ତ ବିବେଚନା କରି ଭଗବାନ୍ ଶ୍ରୀହରିଙ୍କପ୍ରତି ସର୍ବାନ୍ତଃକରଣରେ ଭକ୍ତି ପ୍ରଦର୍ଶନ କରି ଥାଆନ୍ତି, ସେମାନେ ମୋର ଦଣ୍ଡଯୋଗ୍ୟ ନୁହନ୍ତି । ସେମାନେ କୌଣସି ପ୍ରକାର ପାପ କଲେ ଭଗବାନଙ୍କର ନାମ କୀର୍ତ୍ତନାଦ ଦ୍ୱାରା ତାହା ବିନଷ୍ଟ ହୁଏ । ୨୬ ।

ଯେଉଁ ସାଧୁପୁରୁଷମାନେ ସର୍ବତ୍ର ସମଦର୍ଶୀ ହୋଇ ଭଗବାନଙ୍କର ଶରଣାପନ୍ନ ହୁଅନ୍ତି ଦେବତା ଓ ସିଦ୍ଧଗଣ ମଧ୍ୟ ସେମାନଙ୍କର ପୁଣ୍ୟଗାଥା କୀର୍ତ୍ତନ କରନ୍ତି । ତୁମ୍ଭେମାନେ ସେମାନଙ୍କ ନିକଟକୁ ଯିବନାହିଁ । ଶ୍ରୀହରିଙ୍କର ଗଦା ସେମାନଙ୍କୁ ସର୍ବଦା ରକ୍ଷା କରିଥାଏ, ମୋ କଥା ତେଣିକି ଥାଉ ସ୍ୱୟଂ ମହାକାଳ ମଧ୍ୟ ସେମାନଙ୍କୁ ଦଣ୍ଡଦେବାକୁ ଅକ୍ଷମ । ୨୭ ।

ଯେଉଁମାନେ ଭୋଗ ସେବା ଶୂନ୍ୟ ଏବଂ ଭଗବତ୍ ସେବା ପରାୟଣ ଏବଂ ଛୁଟ ପରମହଂସ ସାଧୁଗଣ ଯାହା ସର୍ବଦା ଆସ୍ୱାଦନ କରିଥାନ୍ତି ସେହି ଭଗବାନଙ୍କର ପାଦପଦ୍ମ ସେବା ରୂପ ମଧୁ ଯେଉଁମାନେ ପାନ କରନ୍ତି ସେମାନଙ୍କୁ ତୁମ୍ଭେମାନେ ଆଣିବ ନାହିଁ; ତହିଁପ୍ରତି ଯେଉଁମାନେ ପରାଙ୍ମୁଖ ଏବଂ ନରକମାର୍ଗ ସ୍ୱରୂପ ଭୋଗାଦିରେ ଯେଉଁମାନେ ଏକାନ୍ତ ଆସକ୍ତ ସେହି ଅସାଧୁ ବ୍ୟକ୍ତିମାନଙ୍କୁ ତୁମ୍ଭେମାନେ ଆଣିବ ।୨୮।

ଯେଉଁମାନଙ୍କର ଜିହ୍ୱା କଦାପି ଭଗବାନଙ୍କର ନାମ ବା ଗୁଣ ଉଚାରଣ କରି ନାହିଁ ଯେଉଁମାନଙ୍କର ମନ କେବେ ହେଲେ ତାହାଙ୍କର ପାଦପଦ୍ମ ସେବା କରିନାହିଁ ଯେଉଁମାନଙ୍କର ମସ୍ତକ ତାହାଙ୍କୁ ପ୍ରଣାମ କରିବାକୁ ନତ ହୋଇ ନାହିଁ, ଯେଉଁମାନେ ଭଗବତ୍ ସେବା କାର୍ଯ୍ୟରୁ ଦୂରକାଳ ପାଇଁ ପରାଙ୍ମୁଖ ସେହି ଅସତ୍‌ବ୍ୟକ୍ତିମାନଙ୍କୁ ତୁମ୍ଭେମାନେ ଆଣିବ । ୨୯ ।

---

ଏମନ୍ତେ ଯେ ପ୍ରାଣୀ ପଣ୍ଡିତ
କୃଷ୍ଣ ପ୍ରେମରେ ଅବିରତ
ତାହାଙ୍କୁ ମୋର ଦଣ୍ଡ ନାହିଁ
ପାତକ ଯେବେ ତାର ଥାଇ
ସକଳ ପାପ ହୋଏ ଭଙ୍ଗ
ଯେଣୁ ଈଶ୍ୱର ପରସଙ୍ଗ । ୨୬ ।
ସମଦରଶୀ ସାଧୁ ଜନ
ଯେମାନେ ହରି ପରାୟଣ
ଦେବତା ସିଦ୍ଧ ତାହାଙ୍କର
ଯଶ କରନ୍ତି ଯେବିସ୍ତାର
ପରମ ଈଶ୍ୱର ଗଦାରେ
ରକ୍ଷିତ ହୁଅନ୍ତି ସେ ନରେ
ତାହାଙ୍କ ଦଣ୍ଡରେ ମୋହର
ନିଶ୍ଚୟ ନାହିଁ ଅଧିକାର ।୨୭।
ମୁକୁନ୍ଦ ପାଦ ଅରବିନ୍ଦ
ନିତ୍ୟେ ସ୍ରବଇ ମକରନ୍ଦ
ତହିଁ ବିମୁଖ ଯେଉଁ ଜନ
ତାହାଙ୍କୁ କରିଣ ବନ୍ଧନ
ତାହାଙ୍କୁ ଆଣି ମୋ ଅଗ୍ରତେ
ଯାତନା ଦେବ ଅବିରତେ
ଛନ୍ତି ଯେ ପରମହଂସ
ତାହାଙ୍କୁ ନ କର ଇଙ୍ଗିତ
ଗୃହ ବନ୍ଧନେ ମନ ଦେଇ
ଛନ୍ତି ଅସାଧୁ ପଥ ଥାଇ
ଜିହ୍ୱାରେ ନ ବୋଲଇ ନାମ
ନ ଭଜନ୍ତି ଅଚ୍ୟୁତ ଚରଣ
କୃଷ୍ଣର ପାଦେ ଶିରଦେଇ
କେବେହେଁ ସ୍ତୁତି ନ କରଇ
ବିଷ୍ଣୁର କର୍ମରେ ବର୍ଜିତ
ନରକେ ଭୃତଙ୍କେ ଆଣିତ
ଏମନ୍ତ ଭାବେ ଯେତେ ପ୍ରାଣୀ
ଯାତନା ଦିଅ ତାଙ୍କୁ ଆଣି ।୨୮,୨୯

ତତ୍କ୍ଷମ୍ୟତାଂ ସ ଭଗବାନ୍ ପୁରୁଷଃ ପୁରାଣୋ ନାରାୟଣଃ ସ୍ୱପୁରୁଷୈର୍ଯଦସତ୍ କୃତଂ ନଃ
ସ୍ୱାନାମହୋ ନ ବିଦୁଷାଂ ରଚିତାଞ୍ଜଳୀନାଂ କ୍ଷାନ୍ତିର୍ଗରୀୟସି ନମଃ ପୁରୁଷାୟ ଭୂମ୍ନେ ।୩୦।

ତସ୍ମାତ୍ସଂକୀର୍ତ୍ତନଂ ବିଷ୍ଣୋର୍ଜଗନ୍ମଙ୍ଗଳମଂହସାମ୍ ।
ମହତାମପି କୌରବ୍ୟ ବିଦ୍ଧ୍ୟୈକାନ୍ତିକନିଷ୍କୃତମ୍ ।୩୧।
ଶୃଣ୍ୱତାଂ ଗୃଣତାଂ ବୀର୍ଯ୍ୟାଣ୍ୟୁଦ୍ଦାମାନି ହରେର୍ମୁହୁଃ ।
ଯଥା ସୁଜାତୟା ଭକ୍ତ୍ୟା ଶୁଦ୍ଧ୍ୟେନ୍ନାତ୍ମା ବ୍ରତାଦିଭିଃ ।୩୨।

କୃଷ୍ଣାଙ୍ଘ୍ରିପଦ୍ମମଧୁଲିଡ଼୍ ନ ପୁନର୍ବିସୃଷ୍ଟମାୟାଗୁଣେଷୁ ରମତେ ବୃଜିନାବହେଷୁ ।
ଅନ୍ୟସ୍ତୁ କାମହତ ଆତ୍ମରଜଃ ପ୍ରମାର୍ଷ୍ଟୁମୀହେତ କର୍ମ୍ମ ଯତ ଏଷ ରଜଃ ପୁନଃ ସ୍ୟାତ୍ ।୩୩।

---

ମୋର ଦୂତମାନେ ଯେ ଅନ୍ୟାୟ କାର୍ଯ୍ୟ କରିଅଛନ୍ତି ସେଥିପାଇଁ ସେହି ଆଦ୍ୟପୁରୁଷ ଭଗବାନ୍ ସେମାନଙ୍କୁ କ୍ଷମା କରନ୍ତୁ । ତାଙ୍କ ତୁଲ୍ୟ ଅପାର ମହାତ୍ମ୍ୟଶାଳୀ ପରମପୁରୁଷଙ୍କ ପକ୍ଷରେ ମୋପରି ଅଜ୍ଞ ପ୍ରଣତ ବ୍ୟକ୍ତି ପ୍ରତି କ୍ଷମା ବିଧାନ ଯୁକ୍ତି ଯୁକ୍ତ, ମୁଁ ସେହି ବିରାଟ ପୁରୁଷଙ୍କୁ ନମସ୍କାର କରେ ।୩୦।

ହେ କୁରୁବଂଶଜ ! ଭଗବାନଙ୍କର ନାମ ଗୁଣ କୀର୍ତ୍ତନାଦି ଜଗତର ମଙ୍ଗଳ ସ୍ୱରୂପ । ତଦ୍ଦ୍ୱାରା ଅତି ଉତ୍କଟ ପାପମାନ ସମୂଳେ ବିନଷ୍ଟ ହୁଏ ।୩୧।

ଭଗବାନଙ୍କର ଅବ୍ୟାହତ, ବଳବୀର୍ଯ୍ୟ ପ୍ରସଙ୍ଗ ଶୁଣିଲେ ବା କୀର୍ତ୍ତନ କଲେ ଉତ୍କୃଷ୍ଟ ଭକ୍ତି ଜନ୍ମେ, ତଦ୍ଦ୍ୱାରା ଜୀବ ଯେପରି ସିଦ୍ଧିଲାଭ କରେ ପ୍ରାୟଶ୍ଚିତ୍ତାଦି ଦ୍ୱାରା ସେହିପରି କରେ ନାହିଁ ।୩୨।

ଯେଉଁ ବ୍ୟକ୍ତି ଭଗବାନଙ୍କର ପାଦପଦ୍ମର ରସ ଆସ୍ୱାଦନ କରେ, ମାୟା ଜନିତ ଦୁର୍ଗତିପ୍ରଦ ବିଷୟ ସମୂହ ପ୍ରତି ତାହାର ଆଉ ଆସକ୍ତି ଜନ୍ମେ ନାହିଁ ।- କିନ୍ତୁ ଯେଉଁ ବ୍ୟକ୍ତି ସେହି ରସରୁ ବଞ୍ଚିତ ସେ ନିଜର ପାପକ୍ଷୟ ପାଇଁ ପ୍ରାୟଶ୍ଚିତ୍ତାଦି ଯେଉଁ କର୍ମମାନ ଅନୁଷ୍ଠାନ କରେ, ତହିଁରେ ପୁଣି ପାପ ଜନ୍ମେ ।୩୩।

---

ମୋର ଦୂତର ଅପରାଧ
କ୍ଷମା କରିବା ପଦ୍ମପାଦ
ଆଦ୍ୟର ପୁରୁଷ ପୁରାଣ
କ୍ଷମା କରନ୍ତୁ ନାରାୟଣ
ସର୍ତ୍ତିତେ ଯାର ପଦ୍ମପାଦ
ସେବନ୍ତି ଭକ୍ତେ ଅପ୍ରମାଦେ
ତାହାଙ୍କୁ ମୋର ନମସ୍କାର
ଅପ୍ରାଧ କ୍ଷମା କର ମୋର ।୩୦।

ଶ୍ରୀ ଶୁକ ଉବାଚ—

ଏଣୁଟି ହରି ସଂକୀର୍ତ୍ତନ
ଜଗତ ମଙ୍ଗଳ କାରଣ
ମହତ ଲୋକମାନଙ୍କର
ଏକାନ୍ତ ଭକ୍ତି ନୃପବର
ଈଶ୍ୱର ଉଦ୍ଦାମ ଚରିତ
ଶୁଣି ଗାଆନ୍ତି ଅବିରତ

ଶ୍ରୀକୃଷ୍ଣପାଦପଙ୍କଜରେ
ଯେ ଜନ ମଧୁପାନକରେ
ସେ ପୁଣି ମାୟାବନ୍ଧ ମୋହେ
ନପଡ଼େ ପାତକ ସମୂହେ
ଅନ୍ୟ ଯେ ଲୋକ ମୋହେ ପଡ଼ି
ରଜ ତମରେ ଥାନ୍ତି ଜଡ଼ି
ତାହାର ପୁନଃ ପୁନଃ ହୋଇ
ରଜ ତାମସଭିଯୁଜଇ ।୩୧। ।୩୩।

ଇତ୍ଥଂ ସ୍ୱଭର୍ତ୍ତୃଗଦିତଂ ଭଗବନ୍ମହିତ୍ୱଂ ସଂସ୍ମୃତ୍ୟ ବିସ୍ମିତଧିୟୋ ଯମକିଙ୍କରାସ୍ତେ ।
ନୈବାଚ୍ୟୁତାଶ୍ରୟଜନଂ ପ୍ରତିଶଙ୍କମାନା ଦ୍ରଷ୍ଟୁଞ୍ଚ ବିଭ୍ୟତି ତତଃ ପ୍ରଭୃତି ସ୍ମ ରାଜନ୍ ।୩୪।
ଇତିହାସମିମଂ ଗୁହ୍ୟଂ ଭଗବାନ୍ କୁମ୍ଭସମ୍ଭବଃ ।
କଥୟାମାସ ମଳୟ ଆସୀନୋ ହରିମର୍ଚ୍ଚୟନ୍ ।୩୫।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଅଜାମିଳୋପାଖ୍ୟାନଂ ନାମ ତୃତୀୟୋଽଧ୍ୟାୟଃ ।୩।

---

ହେ ରାଜନ୍ ! ଯମଦୂତମାନେ ସେମାନଙ୍କ ପ୍ରଭୁ କଥିତ ଭଗବାନଙ୍କର ମାହାତ୍ମ୍ୟ ଅବଗତ ହୋଇ ତଦନନ୍ତର ମାତ୍ର ବିସ୍ମିତ ହୋଇ ନ ଥିଲେ ଅର୍ଥାତ୍ ତାହା ଯଥାର୍ଥ ବୋଲି ସମ୍ପୂର୍ଣ୍ଣ ବିଶ୍ୱାସ କରି ଥିଲେ । ସେହି ଦିନୁ ସେମାନେ ଶଙ୍କିତ ଭାବରେ ଭକ୍ତଜନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରିବାକୁ ଭୀତ ହେଉଥିଲେ ।୩୪

ତଦନ ମହର୍ଷି ଅଗସ୍ତ୍ୟ ମଳୟ ପର୍ବତରେ ବସି ଭଗବାନଙ୍କୁ ଅର୍ଚ୍ଚନା କରୁଥିଲେ । ସେତେବେଳେ ସେ ଏହି ଅଜାମିଳର ଗୁହ୍ୟ ଚରିତ୍ର ପ୍ରକାଶ କରିଥିଲେ ।୩୫।

---

ଏମନ୍ତେ ଯମ ବାକ୍ୟ ଶୁଣି
ବିସ୍ମୟ ମନେ ପରମାଣି
ଯମ କିଙ୍କର ଭୟ ଚିତ୍ତ
ବୋଲନ୍ତି କି ଏ ବିପରୀତ
ଅଚ୍ୟୁତ ଆଶ୍ରେ ଯେତେ ଜନେ
ତାହାଙ୍କୁ ଭୟ କଲେ ମନେ

ସେ ଦିନଠାରୁ ହେ ରାଜନ
ଦେଖିଲେ ଭୟେ ହୋନ୍ତି ଛନ୍ନ ।୩୪
ମଳୟଗିରି ତଟେ ବସି
ହରି ଚରିତ ପରଶଂସି
କହିଲେ କୁମ୍ଭ ଜନ୍ମମୁନି
ଗୁପତ ଇତିହାସ ବାଣୀ ।୩୫।

ଦାସ ଜଗନ୍ନାଥ ବୋଲଇ
କୃଷ୍ଣ ମହିମା ଯମ କହି





**ବିଶଦାର୍ଥ :—**

ଯମଦୂତମାନେ ଫେରିଆସି ଯମରାଜଙ୍କ ନିକଟରେ ବିଷ୍ଣୁ ଦୂତମାନଙ୍କ କର୍ତ୍ତୃକ ଅଜାମିଳର ମୁକ୍ତି ବିଧାନ ପ୍ରସଙ୍ଗ ଉଲ୍ଲେଖ କରିଥିଲେ ଏବଂ ବିଷ୍ଣୁଦୂତମାନଙ୍କର ପରିଚୟ ପାଇ ନ ଥିବାରୁ ସେମାନଙ୍କ ପରିଚୟ ଜାଣିବାକୁ ଅଭିଳାଷୀ ହୋଇଥିଲେ । ସେମାନେ ଭାବିଥିଲେ ଯମରାଜହିଁ ଚରାଚର ଈଶ୍ୱର ଏକମାତ୍ର ଶାସନକର୍ତ୍ତା, ମାତ୍ର ଯମରାଜ ସେମାନଙ୍କର ଏହି ଭ୍ରାନ୍ତି ଦୂର କରି ବୁଝାଇ ଦେଇଥିଲେ ଯେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଏମାନଙ୍କ ଉପରେ ଜଣେ ଶ୍ରେଷ୍ଠ ପୁରୁଷ ରହିଅଛନ୍ତି, ଯାହାଙ୍କ ଇଚ୍ଛାରେ ସୃଷ୍ଟି, ସ୍ଥିତି, ଲୟ ହେଉଅଛି, ତାହାଙ୍କର ବିଧାନ ଅନୁସାରେ ସମସ୍ତ ଜଗତ ପରିଚାଳିତ, ତାହାଙ୍କର ମାହାତ୍ମ୍ୟ ଯମ ପ୍ରଭୃତି ବାରଜଣଙ୍କୁ ମାତ୍ର ବିଦିତ, ସେହି ନାମ ଓ ଗୁଣ ଭକ୍ତି ସହକାରେ କୀର୍ତ୍ତନ ଓ ଅନୁଧ୍ୟାନ କଲେ ଜୀବ ମୁକ୍ତି ଲାଭ କରେ, ଏଠାରେ ଜ୍ଞାନ କର୍ମ ଉଭୟ ଅପେକ୍ଷା ଭଗବଦ୍‌ଭକ୍ତିର ଶ୍ରେଷ୍ଠତା ଯମରାଜା ବ୍ୟାଖ୍ୟାନ କରିଅଛନ୍ତି ଯମରାଜାଙ୍କର ଦୂତମାନେ ପୂର୍ବେ ଭଗବଦ୍‌ଭକ୍ତଙ୍କୁ ଅନବଧାନ ଭାବରେ ଯମଦଣ୍ଡ ପାଇଁ ଆଣୁଥିଲେ ମାତ୍ର ଯମରାଜ ସେମାନଙ୍କର ଭାବି କର୍ମପନ୍ଥା ଦର୍ଶାଇ ସେମାନଙ୍କୁ ସାବଧାନ କରାଇ ଦେଇଥିଲେ, ଯେଉଁ ବ୍ୟକ୍ତି ଶ୍ରୀହରିଙ୍କର ନାମ ଉଚ୍ଚାରଣ ନ କରେ, ଯାହାର ମସ୍ତକ ତାହାଙ୍କର ପାଦପଦ୍ମ ଉଦ୍ଦେଶ୍ୟରେ ପ୍ରଣତ ନ ହୁଏ ଏବଂ ଯାହାର ହୃଦୟ ତାହାଙ୍କର ପାଦପଦ୍ମ ଚିନ୍ତା ନ କରେ ସେହି ବାସ୍ତବରେ ପାପୀ, ସେହି ଶ୍ରେଣୀର ବ୍ୟକ୍ତିଙ୍କ ଛଡ଼ା ଅନ୍ୟ ଭକ୍ତଙ୍କୁ ଯମଦଣ୍ଡ ଲାଗି ଆଣିବା ବିହିତ ନୁହେଁ ବୋଲି ଯମରାଜ ନିଜର ଦୂତମାନଙ୍କୁ ବୁଝାଇ ଦେଇଥିଲେ ଏବଂ ସେମାନେ ଅଜ୍ଞାନତା ହେତୁ ଯେ ଅଜାମିଳକୁ ଆଣିବାର ଉଦ୍ୟମ କରିଥିଲେ, ସେଥିପାଇଁ ଯମ ନିଜର ଦୋଷ ବୋଲି ମନେ କରି ସେହି ଶ୍ରୀହରିଙ୍କର ପାଦପଦ୍ମରେ କ୍ଷମା ଭିକ୍ଷା କରିଥିଲେ ।

---

## ଚ ତୁ ର୍ଥ ଅ ଧ୍ୟା ୟ ।

ଚତୁର୍ଥେ ତୁ ପ୍ରଜାସୃଷ୍ଟ୍ୟୈ ଦକ୍ଷେଣାରାଧନଂ ହରେଃ ।
ତପସା ହଂସଗୁହ୍ୟାଖ୍ୟସ୍ତୋତ୍ରେଣ ଚ ନିରୂପ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀରାଜୋବାଚ ।

ଦେବାସୁରନୃଣାଂ ସର୍ଗୋ ନାଗାନାଂ ମୃଗପକ୍ଷିଣାମ୍ ।
ସାମାସିକସ୍ତ୍ୱୟା ପ୍ରୋକ୍ତୋ ଯସ୍ତୁ ସ୍ୱାୟମ୍ଭୁବେଽନ୍ତରେ । ୧ ।

---

### ପ୍ରଜାରକ୍ଷା ନିମିତ୍ତ ଦକ୍ଷଙ୍କର ଶ୍ରୀହରିଙ୍କର ଆରାଧନା ଓ ଭଗବାନଙ୍କର ଆଦେଶ ପ୍ରାପ୍ତି ।

ଚତୁର୍ଥ ଅଧ୍ୟାୟରେ ପ୍ରଜାପତି ଦକ୍ଷ ପ୍ରଜାସୃଷ୍ଟି ଇଚ୍ଛାରେ ତପସ୍ୟା ଦ୍ୱାରା ଶ୍ରୀହରିଙ୍କର ଆରାଧନା କରିବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀରାଜା ପରୀକ୍ଷିତ କହିଲେ :—

ହେ ଭଗବନ୍ ଶୁକଦେବ ! ସ୍ୱାୟମ୍ଭୁବ ମନ୍ୱନ୍ତରରେ ଦେବତା, ଅସୁର, ମନୁଷ୍ୟ, ନାଗ, ପଶୁ, ପକ୍ଷୀ, ପ୍ରଭୃତିଙ୍କର ସୃଷ୍ଟି ବୃତ୍ତାନ୍ତ ଯାହା ଆପଣ ପୂର୍ବେ ( ତୃତୀୟସ୍କନ୍ଧରେ ) ସଂକ୍ଷେପରେ ବର୍ଣ୍ଣନା କରିଅଛନ୍ତି

---

ଚତୁର୍ଥେ ପ୍ରଜା ସୃଷ୍ଟି ପାଇଁ । ଦକ୍ଷ ହରିଙ୍କି ଆରାଧଇ ।

ଶ୍ରୀ ରାଜୋବାଚ—

| ଦେବ ଅସୁର ନର ନାଗ | ମୃଗ ପକ୍ଷିଙ୍କ ସୃଷ୍ଟି ଯେତେ
| ତୁମ୍ଭେ କହିଲ ମହା ଭାଗ | କହିଲ ମୋହର ଅଗ୍ରତେ

ତସ୍ୟୈବ ବ୍ୟାସମିଚ୍ଛାମି ଜ୍ଞାତୁଂ ତେ ଭଗବନ୍ ଯଥା ।
ଅନୁସର୍ଗଂ ଯୟା ଶକ୍ତ୍ୟା ସସର୍ଜ ଭଗବାନ୍ ପରଃ । ୨ ।

ଶ୍ରୀସୂତ ଉବାଚ ।

ଇତି ସଂପ୍ରଶ୍ନମାକର୍ଣ୍ଣ୍ୟ ରାଜର୍ଷେର୍ବାଦରାୟଣିଃ ।
ପ୍ରତିନନ୍ଦ୍ୟ ମହାଯୋଗୀ ଜଗାଦ ମୁନିସତ୍ତମଃ । ୩ ।

ଶ୍ରୀଶୁକ ଉବାଚ ।

ଯଦା ପ୍ରଚେତସଃ ପୁତ୍ରା ଦଶ ପ୍ରାଚୀନବର୍ହିଷଃ ।
ଅନ୍ତଃସମୁଦ୍ରାଦୁନ୍ମଗ୍ନା ଦଦୃଶୁର୍ଗାଂ ଦ୍ରୁମୈର୍ବୃତାମ୍ । ୪ ।
ଦ୍ରୁମେଭ୍ୟଃ କ୍ରୁଧ୍ୟମାନାସ୍ତେ ତପୋଦୀପିତମନ୍ୟବଃ ।
ମୁଖତୋ ବାୟୁମଗ୍ନିଞ୍ଚ ସସୃଜୁସ୍ତଦ୍ଦିଧକ୍ଷୟା । ୫ ।

---

ତାହା ବିସ୍ତୃତ ଭାବରେ କହନ୍ତୁ । ଅର୍ଥାତ୍ ଭଗବାନ୍ ବ୍ରହ୍ମା ପ୍ରତ୍ୟେକ ସୃଷ୍ଟିକ୍ରମରେ ଯେପରି କ୍ରମ ଓ ପ୍ରଣାଳୀ ଦ୍ୱାରା ସୃଷ୍ଟିକାର୍ଯ୍ୟ ସମ୍ପାଦନ କରିଥାଆନ୍ତି ସେ ବିଷୟ ଆପଣଙ୍କ ନିକଟରୁ ଶୁଣିବାକୁ ଇଚ୍ଛା ହେଉଅଛି ।୧,୨।

ଶ୍ରୀ ସୂତ କହିଲେ :—

ହେ ମହର୍ଷିଗଣ ! ମହାଯୋଗୀ ଶୁକଦେବ ରାଜା ପରୀକ୍ଷିତଙ୍କର ଏହି ପ୍ରଶ୍ନ ଶୁଣି ଆନନ୍ଦ ଭରରେ କହିବାକୁ ଲାଗିଲେ । ୩ ।

ଶ୍ରୀଶୁକଦେବ କହିଲେ :—

ପ୍ରାଚୀନ ବର୍ହିଙ୍କର ପ୍ରଚେତାନାମକ ଦଶପୁତ୍ର ସମୁଦ୍ର ମଧ୍ୟରୁ ଉତ୍ଥିତ ହୋଇ ଦେଖିଲେ ଯେ ପୃଥିବୀ ବୃକ୍ଷଲତାଦି ଦ୍ୱାରା ସମାଚ୍ଛନ୍ନ ହୋଇ ରହିଅଛି । ୪ ।

ତପୋବଳରେ ପ୍ରଚେତାମାନଙ୍କର କ୍ରୋଧାଗ୍ନି ଅତ୍ୟନ୍ତ ପ୍ରଜ୍ୱଳିତ ହୋଇଥିଲା, ବୃକ୍ଷମାନଙ୍କ ଉପରେ ସେମାନଙ୍କର କୋପଚକ୍ଷୁ ପତିତ ହେବାରୁ, ବୃକ୍ଷମାନଙ୍କୁ ଦଗ୍ଧ କରିବାର ଅଭିଳାଷରେ, ସେମାନେ ମୁଖରୁ ବାୟୁ ଓ ଅଗ୍ନି ସୃଷ୍ଟି କରିଥିଲେ । ୫ ।

---

ଯେତେ ସ୍ୱାୟମ୍ଭୁ ମନ୍ୱନ୍ତରେ
ସଂକ୍ଷେପେ କହିଲ ମୋହରେ
ସେ ମନ୍ୱନ୍ତରେ ଭଗବାନ
ଯେ ଅନୁସର୍ଗର ବିଧାନ
ଯେମନ୍ତ ଆତ୍ମଶକ୍ତି ଘେନି
ସର୍ଜିଲେ ପ୍ରଭୁ ଅନ୍ତର୍ଯ୍ୟାମୀ
ବିସ୍ତାରେ ଶୁଣିବାକୁ ମୋର
ଇଚ୍ଛା ବଳଇ ମୁନିବର । ୧,୨ ।

ଶ୍ରୀ ସୂତ ଉବାଚ—

ରାଜାର ପ୍ରଶ୍ନ ଶୁଣି ମନେ
ଆନନ୍ଦେ ହରଷ ବଦନେ
ହେ ମୁନିଗଣେ ଶୁଣ ତାହା
ନୃପେ କହିଲେ ଶୁକ ତାହା ।୩।

ଶ୍ରୀ ଶୁକ ଉବାଚ—

ଯେବେ ପ୍ରଚେତା ଭାଇ ଦଶ
ସମୁଦ୍ରୁ ଉଠି ଦଶ ଦଶ
ରହିଲେ ବହୁ ଦ୍ରୁମମାନ
ପୃଥିବୀ କଲେ ଆଚ୍ଛାଦନ ।୪।
ବୃକ୍ଷମାନଙ୍କୁ ଦେଖି ତେଜେ
ତପେ ପ୍ରଦୀପ୍ତ କୋପାନଳେ
ମୁଖରୁ ଅଗ୍ନି ବାୟୁ ଦୁଇ
ସର୍ଜିଲେ ବୃକ୍ଷ କ୍ଷୟ ପାଇଁ ।୫।

ତାଭ୍ୟାଂ ନିର୍ଦହ୍ୟମାନାଂସ୍ତାନୁପଲଭ୍ୟ କୁରୂଦ୍ୱହ ।
ରାଜୋବାଚ ମହାନ୍ ସୋମୋ ମନ୍ୟୁଂ ପ୍ରଶମୟନ୍ନିବ । ୬ ।
ମା ଦ୍ରୁମେଭ୍ୟୋ ମହାଭାଗା ଦୀନେଭ୍ୟୋ ଦ୍ରୋଗ୍ଧୁମର୍ହଥ ।
ବିବର୍ଦ୍ଧୟିଷବୋ ଯୂୟଂ ପ୍ରଜାନାଂ ପତୟଃ ସ୍ମୃତାଃ । ୭ ।
ଅହୋ ପ୍ରଜାପତିପତିର୍ଭଗବାନ୍ ହରିରବ୍ୟୟଃ ।
ବନସ୍ପତୀନୋଷଧୀଶ୍ଚ ସସର୍ଜ୍ଜୋର୍ଜ୍ଜମିଷଂ ବିଭୁମ୍ । ୮ ।
ଅନ୍ନଂ ଚରାଣାମଚରା ହ୍ୟପଦଃ ପାଦଚାରିଣାମ୍ ।
ଅହସ୍ତା ହସ୍ତଯୁକ୍ତାନାଂ ଦ୍ୱିପଦାଞ୍ଚ ଚତୁଷ୍ପଦଃ । ୯ ।
ଯୂୟଞ୍ଚ ପିତ୍ରାନ୍ୱାଦିଷ୍ଟା ଦେବଦେବେନ ଚାନଘାଃ ।
ପ୍ରଜାସର୍ଗାୟ ହି କଥଂ ବୃକ୍ଷାନ୍ ନିର୍ଦଗ୍ଧୁମର୍ହଥ । ୧୦ ।

---

ହେ କୁରୁକୁଳ ଧୁରନ୍ଧର ମହାରାଜ ପରୀକ୍ଷିତ ! ବୃକ୍ଷମାନେ ପ୍ରଚେତାମାନଙ୍କର କ୍ରୋଧାଗ୍ନିରେ ଦଗ୍ଧ ହେଉଅଛନ୍ତି ଦେଖି ବୃକ୍ଷାଧିପତି ଚନ୍ଦ୍ର ସେମାନଙ୍କର କ୍ରୋଧ ପ୍ରଶମନ ଉଦ୍ଦେଶ୍ୟରେ କହିଲେ । ୬ ।

ହେ ମହାଭାଗଗଣ ! ଏହି ନିଃସହାୟ ବୃକ୍ଷମାନଙ୍କ ଅନିଷ୍ଟ ସାଧନ କରିବା ଆପଣମାନଙ୍କର ଉଚିତ ନୁହେଁ, କାରଣ ଆପଣମାନେ ପ୍ରଜାପତି ଏବଂ ଆପଣମାନଙ୍କର ଶ୍ରୀବୃଦ୍ଧି ସାଧନ କରିବାରେ ଅଭିଳାଷ କରନ୍ତି ବୋଲି କଥିତ ଅଛି । ୭ ।

ହେ ପ୍ରଚେତାଗଣ ! ସମସ୍ତପ୍ରଜାପତି ମାନଙ୍କର ଅଧିପତି ସେହି ନିତ୍ୟପୁରୁଷ ଭଗବାନ୍ ଶ୍ରୀହରି ବୃକ୍ଷ ଓ ତଦ୍ଜାତ ଫଳ ଓ ଔଷଧାଦି ଓ ଶସ୍ୟାଦି ଓ ତଦ୍ଜାତ ଅନ୍ନାଦି ସୃଷ୍ଟି କରିଅଛନ୍ତି । ୮ ।

ପକ୍ଷଦ୍ୱାରା ବିଚରଣ ଶୀଳ ପ୍ରାଣୀମାନଙ୍କର ଫଳ ପୁଷ୍ପ ପ୍ରଭୃତି ଅନ୍ନ ସ୍ୱରୂପ, ଚତୁଷ୍ପଦଜନ୍ତୁଙ୍କ ପାଇଁ ତୃଣାଦି, ହସ୍ତି ପ୍ରଭୃତିଙ୍କ ପାଇଁ ବୃକ୍ଷ ଲତାଦି ଏବଂ ଦ୍ୱିପଦ ବା ମନୁଷ୍ୟମାନଙ୍କପାଇଁ ଓ ହରିଣ ପ୍ରଭୃତି ଚତୁଷ୍ପଦ ଜୀବମାନଙ୍କ ପାଇଁ ଧାନ୍ୟାଦି ଶସ୍ୟମାନ ଖାଦ୍ୟରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ୯ ।

ହେ ନିଷ୍ପାପ ପ୍ରଚେତାଗଣ ! ତୁମ୍ଭମାନଙ୍କ ପିତା ପରମଦେବ, ପ୍ରାଚୀନ ବର୍ହୀ ତୁମ୍ଭମାନଙ୍କୁ ପ୍ରଜା ସୃଷ୍ଟିପାଇଁ ଆଦେଶ ଦେଇଅଛନ୍ତି, ତେଣୁ ବୃକ୍ଷମାନଙ୍କୁ ଦଗ୍ଧ କରିବା ତୁମ୍ଭମାନଙ୍କର କିଣ ଉଚିତ ? । ୧୦ ।

---

ସ୍ୱଜନ ଅଗ୍ନିରେ ଦହନ
ବୃକ୍ଷ ହୋଇଲେ ଯହୁଁ କ୍ଷୀଣ
ତା ଦେଖି ଶୁଣ ପରୀକ୍ଷିତ
ଚନ୍ଦ୍ର ହୋଇଲେ ଉପଗତ
କ୍ରୋଧ ସାନ୍ତ୍ୱନା କରିବାରେ
ତାଙ୍କୁ ବୋଇଲେ ସୁଧାକରେ ।୬।
ହେ ସ୍ୱାମିମାନେ ତୁମ୍ଭେ ଶୁଣ
ବୃକ୍ଷେ ହୋଇଲେ ଅତି କ୍ଷୀଣ
ଦହନ ନ କରନ୍ତୁ ଆର
ତୁମ୍ଭେ ଯେ ପତି ପ୍ରଜାଙ୍କର ।୭।

ପ୍ରଜାପତିଙ୍କ ପତି ହରି
ଅବ୍ୟୟ ପୁରୁଷ ମୁରହର
ଔଷଧି ବନସ୍ପତି ଯେତେ
ତାର ସର୍ଜ୍ଜିଲ ଏ ଜଗତେ
ସଂସାରେ ଭକ୍ଷ ଭୋଜ୍ୟ ଅନ୍ନ
ସେ ବିଭୁ କରିଛି ସର୍ଜ୍ଜନ
ଚର ଅଚର ଆଦି ଯେତେ
ପାଦ ନିପାଦର ସହିତେ
ଅହସ୍ତ ହସ୍ତ ଯୁକ୍ତ ଯେତୁ
ଦ୍ୱିପଦ ଚତୁଷ୍ପଦ କେତୁ

ତୁମ୍ଭେ ସକଳେ ଏ ସର୍ଜ୍ଜିବ
ସଂସାରେ ଯେତେ ଅଛି ଜୀବ
ପ୍ରଜାର ସୃଷ୍ଟି କରିବାରେ
ଯେଣୁ ଅଇଲ ଏ ସଂସାରେ
ଶୁଣିମା ହେଉ ସାବଧାନ
ଦହନ ନ କର ଏ ବନ ।୮,୧୦

ଆଶ୍ରିତ ସତାଂ ମାର୍ଗଂ କୋପଂ ଯଚ୍ଛତ ଦୀପିତମ୍ ।
ପିତ୍ରା ପିତାମହେନାପି ଜୁଷ୍ଟଂ ବଃ ପ୍ରପିତାମହୈଃ । ୧୧ ।
ତୋକାନାଂ ପିତରୌ ବନ୍ଧୂ ଦୃଶଃ ପକ୍ଷ୍ମ ସ୍ତ୍ରିୟାଃ ପତିଃ ।
ପତିଃ ପ୍ରଜାନାଂ ଭିକ୍ଷୂଣାଂ ଗୃହ୍ୟଜ୍ଞାନାଂ ବୁଧଃ ସୁହୃତ୍ । ୧୨ ।
ଅନ୍ତର୍ଦେହେଷୁ ଭୂତାନାମାତ୍ମାସ୍ତେ ହରିରୀଶ୍ୱରଃ ।
ସର୍ବଂ ତଦ୍ଧିଷ୍ଣ୍ୟମୀକ୍ଷଧ୍ୱମେବଂ ବସ୍ତୋଷିତୋ ହ୍ୟସୌ । ୧୩ ।
ଯଃ ସମୁତ୍ପତିତଂ ଦେହେ ଆକାଶାନ୍ମନ୍ୟୁମୁଲ୍ବଣମ୍ ।
ଆତ୍ମଜିଜ୍ଞାସୟା ଯଚ୍ଛେତ୍ ସ ଗୁଣାନତିବର୍ତ୍ତତେ । ୧୪ ।
ଅଲଂ ଦଗ୍‌ଧୈର୍ଦ୍ରୁମୈର୍ଦୀନୈଃ ଖିଲାନାଂ ଶିବମସ୍ତୁ ବଃ ।
ବାର୍କ୍ଷୀ ହ୍ୟେଷା ବରା କନ୍ୟା ପତ୍ନୀତ୍ୱେ ପ୍ରତିଗୃହ୍ୟତାମ୍ । ୧୫ ।

---

ତୁମ୍ଭେମାନେ ପ୍ରଜ୍ୱଳିତ କ୍ରୋଧାନଳ ସମ୍ବରଣ କର, ତୁମ୍ଭମାନଙ୍କ ପିତା, ପିତାମହ ପ୍ରପିତାମହ ପ୍ରଭୃତି ସାଧୁଜନୋଚିତ ପଥ ବା ଶମବୃତ୍ତି ଅବଲମ୍ବନ କରି ଯାଇଅଛନ୍ତି, ତୁମ୍ଭେମାନେ ସେହି ମାର୍ଗ ଅନୁସରଣ କର । ୧୧ ।

ଯେପରି ମାତା, ପିତା, ବାଳକର ବନ୍ଧୁ, ନୟନର ରୋମଶ୍ରେଣୀ ଯେପରି ନୟନର ବନ୍ଧୁ, ପତି ଯେପରି ସ୍ତ୍ରୀର ବନ୍ଧୁ ଗୃହସ୍ଥ ଯେପରି ଭିକ୍ଷୁକର ବନ୍ଧୁ, ଜ୍ଞାନିମାନେ, ଯେପରି ଅଜ୍ଞବ୍ୟକ୍ତିମାନଙ୍କର ବନ୍ଧୁ ସେହିପରି ପ୍ରଜାପତି ମାନେପ୍ରଜାମାନଙ୍କର ବନ୍ଧୁ । ୧୨ ।

ଭଗବାନ ଶ୍ରୀହରି ପ୍ରାଣୀମାନଙ୍କର ଦେହାଭ୍ୟନ୍ତରରେ ଆତ୍ମାରୂପେ ବିରାଜମାନ କରୁଅଛନ୍ତି । ସୁତରାଂ ସର୍ବଭୂତହିଁ ଭଗବାନଙ୍କର ଗୃହ, ଏହା ଜାଣିଲେ ଭଗବାନ୍ ତୁମ୍ଭମାନଙ୍କ ପ୍ରତି ସନ୍ତୁଷ୍ଟ ହେବେ । ୧୩ ।

ଯେ ଅକସ୍ମାତ୍ ଦେହରୁ ଉତ୍ପନ୍ନ ତୀବ୍ର କ୍ରୋଧକୁ ଆତ୍ମ ବିଚାର ଦ୍ୱାରା ଦମନ କରେ, ସେ ଗୁଣମାନଙ୍କୁ ( ସତ୍ୱ, ରଜଃ, ତମଃ, ତ୍ରିଗୁଣକୁ ) ଅତିକ୍ରମ କରେ । ୧୪ ।

ଏହି ଜଗତ୍ରି ବୃକ୍ଷମାନଙ୍କୁ ଦଗ୍ଧ କରନାହିଁ, ଦଗ୍‌ଧାବଶିଷ୍ଟ ବୃକ୍ଷମାନଙ୍କର ଓ ତୁମ୍ଭମାନଙ୍କର ମଙ୍ଗଳ ହେଉ, ଏହି ବୃକ୍ଷପାଳିତା ରମଣୀୟ କନ୍ୟାକୁ ତୁମ୍ଭେ ମାନେ ପତ୍ନୀରୂପେ ଗ୍ରହଣ କର । ୧୫ ।

---

ପିତା ପିତାମହ ତୁମ୍ଭର
ସେବିତ ପ୍ରପିତାମହର
ନକର ସତ୍ୟମାର୍ଗ ଦୂର
କ୍ରୋଧ ଅନଳ ଦୂର କର ।୧୧।
ବାଳକ-ବନ୍ଧୁ ପିତା ମାତା
ନୟନ ବନ୍ଧୁ ରୋମ ପତା
ଭିକ୍ଷୁକ ବନ୍ଧୁ ଗୃହୀ ଜନ
ଅଜ୍ଞର ବନ୍ଧୁ ସୁଜ୍ଞଜନ

ସ୍ତ୍ରିୟର ବନ୍ଧୁ ସ୍ୱାମୀ ନିଜ
ପ୍ରଜାର ବନ୍ଧୁ ମହାରାଜ । ୧୨ ।
ଜୀବର ହୃଦଗତେ ହରି
ଅଛଇ ଆତ୍ମାରୂପ ଧରି
ଯେ ସର୍ବ ସମାନ ଦେଖଇ
ତାହାକୁ ଜ୍ଞାନୀ ବୋଲି କହି
ପ୍ରସନ୍ନ ହୋଇ ହରି ତାରେ
ନିର୍ଭୟେବୁଲଇସଂସାରେ ।୧୩,୧୪

କଲ୍ୟାଣ ହୋଇବ ତୁମ୍ଭର
ଶେଷ ଦ୍ରୁମଙ୍କୁ ରକ୍ଷାକର
ବୃକ୍ଷଙ୍କ କନ୍ୟା ଏକ ବର
ତୁମ୍ଭର ହେଉ ନିଜ ନାରୀ ।୧୫।

ଇତ୍ୟାମନ୍ତ୍ର୍ୟ ବରାରୋହାଂ କନ୍ୟାମାପ୍ସରସୀଂ ନୃପ ।
ସୋମୋ ରାଜା ଯଯୌ ଦତ୍ତ୍ୱା ତେଧର୍ମେଣୋପୟେମିରେ । ୧୬ ।
ତେଭ୍ୟସ୍ତସ୍ୟାଂ ସମଭବଦ୍ଦକ୍ଷଃ ପ୍ରାଚେତସଃ କିଲ ।
ଯସ୍ୟ ପ୍ରଜାବିସର୍ଗେଣ ଲୋକା ଆପୂରିତାସ୍ତ୍ରୟଃ । ୧୭ ।
ଯଥା ସସର୍ଜ ଭୂତାନି ଦକ୍ଷୋ ଦୁହିତୃବତ୍ସଲଃ ।
ରେତସା ମନସା ଚୈବ ତନ୍ମମାବହିତଃ ଶୃଣୁ । ୧୮ ।
ମନସୈବାସୃଜତ୍ ପୂର୍ବଂ ପ୍ରଜାପତିରିମାଃ ପ୍ରଜାଃ ।
ଦେବାସୁରମନୁଷ୍ୟାଦୀନ୍ ନଭ ସ୍ଥଲଜଲୌକସଃ । ୧୯ ।
ତମବୃଂହିତମାଲୋକ୍ୟ ପ୍ରଜାସର୍ଗଂ ପ୍ରଜାପତିଃ ।
ବିନ୍ଧ୍ୟପାଦାନୁପବ୍ରଜ୍ୟ ସୋଽଚରଦ୍ଦୁଷ୍କରଂ ତପଃ । ୨୦ ।

---

ହେ ରାଜନ୍ ! ବୃକ୍ଷାଧିପତିସୋମ ପ୍ରଚେତାମାନଙ୍କୁ ଏହିପରି ସାନ୍ତ୍ୱନା ଦେଇ ପ୍ରମ୍ଲୋଚା ନାମ୍ନୀ ଅପ୍ସରା ଗର୍ଭଜାତ ବୃକ୍ଷପାଳିତା କନ୍ୟାକୁ ଦାନକରି ଅନ୍ତର୍ହିତ ହୋଇଥିଲେ ପ୍ରଚେତାମାନେ ଧର୍ମାନୁସାରେ ତାହାଙ୍କୁ ବିବାହ ହୋଇଥିଲେ । ୧୬ ।

ସେହି ପ୍ରଚେତାମାନଙ୍କର ଔରସରେ ସେହି ପତ୍ନୀ ଗର୍ଭରେ ଦକ୍ଷ ଜନ୍ମଗ୍ରହଣ କରିଥିଲେ, ତାହାଙ୍କର ସୃଷ୍ଟ ପ୍ରଜାମାନେ ତ୍ରିଭୁବନକୁ ପୂର୍ଣ୍ଣ କରିଅଛନ୍ତି । ୧୭ ।

ଦୁହିତୃ ବତ୍ସଳ ଦକ୍ଷ ନିଜ ଔରସରେ ଏବଂ ମନ ମଧ୍ୟରେ ଯେପରି ଭାବରେ ପ୍ରାଣୀମାନଙ୍କୁ ସୃଷ୍ଟି କରିଥିଲେ, ମନଯୋଗ ପୂର୍ବକ ତାହା ଶ୍ରବଣ କର । ୧୮ ।

ଦକ୍ଷପ୍ରଜାପତି ପ୍ରଥମେ ଜଳ, ସ୍ଥଳ, ଅନ୍ତରୀକ୍ଷବାସୀ ଦେବତା ଅସୁର, ମନୁଷ୍ୟ ପ୍ରଭୃତି ନିଜର ମନଦ୍ୱାରା ସୃଷ୍ଟି କରିଥିଲେ । ୧୯ ।

ସେହି ପ୍ରଜାସୃଷ୍ଟି ବର୍ଦ୍ଧିତ ହେଉ ନାହିଁ ଦେଖି, ସେ ବିନ୍ଧ୍ୟାଚଳ ନିକଟବର୍ତ୍ତୀ ପର୍ବତକୁ ଗମନ କରି ସେଠାରେ କଠୋର ତପସ୍ୟା କରିଥିଲେ । ୨୦ ।

---

ଏତେକ କହି ରାଜା ସୋମ
ଆନନ୍ଦେ ହରଷ ବଦନ
କନ୍ୟାଙ୍କୁ ଆଣି ତାଙ୍କୁ ଦେଲେ
ହରଷେ ନିଜପୁର ଗଲେ
ସେମାନେ କନ୍ୟା ଅଗ୍ରସର
ବିଭା ହୋଇଲେ ଧର୍ମ୍ମ କରି ।୧୬
ସେ ଦଶଠାରୁ ସେ କନ୍ୟାର
ଜନ୍ମିଲେ ଦକ୍ଷ ବେଦବର

ଯାହାର ପ୍ରଜାର ସର୍ଜ୍ଜନେ
ପ୍ରଜା ପୂରିଲେ ତ୍ରିଭୁବନେ ।୧୭।
ଯେମନ୍ତ ଦକ୍ଷ ପ୍ରଜାପତି
ସର୍ଜ୍ଜିଲେ ସର୍ବ ଭୂତସ୍ଥିତି
ମାନସେ ବୀର୍ଯ୍ୟେ ଅବା ଯାହା
ସର୍ଜ୍ଜିଲେ ଶୁଣ କହୁଁ ତାହା ।୧୮
ପ୍ରଥମେ ମନୁ କଲ୍ପ ଜାତ
ସେ ପ୍ରଜାପତି ଲୋକନାଥ

ଦେବ ଅସୁର ନର ଆଦି
ଆକାଶ ଜଳ ସ୍ଥଳ ସିଦ୍ଧି
ପ୍ରଜା ଅବୃଦ୍ଧି ଦେଖି ଦକ୍ଷ
ମନରେ କଲେ ଅତି ଦୁଃଖ ।୧୯।
ବିନ୍ଧ୍ୟ ପର୍ବତକୁ ସେ ଯାଇ
ତପ ଆରମ୍ଭ କଲେ ତହିଁ
ତକ୍ଷଣେ କରି ଆଚମନ
ଯେ ତୀର୍ଥ ଅଘମର୍ଷଣ

ତତ୍ରାଘମର୍ଷଣଂ ନାମ ତୀର୍ଥଂ ପାପ ହରଂ ପରମ୍ ।
ଉପସ୍ପୃଶ୍ୟାନୁସବନଂ ତପସାଽତୋଷୟଦ୍ଧରିମ୍ । ୨୧ ।
ଅସ୍ତୌଷୀଦ୍ଧଂସଗୁହ୍ୟେନ ଭଗବନ୍ତମଧୋକ୍ଷଜମ୍ ।
ତୁଭ୍ୟଂ ତଦଭିଧାସ୍ୟାମି କସ୍ୟାତୁଷ୍ୟଦ୍ୟଥା ହରିଃ । ୨୨ ।

ଶ୍ରୀପ୍ରଜାପତିରୁବାଚ ।

ନମଃ ପରାୟାବିତଥାନୁଭୂତୟେ ଗୁଣତ୍ରୟାଭାସନିମିତ୍ତବନ୍ଧବେ ।
ଅଦୃଷ୍ଟଧାମ୍ନେ ଗୁଣତତ୍ତ୍ୱବୁଦ୍ଧିଭିର୍ନିବୃତ୍ତମାନାୟ ଦଧେ ସ୍ୱୟମ୍ଭୁବେ । ୨୩ ।
ନ ଯସ୍ୟ ସଖ୍ୟଂ ପୁରୁଷୋଽବୈତି ସଖ୍ୟୁଃ ସଖା ବସନ୍ ସଂବସତଃ ପୁରେଽସ୍ମିନ୍ ।
ଗୁଣୋ ଯଥା ଗୁଣିନୋ ବ୍ୟକ୍ତଦୃଷ୍ଟେସ୍ତସ୍ମୈ ମହେଶାୟ ନମସ୍କରୋମି । ୨୪ ।

---

ସେଠାରେ ଅଘମର୍ଷଣ ନାମକ ଶ୍ରେଷ୍ଠ ତୀର୍ଥରେ ତ୍ରିକାଳ ସମୟରେ ସ୍ନାନକରିଯତ୍ନପୂର୍ବକ ଶ୍ରୀହରିଙ୍କୁ ପ୍ରୀତ କରିଥିଲେ । ୨୧ ।

ପ୍ରଜାପତି ଦକ୍ଷ ହଂସ ଗୁହ୍ୟ ନାମକ ସ୍ତୋତ୍ରଦ୍ୱାରା ଅଧୋକ୍ଷଜ ଭଗବାନଙ୍କୁ ସ୍ତବ କରିଥିଲେ, ଏହି ସ୍ତବରେ ଶ୍ରୀହରି ତାହାଙ୍କ ପ୍ରତି ପ୍ରସନ୍ନ ହୋଇଥିଲେ । ସେ ବିଷୟ ମୁଁ ତୁମ୍ଭଙ୍କୁ କହୁଅଛି, ତାହା ଶ୍ରବଣ କର । ୨୨ ।

ଶ୍ରୀପ୍ରଜାପତି କହିଲେ :—

ସର୍ବବିଷୟରେ ଯାହାଙ୍କର ଅଭ୍ରାନ୍ତ ଅନୁଭୂତି, ଜୀବ ଏବଂ ମାୟାର ଯେ ନିୟନ୍ତା ଭ୍ରାନ୍ତ ଜୀବମାନେ ଯାହାଙ୍କର ସ୍ୱରୂପ କିଞ୍ଚିନ୍ମାତ୍ର ଧାରଣା କରି ପାରନ୍ତି ନାହିଁ, ଯେ ଅପରିମେୟ ଏବଂ ସ୍ୱପ୍ରକାଶ ସେହି ସର୍ବୋତ୍ତମ ଭଗବାନଙ୍କୁ ମୁଁ ନମସ୍କାର କରୁଅଛି । ୨୩ ।

ଜୀବ ଏହି ଦେହରେ ବାସ କରେ, ପରମେଶ୍ୱର ତାହାର ସଖା ହୋଇ ଏହି ଦେହରେ ବାସ କରୁଅଛନ୍ତି ଏବଂ ଇନ୍ଦ୍ରିୟମାନଙ୍କୁ ପ୍ରବୃତ୍ତି ଦାନ କରୁଅଛନ୍ତି । କିନ୍ତୁ ଜୀବ ତାହାଙ୍କର ସେହି ସଖ୍ୟଭାବ ଜାଣିବାକୁ ଅକ୍ଷମ, କାରଣ ସେ ପ୍ରପଞ୍ଚ ଦର୍ଶନ କରିଥାଏ, ଇନ୍ଦ୍ରିୟାଦି ବିଷୟମାନଙ୍କୁ ପ୍ରକାଶ କରିଥାଏ କିନ୍ତୁ ଯେପରି ବିଷୟମାନ ସେହି ଇନ୍ଦ୍ରିୟମାନଙ୍କୁ ଜାଣି ନ ପାରନ୍ତି ସେହିପରି ଜୀବ ସର୍ବଦ୍ରଷ୍ଟାଙ୍କୁ ଜାଣିପାରେ ନାହିଁ, ମୁଁ ସେହି ପରମେଶ୍ୱରଙ୍କୁ ନମସ୍କାର କରୁଅଛି । ୨୪ ।

---

ଯାହାର ଜଳ ସ୍ପରଶରେ
ସକଳ ପାପ ଯାଇ ଦୂରେ
ତହିଁ ବସିଲେ ତପକରି
ତୋଷିଲେ ପ୍ରଭୁ ନରହରି
ଏହି ସ୍ତବରେ କଲେ ସ୍ତୁତି
ଯେଣେ ପ୍ରସନ୍ନ ଶ୍ରୀପତି ।୨୦-୨୨

ଶ୍ରୀ ପ୍ରଜାପତିରୁ ବାଚ—
ନମସ୍ତେ ପ୍ରଭୁ ଆଦି ଧାତା
ଜୀବ ମାୟାର ଯେ ନିୟନ୍ତା
ଅଦୃଷ୍ଟ ଯାହାର ମହିମା
ଗୁଣ ବୁଦ୍ଧିରେ ନୋହେ ସୀମା
ଯାହାର ଆଶ୍ରେ ଜଗତ
ନମସ୍ତେ ପ୍ରଭୁ ଆଦି ଭୂତ ।୨୩।

ଯାହାର ସଖା ଅଟେ ଜୀବ
ନ ଜାଣେ ତାହାର ପ୍ରଭାବ
ଏ ଦେହେ ହିଁ ସମାନେ ବସଇ
ତଥାପି ଜୀବ ନ ଜାଣଇ
ପ୍ରକାଶ ଇନ୍ଦ୍ରିୟଗଣର
ଯେତେକ ବିଷୟ ଅଗୋଚର
ଯହାରେ ଅଛି ପୂର୍ଣ୍ଣ ହୋଇ
ସେ ମହେଶ୍ୱରଙ୍କୁ ନମଇ ।୨୪।

ଦେହୋଽସବୋଽକ୍ଷା ମନବୋ ଭୂତମାତ୍ରା ନାତ୍ମାନମନ୍ୟଞ୍ଚ ବିଦୁଃ ପରଂ ଯତ୍ ।
ସର୍ବଂ ପୁମାନ୍ ବେଦ ଗୁଣାଂଶ୍ଚ ତଜ୍ଜ୍ଞୋ ନ ବେଦ ସର୍ବଜ୍ଞମନନ୍ତମୀଡ଼େ ।୨୫।
ଯଦୋପରାମୋ ମନସୋ ନାମରୂପରୂପସ୍ୟ ଦୃଷ୍ଟସ୍ମୃତିସଂପ୍ରମୋଷାତ୍ ।
ଯ ଈୟତେ କେବଲୟା ସ୍ୱସଂସ୍ଥୟା ହଂସାୟ ତସ୍ମୈ ଶୁଚିସଦ୍ମନେ ନମଃ । ୨୬ ।
ମନୀଷିଣୋନ୍ତର୍ହୃଦି ସନ୍ନିବେଶିତଂ ସ୍ୱଶକ୍ତିଭିର୍ନବଭିଶ୍ଚ ତ୍ରିବୃଦ୍ଭିଃ ।
ବହ୍ନିଂ ଯଥା ଦାରୁଣି ପାଞ୍ଚଦଶ୍ୟଂ ମନୀଷୟା ନିଷ୍କର୍ଷନ୍ତି ଗୂଢ଼ମ୍ । ୨୭ ।

---

ଦେହ, ପ୍ରାଣ, ଇନ୍ଦ୍ରିୟବର୍ଗ, ଅନ୍ତଃକରଣ ପଞ୍ଚଭୂତ ଓ ରୂପାଦି ପଞ୍ଚତନ୍ମାତ୍ର ଏମାନେ ଜଡ଼ର ସ୍ୱରୂପ ଇନ୍ଦ୍ରିୟବର୍ଗ ଓ ସେମାନଙ୍କର ଅଧିଷ୍ଠାତୃ ଦେବଗଣ ଏମାନେ କିଛି ଜାଣି ପାରନ୍ତି ନାହିଁ, କିନ୍ତୁ ଜୀବାତ୍ମା ସେହି ସମସ୍ତ ବିଷୟ ଏବଂ ତାହାର ମୂଳ ସ୍ୱରୂପ ସତ୍ତ୍ୱାଦି ଗୁଣତ୍ରୟ ଏହି ସମସ୍ତ ଜାଣିପାରେ, ଏହିପରି ଜ୍ଞାନବାନ ହୋଇ ମଧ୍ୟ ଜୀବ ସର୍ବଜ୍ଞ ଅନନ୍ତଦେବଙ୍କୁ ଅନୁଭବ କରିପାରେ ନାହିଁ, ମୁଁ ତାହାଙ୍କୁ ସ୍ତୁତି କରୁଅଛି । ୨୫ ।

ଜଗତର ନାମ ଓ ରୂପମାନ ମନଦ୍ୱାରା କଳ୍ପିତ, ଜାଗ୍ରତ ଓ ସ୍ୱପ୍ନାବସ୍ଥାରେ ଏହି ମନର ବିକ୍ଷେପ ଘଟୁଥାଏ ଏବଂ ନିଦ୍ରାବସ୍ଥାରେ ତାହା ଲୟ ହୋଇଥାଏ, କିନ୍ତୁ ଯେତେବେଳେ ଦର୍ଶନ ଓ ନାଶ ହେତୁ ମନର ଉପରାମ ଅର୍ଥାତ୍ ସମାଧି ଘଟେ ସେତେବେଳେ ସେହିଦୋଷମାନ ତିରୋହିତ ହୁଏ, ସେହି ଶୁଦ୍ଧତତ୍ତ୍ୱ ଯାହାର ପ୍ରକୃତ ସ୍ଥାନ ଯେପରି ତତ୍ତ୍ୱରେ ଯେ କେବଳ ସ୍ୱରୂପ ଜ୍ଞାନ ଦ୍ୱାରା ପ୍ରକାଶିତ ହୋଇଥାନ୍ତି; ସେହି ଭଗବାନଙ୍କୁ ମୁଁ ନମସ୍କାର କରୁଅଛି । ୨୬ ।

ପଞ୍ଚଦଶ ସାମି ଧେନୀ (ଋକ୍ ମନ୍ତ୍ର) ଦ୍ୱାରା ଯାହା ପ୍ରକାଶ କରିବାକୁ ହୁଏ ସେହି ଅଲୌକିକ ଅଗ୍ନି କାଷ୍ଠ ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ଅବସ୍ଥାନ କରନ୍ତି । ବିଜ୍ଞବ୍ୟକ୍ତିମାନେ ଜ୍ଞାନବଳରେ ଯେପରି ସମ୍ୟକ୍ ପ୍ରକାରେ ତାହା ଅବଧାରଣ କରନ୍ତି ସେହିପରି ଯେଉଁ ଭଗବାନ୍ ପ୍ରକୃତି ପୁରୁଷ ମହତ୍ ଅହଙ୍କାର ଓ ପଞ୍ଚତନ୍ମାତ୍ର ସ୍ୱରୂପ ନଅପ୍ରକାର ଏବଂ ତ୍ରିଗୁଣାତ୍ମକ ଓ ଷୋଡ଼ଶ ପ୍ରକାର ବିକାର ସ୍ୱରୂପ ନିଜର ଶକ୍ତି ଯୁକ୍ତହୋଇ ଜୀବମାନଙ୍କର ହୃଦୟ ମଧ୍ୟରେ ପ୍ରଚ୍ଛନ୍ନଭାବରେ ଅନ୍ତର୍ଯ୍ୟାମୀରୂପେ ଅବସ୍ଥାନ କରୁଥିଲେ ମଧ୍ୟ ବିବେକୀ ବ୍ୟକ୍ତିମାନେ ଯାହାଙ୍କୁ ସ୍ୱୀୟ ଜ୍ଞାନବଳରେ ଅବଧାରଣା କରିଥାନ୍ତି । ଅନନ୍ତ ବୈରାଗ୍ୟମୟୀ ମାୟାକୁ

---

ଦେହ ଇନ୍ଦ୍ରିୟ ପ୍ରାଣ ମନ
ଯେ ଭୂତ ମାତ୍ରାଦି ପଞ୍ଚମ
ଏମାନେ ନିଜ ସ୍ୱରୂପକୁ
ନ ଜାଣେ କେହି ଯେ କାହାକୁ
ଜୀବ ଯେ ଏ ସର୍ବ ଜାଣଇ
ସେ ଜୀବ ଯାକୁ ନ ଜାଣଇ

ସକଳ ଭୂତରେ ଯେ ଥାଇ
କାହାକୁ କେହି ନ ଜାଣଇ
ସର୍ବଜ୍ଞ ଅନନ୍ତ ଅଟଇ
ତାହାକୁ ଦଣ୍ଡବତ ମୁହିଁ । ୨୫ ।
ସମାଧି ଯୋଗେ ଦୃଷ୍ଟି ସ୍ମୃତି
ବିନାଶେ ଯେ ହୋଏ ପ୍ରତୀତ

କେବଳ ସ୍ୱରୂପ ଜ୍ଞାନରେ
ଅଶେଷ ଘଟେ ଯେହୁ ପୁରେ
ଯେ ହଂସ ଶୁଦ୍ଧ ତତ୍ତ୍ୱ ଘର
ତାହାକୁ ମୋର ନମସ୍କାର ।୨୬।
ହୃଦ ପଦ୍ମରେ ଯାକୁ ଧରି
ପଣ୍ଡିତେ ଧ୍ୟାନକୁ ଆଚରି

ସ ବୈ ମମାଶେଷବିଶେଷମାୟାନିଷେଧନିର୍ବାଣସୁଖାନୁଭୂତିଃ ।
ସ ସର୍ବନାମା ସ ଚ ବିଶ୍ୱରୂପଃ ପ୍ରସୀଦତାମନିରୁକ୍ତାତ୍ମଶକ୍ତିଃ । ୨୮ ।
ଯଦ୍ୟନ୍ନିରୁକ୍ତଂ ବଚସା ନିରୂପିତଂ ଧିୟାକ୍ଷଭିର୍ବା ମନସୋତ ଯସ୍ୟ ।
ମାଭୂତ୍ ସ୍ୱରୂପଂ ଗୁଣରୂପଂ ହି ତତ୍ତତ୍ ସ ବୈ ଗୁଣାପାୟବିସର୍ଗଲକ୍ଷଣଃ ।୨୯।
ଯସ୍ମିନ୍ ଯତୋ ଯେନ ଚ ଯସ୍ୟ ଯସ୍ମୈ ଯଦ୍ୟୋ ଯଥା କୁରୁତେ କାର୍ଯ୍ୟତେ ଚ ।
ପରାବରେଷାଂ ପରମଂ ପ୍ରାକ୍ପ୍ରସିଦ୍ଧଂ ତଦ୍ବ୍ରହ୍ମ ତଦ୍ଧେତୁରନନ୍ୟଦେକମ୍ । ୩୦ ।
ଯଚ୍ଛକ୍ତୟୋ ବଦତାଂ ବାଦିନାଂ ବୈ ବିବାଦସମ୍ବାଦଭୁବୋ ଭବନ୍ତି ।
କୁର୍ବନ୍ତି ଚୈଷାଂ ମୁହୁରାତ୍ମମୋହଂ ତସ୍ମୈ ନମୋଽନନ୍ତଗୁଣାୟ ଭୂମ୍ନେ । ୩୧ ।

---

ଅତିକ୍ରମ କରି ସେ ସର୍ବଦା ପରମାନନ୍ଦ ଅନୁଭବ କରୁଅଛନ୍ତି, ବିଶ୍ୱର ସମସ୍ତ ନାମ ଓ ସ୍ୱରୂପ ତାହାଙ୍କର ନାମ ଓ ରୂପାନ୍ତର ହେଲେ ମଧ୍ଯ ତଥାପି ଯାହାଙ୍କର ସ୍ୱରୂପଶକ୍ତି ମନୋବଚନର ଅଗୋଚର ସେହି ଭଗବାନ ମୋପ୍ରତି ପ୍ରସନ୍ନ ହୁଅନ୍ତୁ । ୨୭,୨୮ ।

ବାକ୍ୟ ଦ୍ୱାରା ଯାହା କଥିତ ହୁଏ, ଜ୍ଞାନଦ୍ୱାରା ଯାହା ଅଧିଗତ ହୁଏ, ଇନ୍ଦ୍ରିୟଦ୍ୱାରା ଯାହା ଅନୁଭୂତ ହୁଏ, ମନଦ୍ୱାରା ଯାହା ସଂକଳ୍ପିତ ହୁଏ ଏହି ସମୁଦାୟ ଗୁଣମୟ ଅର୍ଥାତ୍ ମାୟିକ । ସୁତରାଂ ଏମାନ ଯାହାଙ୍କର ସ୍ୱରୂପ ନୁହେଁ କାରଣ ସେ ମାୟାଶୀତ ଏବଂ ନିତ୍ୟ ସିଦ୍ଧରୂପେ ପ୍ରକାଶିତ ସେହି ଭଗବାନଙ୍କୁ ନମସ୍କାର ।୨୯

ଯେ ଅଧିକରଣରେ ଅର୍ଥାତ୍ ଯାହାଠାରୁ, ଯାହାଦ୍ୱାରା, ଯାହା ସମ୍ବନ୍ଧେ, ଯାହା ନିମିତ୍ତ, ଯେ ପ୍ରକାରେ, ଯେ ସ୍ୱାଧୀନକର୍ତ୍ତା କିମ୍ବା ଅନ୍ୟ ପ୍ରେରିତ କର୍ତ୍ତା ସ୍ୱରୂପ କାର୍ଯ୍ୟ କରିଥାନ୍ତି, ତତ୍ ସଙ୍ଗରେ କାରଣ ସ୍ୱରୂପ ବ୍ରହ୍ମ ତାହାର ସ୍ୱଜାତୀୟ ବା ବିଜାତୀୟ କୌଣସି ସହକାରୀ ନାହିଁ, ସେ ସୃଷ୍ଟିର ପୂର୍ବେ ସ୍ୱତଃସିଦ୍ଧ ଏବଂ ଉତ୍ତମ ଓ ଅଧମ ସମସ୍ତର ଆଦିକାରଣ ସ୍ୱରୂପ । ୩୦ ।

ଯେଉଁ ଭଗବାନଙ୍କର ମାୟା ଅବିଦ୍ୟା ପ୍ରଭୃତି ଶକ୍ତି ସମୂହ ପ୍ରତିଦ୍ୱନ୍ଦୀ ରୂପେ କେତେବେଳେ ଐକ୍ୟ, କେତେବେଳେ ବିବାଦ ସମ୍ପାଦନ କରିଥାନ୍ତି; ସେହି ପ୍ରତିଦ୍ୱନ୍ଦୀମାନେ ଅନ୍ତଃକରଣରେ ପୁନଃ ପୁନଃ ମୋହ ଉତ୍ପାଦନ କରନ୍ତି । ଅସୀମ ଗୁଣସମ୍ପନ୍ନ ସେହି ଭଗବାନଙ୍କୁ ମୁଁ ନମସ୍କାର କରୁଅଛି । ୩୧ ।

---

ଅଶେଷ ବିଶେଷ ମାୟାର
ନିଷେଧ ଅନୁଭବ ଯାର
ସେ ସର୍ବ ରୂପ ସର୍ବ ନାମ
ସକଳ ଯାହାର ଭିଆଣ
ସେ ପ୍ରଭୁ ହୁଅନ୍ତୁ ପ୍ରସନ୍ନ
ସର୍ବ କାରଣ ଭଗବାନ ।୨୭,୨୮
ଭଜନ କରନ୍ତି ଯେ ଜନେ
ଏ ବୁଦ୍ଧି ଇନ୍ଦ୍ରିୟ ବଚନେ

ଯେ ପ୍ରଭୁ ଏଥୁଁ ଅଗୋଚର
ତାହାଙ୍କୁ ମୋର ନମସ୍କାର ।୨୯।
ଯାହାଠାବରେ ଯାହା ତହୁଁ
ଯେ ସର୍ବରୂପ ଏକଦେହୁଁ
ଯେ କାର୍ଯ୍ୟ କରାଇ କରଇ
ଯାହାର ତହୁଁ ଆନ ନାହିଁ
ପର ଉପରେ ଯେହୁ ପର
ଆଦ୍ୟହୁଁ ସିଦ୍ଧ ଯେ ଈଶ୍ୱର

ଏମନ୍ତ ଯେଉଁ ବ୍ରହ୍ମପର
ତାହାଙ୍କୁ ମୋର ନମସ୍କାର ।୩୦।
ନିଜ ଶକ୍ତିମାନେ ଯାହାର,
ବାଦ ବିବାଦ ମାନଙ୍କର
ବିବାଦ ବିସମ୍ବାଦେ କରି
ପ୍ରାଣିମାନଙ୍କ ଚିତ୍ତ ହରି
ଏମନ୍ତ ଅନନ୍ତ ଯା ଗୁଣ
ନମଇଁ ତାହାର ଚରଣ । ୩୧ ।

ଅସ୍ତୀତି ନାସ୍ତୀତି ଚ ବସ୍ତୁନିଷ୍ଠୟୋରେକସ୍ଥୟୋର୍ଭିନ୍ନବିରୁଦ୍ଧଧର୍ମଣୋଃ ।
ଅବେକ୍ଷିତଂ କିଞ୍ଚନ ଯୋଗସାଂଖ୍ୟୟୋଃ ସମଂ ପରଂ ହ୍ୟନୁକୂଳଂ ବୃହତ୍ତତ୍ ।୩୨।
ଯୋଽନୁଗ୍ରହାର୍ଥଂ ଭଜତାଂ ପାଦମୂଳମନାମରୂପୋ ଭଗବାନନନ୍ତଃ ।
ନାମାନି ରୂପାଣି ଚ ଜନ୍ମକର୍ମଭିର୍ଭେଜେ ସ ମହ୍ୟଂ ପରମଃ ପ୍ରସୀଦତୁ । ୩୩ ।
ଯଃ ପ୍ରାକୃତୈର୍ଜ୍ଞାନପଥୈର୍ଜନାନାଂ ଯଥାଶୟଂ ଦେହଗତୋ ବିଭାତି ।
ଯଥାନିଲଃ ପାର୍ଥିବମାଶ୍ରିତୋ ଗୁଣଂ ସ ଈଶ୍ୱରୋ ମେ କୁରୁତାଂ ମନୋରଥମ୍ ।୩୪।

ଶ୍ରୀଶୁକ ଉବାଚ ।

ଇତି ସ୍ତୁତଃ ସଂସ୍ତୁବତଃ ସ ତସ୍ମିନ୍ନଘମର୍ଷଣେ ।
ପ୍ରାଦୁରାସୀତ୍ କୁରୁଶ୍ରେଷ୍ଠ ଭଗବାନ୍ ଭକ୍ତବତ୍ସଳଃ । ୩୫ ।

---

ଭଗବାନଙ୍କର ହସ୍ତପଦାଦି ଅଛି ଏହା ଭକ୍ତିଶାସ୍ତ୍ରର ସିଦ୍ଧାନ୍ତ, ଜ୍ଞାନଶାସ୍ତ୍ରର ମତରେ ତାହାଙ୍କର ହସ୍ତପଦାଦି ନାହିଁ । ଏହିପରି ବିରୁଦ୍ଧମତାବଲମ୍ବୀ ହେଲେ ମଧ୍ୟ ଉଭୟ ଶାସ୍ତ୍ରର ଲକ୍ଷ ଏକ, କାରଣ ଉଭୟ ଶାସ୍ତ୍ର ଭଗବାନଙ୍କର ପ୍ରତିପାଦକ, ସୁତରାଂ ଭକ୍ତିଶାସ୍ତ୍ରମାନଙ୍କରେ ଯାହା ପରମାର୍ଥରୂପେ ପ୍ରତିପାଦିତ ହୋଇଅଛି ତାହା ବିଧି ନିଷେଧର ଅତୀତ ପରଂବ୍ରହ୍ମ ତାହାଙ୍କଠାରେ କୌଣସି ଅସାମଞ୍ଜସ୍ୟ ନାହିଁ ଉଭୟ ଶାସ୍ତ୍ରର ପ୍ରତିପାଦ୍ୟ ସାଧକମାନଙ୍କର ଅନୁକୂଳ । ୩୨ ।

ଅନନ୍ତ ବିଭୂତିସମ୍ପନ୍ନ ଭଗବାନ୍ ପ୍ରାକୃତ ନାମରୂପାଦି ରହିତ ହେଲେ ମଧ୍ୟ ଶ୍ରୀପାଦପଦ୍ମର ଉପାସକ ମାନଙ୍କ ପ୍ରତି ଅନୁଗ୍ରହ ପ୍ରଦର୍ଶନ ଲାଗି ସେ ଜନ୍ମ କର୍ମଦ୍ୱାରା ବିବିଧରୂପ ଓ ନାମ ଧାରଣ କରିଥାନ୍ତି, ସେହି ପରମ ପୁରୁଷ ଭଗବାନ୍ ମୋ ପ୍ରତି ପ୍ରସନ୍ନ ହୋଇନ୍ତୁ । ୩୩ ।

ବାୟୁ ଯେପରି ପାର୍ଥିବ ବସ୍ତୁର ଗୁଣ, ଗନ୍ଧ ଏବଂ ଧୂସରିତବର୍ଣ୍ଣ ଗ୍ରହଣ କରି ବିବିଧଗନ୍ଧଯୁକ୍ତ ଏବଂ ନାନାରୂପ ସମ୍ପନ୍ନ ବୋଲି ଜଣାଯାଏ, ସେହିପରି ଭଗବାନ୍ ସାଧକମାନଙ୍କର ନିମ୍ନସ୍ତରର ଉପାସନାରେ ସେମାନଙ୍କର ବାସନା ପୂରଣ କରିବା ନିମିତ୍ତ ନାନାଦେବ ମୂର୍ତ୍ତିରେ ନାନାଭାବରେ ପ୍ରକାଶିତ ହୋଇଥାନ୍ତି, ସେହି ଭଗବାନ୍ ମୋର ଅଭିଳାଷ ପୂରଣ କରନ୍ତୁ । ୩୪ ।

ଶ୍ରୀଶୁକଦେବ କହିଲେ:—ହେ କୁରୁରାଜ ପରୀକ୍ଷିତ ! ଅଘମର୍ଷଣ ତୀର୍ଥରେ ଏହିପରି ସ୍ତବରେ ସ୍ତୁତହୋଇ ଭଗବାନ୍ ଶ୍ରୀହରି ଦକ୍ଷଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ।୩୫।

---

ସଂସାରେ ଅସ୍ତି ନାସ୍ତି ଯେତେ
ବସ୍ତୁର ନିଷ୍ଠା ଏହିମତେ
ସାଂଖ୍ୟଯୋଗରେ ପ୍ରବର୍ତ୍ତିତ
ସେ ସର୍ବ ଅଟନ୍ତି ବିହିତ
ଭିନ୍ନ ବିରୋଧ ଧର୍ମ ସେହି
ତା ବିନୁ ଅନ୍ୟ କେହି ନାହିଁ ।୩୨
ପଦ୍ମପାଦରେ ଯେ ଭଜଇ
ତାହାର ଅନୁଗ୍ରହ ପାଇଁ

ଜନନେ ନାମ ରୂପ ଧରି
ଶରୀର ବହଇ ଯେ ହରି
ସେ ମୋତେ ହୁଅନ୍ତୁ ପ୍ରସନ୍ନ
ସର୍ବକାରଣ ଭଗବାନ ।୩୩।
ପ୍ରାକୃତ ଜ୍ଞାନପଥେ କରି
ଯେ ପ୍ରଭୁ ନାନାରୂପ ଧରି
ଶୋଭା ପାଉଛି ଅନୁକ୍ଷଣ
ଅଖିଳ ପ୍ରାଣ ନାରାୟଣ

ପୃଥ୍ୱୀ ଗୁଣକୁ ବସାଇ
ଅନିଳ ଯେସନେ ବହଇ
ଯେ ସ୍ୱାମି ମହିମା ଏମନ୍ତ
ପୂର୍ଣ୍ଣ କରୁ ମୋ ମନୋରଥ ।୩୪।
ଶ୍ରୀ ଶୁକ ଉବାଚ—
ଏମନ୍ତ ଦକ୍ଷ ବାକ୍ୟଶୁଣି
ପ୍ରସନ୍ନ ହୋଇ ଚକ୍ରପାଣି
ତକ୍ଷଣେ ଅଘମରଷଣ
ଆସି ମିଳିଲେ ଭଗବାନ । ୩୫ ।

କୃତପାଦଃ ସୁପର୍ଣ୍ଣାଂସେ ପ୍ରଲମ୍ବାଷ୍ଟମହାଭୁଜଃ ।
ଶଙ୍ଖ ଚକ୍ରାସିଚର୍ମ୍ମେଷୁ ଧନୁଃପାଶଗଦାଧରଃ । ୩୬ ।
ପୀତବାସା ଘନଶ୍ୟାମଃ ପ୍ରସନ୍ନବଦନେକ୍ଷଣଃ ।
ବନମାଲାନିବୀତାଙ୍ଗୋ ଲସତ୍ ଶ୍ରୀବତ୍ସକୌସ୍ତୁଭଃ । ୩୭ ।
ମହାକିରୀଟକଟକଃ ସ୍ଫୁରନ୍ମକରକୁଣ୍ଡଳଃ ।
କାଞ୍ଚ୍ୟଙ୍ଗୁଳୀୟବଳୟନୂପୁରାଙ୍ଗଦଭୂଷିତଃ । ୩୮ ।
ତ୍ରୈଲୋକ୍ୟମୋହନଂ ରୂପଂ ବିଭ୍ରତ୍ତ୍ରିଭୁବନେଶ୍ୱରଃ-
ବୃତୋ ନାରଦନନ୍ଦାଦ୍ୟୈଃ ପାର୍ଷଦୈଃ ସୁରଯୂଥପୈଃ ।
ସ୍ତୂୟମାନୋଽନୁଗାୟଦ୍ଭିଃ ସିଦ୍ଧଗନ୍ଧର୍ବଚାରଣୈଃ । ୩୯ ।

---

ତାହାଙ୍କ ଚରଣଦ୍ୱୟ ଗରୁଡ଼ ସ୍କନ୍ଧରେ ସ୍ଥାପିତ, ବିଶାଳ ଅଷ୍ଟବାହୁ ଜାନୁ ପର୍ଯ୍ୟନ୍ତ ଲମ୍ବିତ । ଶଙ୍ଖ, ଚକ୍ର, ଗଦା, ଖଡ୍ଗ, ଚର୍ମ, ବାଣ, ଧନୁ, ପାଶ ଏହି ଅଷ୍ଟବିଧବାଣ ତାହାଙ୍କ ହସ୍ତରେ ଶୋଭମାନ । ୩୬ ।

ସେ ପୀତବସନ, ନବୀନମେଘ ସଦୃଶ ଶ୍ୟାମଳବର୍ଣ୍ଣ, ତାହାଙ୍କର ବଦନ ଓ ନୟନଯୁଗଳ ପ୍ରସନ୍ନ, ଗଳଦେଶରୁ ପାଦ ପର୍ଯ୍ୟନ୍ତ ଲମ୍ବିତ ବନମାଳା, ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ ଓ କୌସ୍ତୁଭମଣି ଶୋଭା ପାଉଥିଲା । ୩୭ ।

ତାହାଙ୍କର ମସ୍ତକରେ ଉତ୍ତମ କିରୀଟ, ହସ୍ତରେ କଟକ ( ବଳୟ ) କର୍ଣ୍ଣରେ ମକରାକୃତି କୁଣ୍ଡଳ, କଟିରେ ମେଖଳା, ଅଙ୍ଗୁଳିରେ ଅଙ୍ଗୁରୀୟ, ଚରଣରେ ନୂପୁର, ବାହୁରେ ଅଙ୍ଗଦ ଶୋଭା ପାଉଥିଲା ।୩୮।

ଯାହାଙ୍କର ସୌନ୍ଦର୍ଯ୍ୟ ତ୍ରିଜଗତ ମୋହନକାରୀ, ନାରଦ ନନ୍ଦପ୍ରଭୃତି ପାର୍ଷଦଗଣ ଓ ଲୋକପାଳଗଣ ଯାହାଙ୍କୁ ଘେରି ରହିଅଛନ୍ତି ଏବଂ ସିଦ୍ଧ ଗନ୍ଧର୍ବଚାରଣ ପ୍ରଭୃତି ସ୍ତୁତି ଗାନ ଦ୍ୱାରା ଯାହାଙ୍କର ସେବା କରୁଅଛନ୍ତି ସେହି ଭଗବାନ ସେଠାରେ ଆବିର୍ଭୂତ ହୋଇଥିଲେ । ୩୯ ।

---

ଶୁଣ ହେ କୁରୁ ନୃପବର
ଭକ୍ତ ବତ୍ସଳ ଚକ୍ରଧର
ଆରୋହି ଖଗପତି ରାଜ
ଲମ୍ବ ସୁନ୍ଦର ଅଷ୍ଟଭୁଜ
ଶଙ୍ଖ ଚକ୍ର ଚର୍ମ୍ମ ଖଡ୍ଗ
ଗଦା ଅସି ପାଶ ଶାରଙ୍ଗ
ଧରିଣଛନ୍ତି ଅଷ୍ଟକର
ଅଦ୍ଭୁତ ରୂପ ମନୋହର ।୩୬।

ପୀତବସନ ଘନଶ୍ୟାମ
ବଦନ ଈକ୍ଷଣ ପ୍ରସନ୍ନ
ନିବୀତ ଅଙ୍ଗେ ବନମାଳ
ଶୋଭିତ ମକର କୁଣ୍ଡଳ
ଶ୍ରୀବତ୍ସ କଉସ୍ତୁଭ ସଙ୍ଗେ
କିରୀଟ କଙ୍କଣ ବିରାଜେ
କାଞ୍ଚି ଅଙ୍ଗଦ ରତ୍ନମୁଦି
ବଳୟ ନୂପୁର ପ୍ରସିଦ୍ଧି

ରୂପେ ତ୍ରୈଲୋକ୍ୟ ମନୋହର
ଧରିଣ ବ୍ରହ୍ମାଣ୍ଡ ଠାକୁର
ନନ୍ଦ ନାରଦ ଆଦି ଯେତେ
ବେଷ୍ଟିତ ହୋଇଣ ସମସ୍ତେ
ବିଷ୍ଣୁଙ୍କୁ କରନ୍ତି ଗାୟନ
ସିଦ୍ଧ ଗନ୍ଧର୍ବ ଯେ ଚାରଣ
ଅତି ଆଶ୍ଚର୍ଯ୍ୟ ରୂପ ହରି
ଦକ୍ଷ ଦେଖିଣ ଭୟ କରି

ରୂପଂ ତନ୍ମହଦାଶ୍ଚର୍ଯ୍ୟଂ ବିଚକ୍ଷାଗତସ୍ପାଧ୍ୱସଃ ।
ନନାମ ଦଣ୍ଡବଦ୍‌ଭୂମୌ ପ୍ରହୃଷ୍ଟାତ୍ମା ପ୍ରଜାପତିଃ । ୪୦ ।
ନ କିଞ୍ଚନୋଦୀରୟିତୁମଶକତ୍ ତୀବ୍ରୟା ମୁଦା ।
ଆପୂରିତମନୋଦ୍ୱାରୈର୍ହ୍ରଦିନ୍ୟ ଇବ ନିର୍ଝରୈଃ । ୪୧ ।
ତଂ ତଥାବନତଂ ଭକ୍ତଂ ପ୍ରଜାକାମଂ ପ୍ରଜାପତିମ୍ ।
ଚିତ୍ତଜ୍ଞଃ ସର୍ବଭୂତାନାମିଦମାହ ଜନାର୍ଦ୍ଦନଃ । ୪୨ ।

ଶ୍ରୀଭଗବାନୁବାଚ ।

ପ୍ରାଚେତସ ମହାଭାଗ ସଂସିଦ୍ଧିସ୍ତପସା ତବ ।
ଯଚ୍ଛ୍ରଦ୍ଧୟା ମତ୍ପରୟା ମୟି ଭାବଂ ପରଂ ଗତଃ । ୪୩ ।
ପ୍ରୀତୋଽହଂ ତେ ପ୍ରଜାନାଥ ଯତ୍ତେଽସ୍ୟୋଦ୍‌ବୃଂହଣଂ ତପଃ ।
ମମୈଷ କାମୋ ଭୂତାନାଂ ଯଦ୍‌ଭୂୟାସୁର୍ବିଭୂତୟଃ । ୪୪ ।

---

ପ୍ରଜାପତି ଦକ୍ଷ ଭଗବାନଙ୍କର ସେହି ଅଶ୍ଚର୍ଯ୍ୟରୂପ ଦର୍ଶନ କରି ପ୍ରଥମେ ଅତ୍ୟନ୍ତ ବିସ୍ମିତହେଲେ ଏବଂ ପରେ ଆନନ୍ଦ ଗଦ୍‌ଗଦ ଚିତ୍ତରେ ଭୂଲୁଣ୍ଠିତ ମସ୍ତକରେ ତାହାଙ୍କୁ ପ୍ରଣାମ କରିଥିଲେ । ୪୦ ।

ଝରଣାର ଜଳପ୍ରଣିରେ ନଦୀମାନେ ଯେପରି ପରିପୂର୍ଣ୍ଣ ହୁଅନ୍ତି ସେହିପରି ଅତ୍ୟନ୍ତ ଆନନ୍ଦରେ ଦକ୍ଷଙ୍କର ଇନ୍ଦ୍ରିୟମାନେ ପରିପୂର୍ଣ୍ଣ ହୋଇଥିଲେ, ତେଣୁ ତାଙ୍କର ବାକ୍ୟ ସ୍ଫୁରିଲା ନାହିଁ । ୪୧ ।

ଭଗବାନ୍ ସର୍ବ ପ୍ରାଣୀଙ୍କର ଅନ୍ତର୍ଗତ ଭାବ ବୁଝି ପାରନ୍ତି, ତେଣୁ ସେ ପ୍ରଣତ ଭକ୍ତ ଦକ୍ଷ ପ୍ରଜାପତିଙ୍କୁ ପ୍ରଜା ସୃଷ୍ଟି କରିବାର କାମୀ ବୋଲି ଜାଣିପାରି ତାହାଙ୍କୁ କହିଲେ । ୪୨ ।

ଶ୍ରୀଭଗବାନ୍ କହିଲେ :—

ହେ ପରମ ସୌଭାଗ୍ୟସମ୍ପନ୍ନ ଦକ୍ଷ ! ତୁମ୍ଭେ ଯେ ମୋ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ବଶତଃ ଏକାନ୍ତ ଭକ୍ତିମାନ୍ ହୋଇଅଛ ଏହା ଦ୍ୱାରା ତୁମ୍ଭର ତପସ୍ୟା ସିଦ୍ଧିଲାଭ କରିଅଛି । ୪୩ ।

ହେ ପ୍ରଜାନାଥ ! ତୁମ୍ଭର ଏହି ତପସ୍ୟା ବିଶ୍ୱର ଉନ୍ନତି ଜନକ । ମୁଁ ତୁମ୍ଭପ୍ରତି ପରମ ସନ୍ତୁଷ୍ଟ ହୋଇଅଛି କାରଣ ବିଶ୍ୱର ଉନ୍ନତି ହେଉ ଏହାହିଁ ମୋର ଇଚ୍ଛା । ୪୪ ।

---

ନମିଲା ଦଣ୍ଡବତ ହୋଇ
ଆନନ୍ଦ କେ ପାରିବ କହି ।୩୭-୪୦
ହରଷେ ବହ୍ଲଳିତ ମନ
ମୁଖରୁ ନସ୍ଫୁରେ ବଚନ
ଇନ୍ଦ୍ରିୟଙ୍କରେ ପୂର୍ଣ୍ଣ-ମନ
ଝର୍ଝରେ ହ୍ରଦନୀ ଯେସନ ।୪୧।
ମୋର ଭକତ ପ୍ରଜାକାମ
ଏମନ୍ତ ଜାଣି ଭଗବାନ
ସକଳ ପ୍ରାଣିଙ୍କର ମନ
ଜାଣନ୍ତି ପ୍ରଭୁ ଭଗବାନ
ପ୍ରଜାପତିଙ୍କୁ ବୁଝି ହରି
କଛି ବୋଇଲେ ଦୟା କରି ।୪୨।

ଶ୍ରୀ ଭଗବାନୁବାଚ—

ହେ ପ୍ରଚେତସ ମହାଭାଗ
ତୁମ୍ଭରେ ମୋର ଅନୁରାଗ
ଯେଣୁ ଭକତି ଦୃଢ଼ମନ
ଭଜିଲ ମୋହର ଚରଣ । ୪୩।
ପ୍ରସନ୍ନ ହେଲୁ ପ୍ରଜାନାଥ
ଯେଣୁ ତୋ ତପ ଜନ ହିତ
ଭକତମାନଙ୍କ ସମ୍ପତ୍ତି
ଅନୁବରତେ ମୁହିଁ ଚିନ୍ତି ।୪୪।

ବ୍ରହ୍ମା ଭବୋ ଭବନ୍ତଶ୍ଚ ମନବୋ ବିବୁଧେଶ୍ୱରାଃ ।
ବିଭୂତୟୋ ମମ ହ୍ୟେତା ଭୂତାନାଂ ଭୂତିହେତବଃ । ୪୫ ।
ତପୋ ମେ ହୃଦୟଂ ବ୍ରହ୍ମଂସ୍ତନୁର୍ବିଦ୍ୟା କ୍ରିୟାକୃତିଃ ।
ଅଙ୍ଗାନି କ୍ରତବୋ ଜାତା ଧର୍ମ ଆତ୍ମାସବଃ ସୁରାଃ । ୪୬ ।
ଅହମେବାସମେବାଗ୍ରେ ନାନ୍ୟତ୍ କିଞ୍ଚାନ୍ତରଂ ବହିଃ ।
ସଂଜ୍ଞାନମାତ୍ରମବ୍ୟକ୍ତଂ ପ୍ରସୁପ୍ତମିବ ବିଶ୍ୱତଃ । ୪୭ ।
ମୟ୍ୟନନ୍ତଗୁଣେଽନନ୍ତେ ଗୁଣତୋ ଗୁଣବିଗ୍ରହଃ ।
ଯଦାସୀତ୍ ତତ ଏବାଦ୍ୟଃ ସ୍ୱୟମ୍ଭୂଃ ସମଭୂଦଜଃ । ୪୮ ।
ସ ବୈ ଯଦା ମହାଦେବୋ ମମବୀର୍ଯ୍ୟୋପବୃଂହିତଃ ।
ମେନେ ଖିଲମିବାତ୍ମାନମୁଦ୍ୟତଃ ସର୍ଗକର୍ମଣି । ୪୯ ।

---

ବ୍ରହ୍ମା, ଶିବ, ମନୁଗଣ, ଶ୍ରେଷ୍ଠ ଦେବଗଣ ଏବଂ ପ୍ରଜାପତିଗଣ ବିଶ୍ୱର ଉନ୍ନତିକାରୀ, ଏମାନେ ମୋର ବିଭୂତି । ୪୫ ।

ହେ ବ୍ରାହ୍ମଣ ! ଯମ ନିୟମାଦି ସହ ଧ୍ୟାନ ମୋର ହୃଦୟ, ସାଙ୍ଗ ମନ୍ତ୍ର ଜପ ମୋର ଦେହ । ନିତ୍ୟ ନୈମିତ୍ତିକ ବୈଧକର୍ମାଦି ମୋର ଆକୃତି, ସମ୍ୟକ ଅନୁଷ୍ଠିତ ଯାଗାଦି ମୋର ଅଙ୍ଗ ପ୍ରତ୍ୟଙ୍ଗ, ଧର୍ମ ମୋହର ଅନ୍ତଃକରଣ ଏବଂ ଯଜ୍ଞଭୋକ୍ତା ଦେବଗଣ ମୋର ପ୍ରାଣ । ୪୬ ।

ଏହି ବିଶ୍ୱ ସୃଷ୍ଟି ପୂର୍ବରୁ ଏକମାତ୍ର ବିଦ୍ୟମାନ ଥିଲି ମୁଁ, ମୋ ଭିନ୍ନ ଅଭ୍ୟନ୍ତରସ୍ଥ ଜ୍ଞାତା କେହି ନାହିଁ କିମ୍ବା ବହିର୍ସ୍ଥିତ ଜ୍ଞେୟ ବସ୍ତୁ କିଛିନାହିଁ, ଇନ୍ଦ୍ରିୟମାନଙ୍କର ଅଗୋଚର କେବଳ ଚୈତନ୍ୟରୂପେ ସୁସୁପ୍ତ ତୁଲ୍ୟ ମୁଁ ବିରାଜମାନ ଥିଲି । ୪୭ ।

ମୁଁ ଅନନ୍ତ ! ଅନନ୍ତ ଗୁଣର ନିରାଧାର, ମାୟାଦ୍ୱାରା ଯେତେବେଳେ ମୋଠାରୁ ତ୍ରିଗୁଣାତ୍ମକ ବ୍ରହ୍ମ ପ୍ରକାଶିତ ହେଲା ସେତେବେଳେ ଆଦି ସୃଷ୍ଟିକର୍ତ୍ତା ସେହି ଅଯୋନିଜ ବ୍ରହ୍ମା ଆବିର୍ଭୂତ ହେଲେ । ୪୮ ।

ସେହି ଦେବଶ୍ରେଷ୍ଠ ବ୍ରହ୍ମା ମୋହର ପ୍ରଭାବରେ ପରିବର୍ଦ୍ଧିତ ହୋଇ ସୃଷ୍ଟି କାର୍ଯ୍ୟରେ ଉଦ୍ୟତ ହେଲେ ସେତେବେଳେ ସେ ନିଜକୁ ଅସମର୍ଥ ବୋଲି ବିବେଚନା କଲେ । ୪୯ ।

---

ବ୍ରହ୍ମା ଶଙ୍କର ମୁନିବର
ତୁମ୍ଭେ ଇନ୍ଦ୍ରାଦି ଦେବବର
ଉଦ୍ଭବ ପ୍ରାଣିମାନଙ୍କର
ତୁମ୍ଭେ ଯେ ବିଭୂତି ମୋହର ।୪୫
ତପସ୍ୟା ମୋହର ହୃଦୟ
ବେଦ ବେଦାଙ୍ଗ ମୋର ଦେହ
କ୍ରିୟା ଆକୃତି ମୋର ଜାଣ
ଯଜ୍ଞ ମୋହର ଅଙ୍ଗମାନ

ମୋହର ଆତ୍ମା ଧର୍ମ ଜାଣ
ଦେବତାମାନେ ମୋର ପ୍ରାଣ ।୪୬।
ବାହ୍ୟ ଅନ୍ତରେ ମୁହିଁ ଥାଇ
ସକଳ ଆବିର୍ଭୂତ ମୁହିଁ
ସଂସାରେ ସର୍ବରୂପ ହୋଇ
ଅବ୍ୟକ୍ତ ରୂପେ ମୁହିଁ ଥାଇ
ନାମରେ ଅବଶେଷ ହୋଇ
ମୋଠାରୁ ଅନ୍ୟ କେହି ନାହିଁ ।୪୭

ଅନନ୍ତ ଗୁଣେ ମୁଁ ଅନନ୍ତ
ମୋର ଗୁଣରେ ହୋଇ ଜାତ
ଗୁଣ ଶରୀରକୁ ଧରିଲେ
ସ୍ୱୟମ୍ଭୂ ଦେହକୁ ପାଇଲେ ।୪୮।
ସ୍ୱୟମ୍ଭୂ ସୃଜନେ ସଂସାର
ନ ଦେଖି ସମର୍ଥ ଆତ୍ମାର
ସୃଷ୍ଟି କରିବା ପରେ ଧରି
ଉଦ୍ୟମ ମୋର ବଳେ କରି

ଅଥ ମେଽଭିଷ୍ଟୁତୋ ଦେବସ୍ତପୋଽତପ୍ୟତ ଦାରୁଣମ୍ ।
ନବ ବିଶ୍ୱସୃଜୋ ଯୁଷ୍ମାନ୍ ଯେନାଦାବସୃଜଦ୍‌ବିଭୁଃ । ୫୦ ।
ଏଷା ପଞ୍ଚଜନସ୍ୟାଙ୍ଗ ଦୁହିତା ବୈ ପ୍ରଜାପତେଃ ।
ଅସିକ୍ନୀ ନାମ ପତ୍ନୀତ୍ୱେ ପ୍ରଜେଶ ପ୍ରତିଗୃହ୍ୟତାମ୍ । ୫୧ ।
ମିଥୁନବ୍ୟବାୟଧର୍ମସ୍ତ୍ୱଂ ପ୍ରଜାସର୍ଗମିମଂ ପୁନଃ ।
ମିଥୁନବ୍ୟବାୟଧର୍ମିଣ୍ୟାଂ ଭୂରିଶୋ ଭାବୟିଷ୍ୟସି । ୫୨ ।
ତ୍ୱତ୍ତୋଽଧସ୍ତାତ୍‌ପ୍ରଜାଃ ସର୍ବା ମିଥୁନୀଭୂୟ ମାୟୟା ।
ମଦୀୟୟା ଭବିଷ୍ୟନ୍ତି ହରିଷ୍ୟନ୍ତି ଚ ମେ ବଳିମ୍ । ୫୩ ।

ଶ୍ରୀଶୁକ ଉବାଚ ।

ଇତ୍ୟୁକ୍ତ୍ୱା ମିଷତସ୍ତସ୍ୟ ଭଗବାନ୍ ବିଶ୍ୱଭାବନଃ ।
ସ୍ୱପ୍ନୋପଲବ୍ଧାର୍ଥ ଇବ ତତ୍ରୈବାନ୍ତର୍ଦଧେ ହରିଃ । ୫୪ ।

---

ତଦନନ୍ତର ବ୍ରହ୍ମା ମୋର ଆଦେଶରେ ଅତି କଠୋର ତପସ୍ୟା କଲେ, ସେହି ତପଃ ପ୍ରଭାବରେ ପ୍ରଥମତଃ ତୁମ୍ଭ ନଅଜଣଙ୍କୁ ସୃଷ୍ଟି କରିଥିଲେ । ୫୦ ।

ହେ ଦକ୍ଷ ! ପଞ୍ଚଜନ ନାମକ ପ୍ରଜାପତିଙ୍କର କନ୍ୟା ଯେ ଏଠାରେ ଅଛନ୍ତି, ତାହାଙ୍କର ନାମ ଅସିକ୍ନୀ; ଏହାଙ୍କୁ ତୁମ୍ଭେ ପତ୍ନୀରୂପେ ଗ୍ରହଣ କର । ୫୧ ।

ସ୍ତ୍ରୀ-ପୁରୁଷଙ୍କର ରତିକ୍ରିୟା ଧର୍ମ ଅବଲମ୍ବନ କରି ତାଦୃଶ ଧର୍ମଶାଳିନୀ ଏହି ପତ୍ନୀଙ୍କ ଦ୍ୱାରା ବ୍ରହ୍ମାଙ୍କ ଆରବ୍ଧ ଲୋକ ସୃଷ୍ଟି ତୁମ୍ଭେ ବହୁଳ ପରିମାଣରେ ସମ୍ପାଦନ କର । ୫୨ ।

ତୁମ୍ଭର ପରବର୍ତ୍ତୀ ପ୍ରଜାବର୍ଗ ମୋର ମାୟା ପ୍ରଭାବରେ ଦାମ୍ପତ୍ୟ ଧର୍ମପରାୟଣ ହୋଇ ପୁତ୍ରାଦିରୂପେ ଉତ୍ପନ୍ନ ହେବେ ଏବଂ ମୋର ଉଦ୍ଦେଶ୍ୟରେ ପୂଜୋପହାରାଦି ପ୍ରଦାନ କରିବେ । ୫୩ ।

ଶ୍ରୀଶୁକଦେବ କହିଲେ :—

ଜଗତ୍‌କର୍ତ୍ତା ଭଗବାନ୍ ଏହିପରି କହି ହଠାତ୍ ଦକ୍ଷଙ୍କ ସମ୍ମୁଖରେ ସ୍ୱପ୍ନଦୃଷ୍ଟ ତୁଲ୍ୟ ଅନ୍ତର୍ହିତ ହୋଇଗଲେ । ୫୪ ।

---

ବୋଇଲୁଁ ଆମ୍ଭ ବାକ୍ୟ କରି
ଘୋର ତପସ୍ୟାକୁ ଆଚରି
ସୃଷ୍ଟି କରିତା ତୁମ୍ଭେ ଜାହିଁ
ତପରବଳେ ସୃଷ୍ଟିହୋଇ ।୪୯।୫୦।
ପଞ୍ଚଜନର ଏ କୁମାରୀ
ଅସିକ୍ନୀ ନାମ ଏ ସୁନ୍ଦରୀ
ଏହାକୁ ପତ୍ନୀଭାବେ ତୋର
ଗ୍ରହଣକରି ସୃଷ୍ଟି କର । ୫୧ ।

ମୈଥୁନେ ହେବ ବଡ ଶୋଭା
ଆନନ୍ଦେ ହୁଅ ଶୁଭେ ବିଭା
ତୁମ୍ଭର ଠାରୁ ପ୍ରଜା ଯେତେ
ମୈଥୁନେ ହୋଇବେ ଜଗତେ
ମୋର ମାୟାରେ ମୋହହେବେ
ହରଷେ ସଂସାର କରିବେ ।୫୨।୫୩।
ଏତେକ କହି ଭଗବାନ
ଅଖିଳ ସଂସାର କାରଣ

ସ୍ୱପ୍ନେ କହିଲ ପ୍ରାୟେ କରି
ଅନ୍ତର ହୋଇଲେ ମୁରାରି ।୫୪।
ବୋଲଇ ବିପ୍ର ଜଗନ୍ନାଥ
ଶ୍ରୀକୃଷ୍ଣ ଚରିତ ଅମୃତ ।



ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ହଂସଗୁହ୍ୟସ୍ତବୋ ନାମ ଚତୁର୍ଥୋଽଧ୍ୟାୟଃ । ୪ ।

---

**ବିଶଦାର୍ଥ—**

ଭଗବାନଙ୍କର ଅପୂର୍ବ ସୃଷ୍ଟି ପ୍ରସଙ୍ଗ ତୃତୀୟ ସ୍କନ୍ଧରେ ବର୍ଣ୍ଣିତ ହୋଇଅଛି, ପୃଥୁଙ୍କର ପ୍ରପୌତ୍ର ପ୍ରାଚୀନ ବର୍ହିଙ୍କର ଦଶପୁତ୍ର ପ୍ରଚେତା ନାମରେ ପ୍ରସିଦ୍ଧ, ସେମାନଙ୍କ ପ୍ରସଙ୍ଗ ଚତୁର୍ଥ ସ୍କନ୍ଧରେ ବର୍ଣ୍ଣିତ ହୋଇଅଛି । ଏଠାରେ ପୁଣି ରାଜା ପରୀକ୍ଷିତଙ୍କର ଅନୁରୋଧ ଅନୁସାରେ ଶ୍ରୀଶୁକଦେବ ସେହି ପ୍ରସଙ୍ଗ ପୁନର୍ବାର ଉଲ୍ଲେଖ କରିଥିଲେ । ପ୍ରଚେତାମାନେ ତପସ୍ୟା ସାଧନ କରି ଉଗ୍ର ତପସ୍ୱୀ ହୋଇଥିଲେ । ବୃକ୍ଷଲତାଦିଙ୍କର ଅଧିପତି ଚନ୍ଦ୍ର ସେମାନଙ୍କର ଏହି ଦୂରବସ୍ଥା ଦେଖି ପ୍ରଚେତାମାନଙ୍କୁ ସାନ୍ତ୍ୱନା ବାକ୍ୟ ଦ୍ୱାରା ଶାନ୍ତ କରିଥିଲେ ଏବଂ ବାର୍କ୍ଷୀନାମ୍ନୀ କନ୍ୟାକୁ ପତ୍ନୀରୂପେ ପ୍ରଦାନ କରିଥିଲେ । ଦକ୍ଷ ପ୍ରଜାପତି ବଂଶ ସମ୍ଭୂତ ଯେ ସୃଷ୍ଟି ବିସ୍ତାର ଉଦ୍ଦେଶ୍ୟରେ ବିନ୍ଧ୍ୟ ପର୍ବତର ପାଦ ଦେଶରେ ଅଘମର୍ଷଣମନ୍ତ୍ର ଜପ କରିଥିଲେ, ଅଘ ଅର୍ଥାତ୍ (ପାପକୁ) ଦମନ କରିବା ଲାଗି ଏହି ମନ୍ତ୍ର ଜପ କରିବାରୁ ଏହା ଅଘମର୍ଷଣ ନାମରେ ବିଖ୍ୟାତ। ବ୍ରାହ୍ମଣମାନେ ତ୍ରିସନ୍ଧ୍ୟା କଲାବେଳେ ଏହି ଅଘମର୍ଷଣ ମନ୍ତ୍ର ଜପ କରିଥାନ୍ତି । ପାପ ବିନଷ୍ଟ ହୋଇ ପୁଣ୍ୟ ହୃଦୟୀବ୍ୟକ୍ତି ଦ୍ୱାରା ପ୍ରଜାସୃଷ୍ଟି ହେଉ ଏହାହିଁ ଭଗବାନଙ୍କର ଅଭିପ୍ରେତ, ତେଣୁ ଦକ୍ଷ ପ୍ରଜାପତିଙ୍କର ପାପ ଦୂରୀଭୂତ ହେଲା ପରେ ସେ ଭଗବଦ୍ଦର୍ଶନ ଲାଭ କରିଥିଲେ । ପ୍ରଜାସୃଷ୍ଟି ଭଗବାନଙ୍କର ଉଦ୍ଦେଶ୍ୟ, ସମସ୍ତ ଗୃହତ୍ୟାଗୀ ସନ୍ନ୍ୟାସୀ ହେଲେ ପ୍ରଜାସୃଷ୍ଟିର ଉନ୍ନତି ହୋଇ ପାରିବ ନାହିଁ । ମାତ୍ର କାମୁକର ସନ୍ତାନ ଦ୍ୱାରା ପୃଥିବୀ ପୂର୍ଣ୍ଣ ହେଉ ତାହା ଅଭିପ୍ରେରିତ ନୁହେଁ । କାରଣ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ଯଥାକାଳରେ ସ୍ତ୍ରୀସଙ୍ଗମ କରି ପୁତ୍ର, କନ୍ୟାଜାତ କରିବା ବିହିତ । ତେଣୁ ଦୁଷ୍ଟା ସ୍ତ୍ରୀ କାମୁକା ନାରୀମାନଙ୍କୁ ଶ୍ରୀମଦ୍ଭଗବଦ୍-ଗୀତାରେ ନିନ୍ଦା କରି ଯାଇଅଛି ।

"ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ଜାୟତେ" ବର୍ଣ୍ଣ ସଙ୍କରଃ

କାରଣ ସ୍ତ୍ରୀମାନେ ଦୁଷ୍ଟାହେଲେ ସେମାନଙ୍କ ଗର୍ଭରୁ ଯେଉଁ ସନ୍ତାନ ଉତ୍ପନ୍ନ ହୁଅନ୍ତି ସେମାନେ ବର୍ଣ୍ଣସଙ୍କର । ସେମାନଙ୍କ ଦ୍ୱାରା ଜଗତର ଉନ୍ନତି ହୁଏ ନାହିଁ, ଦକ୍ଷପ୍ରଜାପତି ଭଗବାନଙ୍କଠାରୁ ପ୍ରଜାସୃଷ୍ଟି ନିମିତ୍ତ ଆଦେଶ ଲାଭ କରି ସେହି ଉଦ୍ଦେଶ୍ୟ ପୂରଣ ନିମିତ୍ତ ଅସିକ୍ନୀ ନାମ୍ନୀ କନ୍ୟାକୁ ଗ୍ରହଣ କରିଥିଲେ ଏବଂ ଭଗବତ୍ ଉଦ୍ଦେଶ୍ୟ ସାଧନରେ ବ୍ରତୀ ହୋଇଥିଲେ ।



## ପ ଞ୍ଚ ମ ଅ ଧ୍ୟା ୟ ।

ପଞ୍ଚମେ ନାରଦେନାଥ ବାଚକୂଟୈସ୍ତୁ ନାଶିତମ୍ ।
ସୁତାନାକର୍ଣ୍ଣ୍ୟ ଦକ୍ଷୋଽମୁଂ ଶଶାପେତି ନିରୂପ୍ୟତେ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀଶୁକ ଉବାଚ ।

ତସ୍ୟାଂ ସ ପାଞ୍ଚଜନ୍ୟାଂ ବୈ ବିଷ୍ଣୁମାୟୋପବୃଂହିତଃ ।
ହର୍ଯ୍ୟଶ୍ୱସଂଜ୍ଞାନୟୁତଂ ପୁତ୍ରାନଜନୟଦ୍‌ବିଭୁଃ । ୧ ।
ଅପୃଥଗ୍‌ଧର୍ମଶୀଲାସ୍ତେ ସର୍ବେ ଦାକ୍ଷାୟଣା ନୃପ ।
ପିତ୍ରା ପ୍ରୋକ୍ତାଃ ପ୍ରଜାସର୍ଗେ ପ୍ରତୀଚୀଂ ପ୍ରୟଯୁର୍ଦ୍ଦିଶମ୍ । ୨ ।
ତତ୍ର ନାରାୟଣସରସ୍ତୀର୍ଥଂ ସିନ୍ଧୁସମୁଦ୍ରୟୋଃ ।
ସଙ୍ଗମୋ ଯତ୍ର ସୁମହନ୍ମୁନିସିଦ୍ଧନିଷେବିତମ୍ । ୩ ।

---

### ନାରଦଙ୍କ ପ୍ରତି ଦକ୍ଷଙ୍କ ଶାପ ।

ପଞ୍ଚମ ଅଧ୍ୟାୟରେ ଦେବର୍ଷି ନାରଦ କପଟରେ ଦକ୍ଷପୁତ୍ରମାନଙ୍କୁ ନଷ୍ଟ କରନ୍ତେ ପ୍ରଜାପତି ଦକ୍ଷ କୁପିତ ହୋଇ ତାଙ୍କୁ ଶାପ ଦେବା ପ୍ରସଙ୍ଗ ବର୍ଣ୍ଣିତ ହୋଇ ଅଛି । ० ।

ଶ୍ରୀଶୁକଦେବ କହିଲେ :—

ପ୍ରଜାପତି ଦକ୍ଷ ବିଷ୍ଣୁମାୟାବଳରେ ବଳୀୟାନ୍ ହୋଇ ପଞ୍ଚଜନୀ ଗର୍ଭରେ ହର୍ଯ୍ୟଶ୍ୱ ନାମରେ ଅୟୁତ ପୁତ୍ର ଉତ୍ପାଦନ କରିଥିଲେ । ୧ ।

ହେ ମହାରାଜ ପରୀକ୍ଷିତ ! ଦକ୍ଷଙ୍କର ପୁତ୍ରମାନେ ଏକ ପ୍ରକାର ଆଚାର ସ୍ୱଭାବ ସମ୍ପନ୍ନ ଥିଲେ, ଦକ୍ଷ ସେମାନଙ୍କୁ ସନ୍ତାନ ସୃଷ୍ଟି କରିବାକୁ ଆଦେଶ ଦେବାରୁ, ସେମାନେ ପଶ୍ଚିମ ଦିଗକୁ ଗମନ କରିଥିଲେ । ୨ ।

ସେଠାରେ ପଶ୍ଚିମଦିଗରେ ସିନ୍ଧୁ ନଦ ଓ ସାଗର ସଙ୍ଗମସ୍ଥଳରେ ନାରାୟଣ ସରୋବର ନାମରେ ଯେଉଁ ତୀର୍ଥ ଅଛି ତାହାକୁ ମୁନି ଓ ସିଦ୍ଧଗଣ ବିଶେଷଭାବରେ ସେବା କରିଥାନ୍ତି । ୩ ।

---

ପଞ୍ଚମେ ନାରଦଙ୍କ କୂଟ,ବଚନେ ଦକ୍ଷପୁତ୍ର ନଷ୍ଟ । ହେବାର ଜାଣି ଦକ୍ଷକ୍ରୋଧେ,ଶାପ ଯେ ଦିହଲେ ନାରଦେ

ଶ୍ରୀ ଶୁକ ଉବାଚ—

ବିଷ୍ଣୁର ଆଜ୍ଞା ପ୍ରଭାବରୁ
ସେ ପଞ୍ଚଜନ କନ୍ୟାଠାରୁଁ
ହର୍ଯ୍ୟଶ୍ୱ ସଞ୍ଜ୍ଞାରେ ଅୟୁତ
ସେ ଦକ୍ଷ ଜନ୍ମାଇଲେ ସୁତ ।୧।

ପୃଥକ ଭାବ ତାଙ୍କ ନାହିଁ
ସକଳେ ଧର୍ମ୍ମପର ହୋଇ
ପିତାର ଆଜ୍ଞା ଘେନି ଶିରେ
ପ୍ରଜା ସର୍ଜ୍ଜନ କରିବାରେ
ଯେ ତୀର୍ଥ ନାରାୟଣ ସର
ସଙ୍ଗମ ସିନ୍ଧୁର ସାଗର

ସିଦ୍ଧ ମୁନିରେ ଯେ ସେବିତ
ସ୍ପରଶେ ପାପ କରେ ହତ
ସେ ସରୋବରକୁ ସେ ଯାଇ
ପରମହଂସ ଧର୍ମ୍ମ ବହି
ପିତା ଆଜ୍ଞାରେ ସେ ଯନ୍ତ୍ରିତ
ସାଧୁଥିଲେ ନାନା ଉଗ୍ରତପ

ତଦୁପସ୍ପର୍ଶନାଦେବ ବିନିର୍ଦ୍ଧୂତମଲାଶୟାଃ ।
ଧର୍ମ୍ମେ ପାରମହଂସ୍ୟେ ଚ ପ୍ରୋତ୍ପନ୍ନମତୟୋଽପ୍ୟୁତ । ୪ ।
ତେପିରେ ତପ ଏବୋଗ୍ରଂ ପିତ୍ରାଦେଶେନ ଯନ୍ତ୍ରିତାଃ ।
ପ୍ରଜାବିବୃଦ୍ଧୟେ ଯତ୍ତାନ୍ ଦେବର୍ଷିସ୍ତାନ୍ ଦଦର୍ଶ ହ । ୫ ।
ଉବାଚ ଚାଥ ହର୍ଯ୍ୟଶ୍ୱାଃ କଥଂ ସ୍ରକ୍ଷ୍ୟଥ ବୈ ପ୍ରଜାଃ ।
ଅଦୃଷ୍ଟ୍ୱାନ୍ତଂ ଭୁବୋ ଯୂୟଂ ବାଲିଶା ବତ ପାଲକାଃ । ୬ ।
ତଥୈକପୁରୁଷଂ ରାଷ୍ଟ୍ରଂ ବିଲଂ ଚାଦୃଷ୍ଟନିର୍ଗମମ୍ ।
ବହୁରୂପାଂ ସ୍ତ୍ରିୟଞ୍ଚାପି ପୁମାଂସଂ ପୁଂଶ୍ଚଳୀପତିମ୍ । ୭ ।
ନଦୀମୁଭୟତୋବାହାଂ ପଞ୍ଚପଞ୍ଚାଦ୍ଭୁତଂ ଗୃହମ୍ ।
କ୍ୱଚିଦ୍ଧଂସଂ ଚିତ୍ରକଥଂ କ୍ଷୌରପବ୍ୟଂ ସ୍ୱୟଂ ଭ୍ରମି । ୮ ।

---

ସେହି ତୀର୍ଥର ଜଳ ସ୍ପର୍ଶ କଲା ମାତ୍ରକେ ସେମାନଙ୍କ ହୃଦୟସ୍ଥ ବିଷୟାସକ୍ତି ପ୍ରଭୃତି ମଳ ଦୂରୀଭୂତ ହେଲା ଏବଂ ଆତ୍ମଜ୍ଞାନାଦି ସ୍ୱରୂପ ମୋକ୍ଷଧର୍ମ ସେମାନଙ୍କ ହୃଦୟରେ ଉତ୍ପନ୍ନ ହେଲା । ୪ ।

ପିତାଙ୍କର ପ୍ରଜାସୃଷ୍ଟି କରିବାକୁ ଆଦେଶ ଥିବାରୁ ସେମାନେ ବାଧ୍ୟ ହୋଇ କଠୋର ତପସ୍ୟା କଲେ । ପ୍ରଜା ବୃଦ୍ଧି କରିବା ନିମିତ୍ତ ଏମାନେ ଯତ୍ନବାନ୍ ହୋଇଅଛନ୍ତି ଏହା ନାରଦ ଦେଖିଲେ । ୫ ।

ନାରଦ ସେମାନଙ୍କୁ କହିଲେ :—

ହେ ହର୍ଯ୍ୟଶ୍ୱଗଣ ! ତୁମ୍ଭେମାନେ ବିଶ୍ୱପାଳକ ହୋଇ ନିତାନ୍ତ ଅଜ୍ଞ, ଭୂମିର ଅନ୍ତ ନ ଜାଣି କିପରି ପ୍ରଜା ସୃଷ୍ଟି କରିବ ? । ୬ ।

ପୁଣି ଏକମାତ୍ର ପୁରୁଷ ଯେଉଁ ରାଜ୍ୟରେ ଅଛନ୍ତି ଏବଂ ଯାହାଙ୍କ ପାଖରୁ କେହି କେବେ ଫେରି ନ ଆସେ ଏପରି ବହୁରୂପଧାରିଣୀ ସ୍ତ୍ରୀ ଏବଂ ବହୁପୁରୁଷଗାମିନୀ ରମଣୀର ସଂସର୍ଗ କାମିପୁରୁଷ ଏ ସମସ୍ତ ନ ଜାଣି କିପରି ପ୍ରଜା ସୃଷ୍ଟି କରିବ ? । ୭ ।

ଉଭୟ ଦିଗରେ ପ୍ରବାହବତୀ ନଦୀ ପଚିଶଂଶତି ଉପାଦାନରେ ରଚିତ ଅଦ୍ଭୁତ ଗୃହ ବିଚିତ୍ରବାକ୍ ଯୁକ୍ତ ହଂସ ଏବଂ ସ୍ୱାଧୀନ ଭାବରେ ଭ୍ରମଣଶୀଳ କ୍ଷୁରଧାରପରି ସୁତୀକ୍ଷ୍ଣ ଏବଂ ବଜ୍ରତୁଲ୍ୟ ସୁଦୃଢ଼ ପଦାର୍ଥମାନ ନ ଜାଣି ତୁମ୍ଭେମାନେ କିପରି ପ୍ରଜା ସୃଷ୍ଟି କରିବ । ୮ ।

---

ପ୍ରଜାର ବୃଦ୍ଧି କାମ କଲେ
ତପ ସାଧନେ ମନ ଦେଲେ
ନାରଦ ଆସି ତତକ୍ଷଣ
କହିଲେ ଅମୃତ ବଚନ । ୪-୫
ହର୍ଯ୍ୟଶ୍ୱେ ଶୁଣ ମୋ ଉତ୍ତର
କେମନ୍ତେ ତୁମ୍ଭେ ପ୍ରଜା କର

ପୃଥୀର ପରମାଣ କାହିଁ
କେବେକି ଦେଖିଅଛ କେହି
ତୁମ୍ଭେ ବାଳକ ବୁଦ୍ଧି କର
ସୃଷ୍ଟିକରିବାକୁ ବିଶ୍ୱର । ୬ ।
ଏକ ଗୋଟି ଯେ ରାଜ୍ୟ ଅଛି
ଏକ ପୁରୁଷ କାହିଁ ଅଛି

ଗର୍ତ୍ତର ଗୋଟିଏ ଅଛଇ
ଯହିଁରୁ କେହି ନ ଫେରଇ
ବହୁ ରୂପର ସ୍ତ୍ରୀଏ ଏକ
ଅଛି ପୁଂଶ୍ଚଳୀ ପତି ଏକ
ନଦୀଏ ବହେ ବେନି ଆଡ଼େ
ଘର ପଚିଶ ପଦାର୍ଥରେ

କଥଂ ସ୍ୱପିତୁରାଦେଶମବିଦ୍ୱାଂସୋ ବିପଶ୍ଚିତଃ ।
ଅନୁରୂପମବିଜ୍ଞାୟ ଅହୋ ସର୍ଗଂ କରିଷ୍ୟଥ । ୯ ।
ତନ୍ନିଶମ୍ୟାଥ ହର୍ଯ୍ୟଶ୍ୱା ଔତ୍ପତ୍ତିକମନୀଷୟା ।
ବାଚଃ କୂଟନ୍ତୁ ଦେବର୍ଷେଃ ସ୍ୱୟଂ ବିମମୃଶୁର୍ଧିୟା । ୧୦ ।
ଭୂଃ କ୍ଷେତ୍ରଂ ଜୀବସଂଜ୍ଞଂ ଯଦନାଦି ନିଜବନ୍ଧନମ୍ ।
ଅଦୃଷ୍ଟ୍ୱା ତସ୍ୟ ନିର୍ବାଣଂ କିମସତ୍କର୍ମଭିର୍ଭବେତ୍ । ୧୧ ।
ଏକ ଏବେଶ୍ୱରସ୍ତୁର୍ଯ୍ୟୋ ଭଗବାନ୍ ସ୍ୱାଶ୍ରୟଃ ପରଃ ।
ତମଦୃଷ୍ଟ୍ୱାଽଭବଂ ପୁଂସଃ କିମସତ୍କର୍ମଭିର୍ଭବେତ୍ । ୧୨ ।

---

ତୁମ୍ଭର ପିତା ସର୍ବଜ୍ଞ, ତାହାଙ୍କର ଆଦେଶର ଯଥାର୍ଥ ତତ୍ତ୍ୱ ନ ବୁଝି ତୁମ୍ଭେମାନେ ଅନଭିଜ୍ଞ ତୁଲ୍ୟ ସୃଷ୍ଟି କରିବ କପରି ? । ୯ ।

ହର୍ଯ୍ୟଶ୍ୱମାନେ ନାରଦଙ୍କର ଏହି ବାକ୍ୟ ଶୁଣି ଆପଣା ଆପଣାର ସ୍ୱାଭାବିକ ବୁଦ୍ଧିଶକ୍ତି ଦ୍ୱାରା ତହିଁର କୂଟାର୍ଥ ବୁଝି ପାରିଥିଲେ । ୧୦ ।

ଭୂ ଶବ୍ଦର ଅର୍ଥ କ୍ଷେତ୍ର ଅର୍ଥାତ୍ ଜୀବ ନାମକ ଲିଙ୍ଗଶରୀର ଏହା ଅନାଦି ଆତ୍ମାର ବନ୍ଧନର କାରଣ ତାହାର ଅନ୍ତ ଅର୍ଥାତ୍ ବିନାଶ ଚେଷ୍ଟା ନ କରି ବୃଥା ଅସତ୍ କର୍ମ ଦ୍ୱାରା କି ଫଳ ହେବ । ୧୧ ।

ଯେ ସର୍ବସାକ୍ଷୀ, ଯେ ନିଜେ ଆପଣାର ଆଧାର ସେହି ନିତ୍ୟ ମୁକ୍ତ, ସର୍ବଶ୍ରେଷ୍ଠ ଭଗବାନଙ୍କୁ ନ ଦେଖି ଅସତ୍‌କର୍ମ ଦ୍ୱାରା ଅର୍ଥାତ୍ ଯେଉଁ ସକଳ କର୍ମ ଈଶ୍ୱରଙ୍କଠାରେ ସମର୍ପିତ ହୁଏ ନାହିଁ ତଦ୍ୱାରା ପୁରୁଷର କି ଲାଭ ହେବ । ୧୨ ।

---

ବିଚିତ୍ର ନାଦ ହଂସ ଆର
ପଦାର୍ଥ ଅଛଇ ଅପର
ଘର ବକ୍ରରେ ପଡ଼ି ହୋଇ
ନିରତେ ଭ୍ରମଣ କରଇ
ତୁମ୍ଭେ ହୋ ନ ଜାଣ ଏମାନ
ନ ବୁଝି ପିତାର ବଚନ
କପରି ସୃଷ୍ଟି କରିବାରେ
ମନ ବଳାଅ ଅବସ୍ଥାରେ । ୭-୯ ।
ନାରଦ ତହୁଁ କୂଟବାଣୀ
ହର୍ଯ୍ୟଶ୍ୱେ ଶୁଣି ମନେ ଗୁଣି

କର୍ମ୍ମଜ ବୁଦ୍ଧି ତାହାଙ୍କର
ଏମନ୍ତେ କରନ୍ତି ବିଚାର । ୧୦ ।
ପୃଥିବୀ ଜୀବ ନାମ ହୋଇ
ଅନାଦି ବାସନାକୁ ପାଇ
ଯେଣୁ ଏ ବହଇ ଶରୀର
କାରଣ ଯେ ଆତ୍ମାବନ୍ଧର
ଅଦୃଶ୍ୟ ଏହାର ନିର୍ବାଣ
ତେଣୁ ନ ଜାଣି ପରିମାଣ
ଅସତ କର୍ମ୍ମ ପ୍ରବର୍ତ୍ତନେ
କି ଅର୍ଥ ଲଭି ଏ ସାଧନେ । ୧୧ ।

ଏକ ପୁରୁଷ ସେ ଈଶ୍ୱର
ସମସ୍ତ ସାକ୍ଷୀ ସେ ତୁରୀୟର
ନିତ୍ୟ ମୁକତ ଭଗବାନ
ତେଣେତ ନାହିଁ ଆତ୍ମ ଜ୍ଞାନ
ଅସତ କର୍ମ୍ମ ପ୍ରବର୍ତ୍ତନେ
କି ଅର୍ଥଲଭି ଏ ସାଧନେ । ୧୨ ।

ପୁମାନ୍ ନୈବୈତି ଯଦ୍‌ଗତ୍ୱା ବିଲସ୍ୱର୍ଗଂ ଗତୋ ଯଥା ।
ପ୍ରତ୍ୟଗ୍‌ଧାମାବିଦ ଇହ କିମସତ୍‌କର୍ମଭିର୍ଭବେତ୍ । ୧୩ ।
ନାନାରୂପାତ୍ମନୋ ବୁଦ୍ଧିଃ ସ୍ୱୈରିଣୀବ ଗୁଣାନ୍ୱିତା ।
ତନ୍ନିଷ୍ଠାମଗତସ୍ୟେହ କିମସତ୍‌କର୍ମଭିର୍ଭବେତ୍ । ୧୪ ।
ତତ୍‌ସଙ୍ଗଭ୍ରଂଶିତୈଶ୍ୱର୍ଯ୍ୟଂ ସଂସରନ୍ତଂ କୁଭାର୍ଯ୍ୟବତ୍ ।
ତଦ୍‌ଗତୀରବୁଧସ୍ୟେହ କିମସତ୍‌କର୍ମଭିର୍ଭବେତ୍ । ୧୫ ।
ସୃଷ୍ଟ୍ୟପ୍ୟୟକରୀଂ ମାୟାଂ ବେଲା-କୂଳାନ୍ତବେଗିତାମ୍ ।
ମତ୍ତସ୍ୟ ତାମବିଜ୍ଞସ୍ୟ କିମସତ୍‌କର୍ମଭିର୍ଭବେତ୍ । ୧୬ ।

---

ଲୋକ ଯେଉଁ ପରମଧାମ ପ୍ରାପ୍ତ ହେଲେ ପାତାଳକୁ ଗମନ କରେ, ସେ ଯେପରି ପ୍ରତ୍ୟାବର୍ତ୍ତନ ନ କରେ ସେହିପରି ଯାହାଙ୍କୁ ପ୍ରାପ୍ତ ହେଲେ ପୁରୁଷକୁ ଆଉ ଫେରି ଆସିବାକୁ ହୁଏ ନାହିଁ, ଜ୍ୟୋତିରୂପ ସେହି ବ୍ରହ୍ମଙ୍କୁ ନ ଜାଣି ଅସତ୍ ଅର୍ଥାତ୍ ନଶ୍ୱର ସ୍ୱର୍ଗାଦି ମିଳେ ସେହି କର୍ମକରି କି ଫଳ ଲଭି ? । ୧୩ ।

ଏହି ସଂସାରରେ ଜୀବର ବୁଦ୍ଧି ବେଶ୍ୟା ବା ଦୁଷ୍ଟା ରମଣୀ ତୁଲ୍ୟ ନାନାପ୍ରକାର ଗୁଣ ସମ୍ପନ୍ନା ଏବଂ ନାନାପ୍ରକାର ରୂପ ଧାରଣ କରି ବିମୋହିତ କରେ ସେହି ବୁଦ୍ଧିର ଅବସାନ ଅର୍ଥାତ୍ ବିବେକ ପ୍ରାପ୍ତ ନ ହୋଇ କେବଳ ଅସତ୍ କର୍ମ ଦ୍ୱାରା କି ଫଳ ? । ୧୪ ।

ଯାହାର ଭାର୍ଯ୍ୟା ଦୁଶ୍ଚରିତ୍ରା ତାହାର ସ୍ୱାତନ୍ତ୍ର୍ୟ ରକ୍ଷିତ ହୁଏ ନାହିଁ, ସେହିପରି ଏହି ବୁଦ୍ଧି ସହିତ ସଙ୍ଗ ହେତୁ ଜୀବ ସ୍ୱାତନ୍ତ୍ର୍ୟରୁ ଭ୍ରଷ୍ଟ ହୋଇଥାଏ, ସେହି ବୁଦ୍ଧିର ଅବସାନ ଅର୍ଥାତ୍ ବିବେକ ପ୍ରାପ୍ତ ନ ହୋଇ କେବଳ ଅସତ୍ କର୍ମ କଲେ କି ଫଳ ଅଛି ? । ୧୫ ।

ସୃଷ୍ଟି ଓ ପ୍ରଳୟ ଏହି ଉଭୟ ବିଗରେ ପ୍ରବାହିତା ମାୟାରୂପା ନଦୀ ସଂସାର ପ୍ରବାହରେ ପତିତ ଜୀବଗଣଙ୍କର ଉଦ୍ଧାର ପଥ ରୂପେ ତପସ୍ୟାଜ୍ଞାନାଦି ରୂପ ତୀର । ତାହା ନିକଟରେ ଏହି ମାୟାନଦୀ ଅତ୍ୟନ୍ତ ବେଗବତୀ । ଯେଉଁ ବ୍ୟକ୍ତି ବିଚାର କରିବାକୁ ଅସମର୍ଥ ହୋଇ ସେହି ମାୟାମୁଗ୍‌ଧ ହୁଏ ତାହା ପକ୍ଷରେ ଅସତ୍ କର୍ମ ଫଳରେ କି ଲାଭ ଅଛି । ୧୬ ।

---

ପୁରୁଷ ଯହିଁ ପ୍ରବେଶିଲେ
ବାହୁଡ଼ି ନ ଆସଇ ଭଲେ
ପାତାଳଗତ ପ୍ରାୟ ହୋଇ
ଜ୍ୟୋତି ସ୍ୱରୂପ ବ୍ରହ୍ମମୟୀ
ତହିଁରେ ଆମ୍ଭ ନାହିଁ ଜ୍ଞାନ
ଏ ସୃଷ୍ଟି କର୍ମ୍ମେ କି କାରଣ ।୧୩।
ଏ ବୁଦ୍ଧି ନାନାମାର୍ଗେ ଯାଇ
ଆତ୍ମା କାରଣ ନ ଜାଣଇ

ରଜ ତମରେ ବିମୋହିତ
ପୁଂଶ୍ଚଳୀ ପରାଏ ଚରିତ
ପୁଂଶ୍ଚଳୀ ସଙ୍ଗେ କରିଥିବ
କେବଳ ଶ୍ରମ ମାତ୍ର ଲଭି
କୁତ୍ସିତ ଭାର୍ଯ୍ୟା ଗୃହୀ ଯେହ୍ନେ
ନିରତେ ବଞ୍ଚିଇ କଷଣେ
ଏଣୁ ଅସତ ଅବିବେକ
କର୍ମ୍ମେ ବାକ ଲଭିଅ ଧିକ ।୧୪,୧୫

ଜନ୍ମ ମରଣ ବେଳ ବେଗେ
ମାୟା ନଦୀ ଯେ ବହେ ବେଗେ
ତହିଁ ପଡ଼ଣ ଜୀବ ଭ୍ରମେ
କି କାର୍ଯ୍ୟ ଅସତ କରମେ ।୧୬।

ପଞ୍ଚବିଂଶତିତତ୍ତ୍ୱାନାଂ ପୁରୁଷୋଽଦ୍‌ଭୁତଦର୍ପଣଃ ।
ଅଧ୍ୟାତ୍ମମବୁଧସ୍ୟେହ କିମସତ୍‌କର୍ମଭିର୍ଭବେତ୍ । ୧୭ ।
ଐଶ୍ୱରଂ ଶାସ୍ତ୍ରମୁତ୍ସୃଜ୍ୟ ବନ୍ଧମୋକ୍ଷାନୁଦର୍ଶନମ୍ ।
ବିବିକ୍ତପଦମଜ୍ଞାୟ କିମସତ୍‌କର୍ମଭିର୍ଭବେତ୍ । ୧୮ ।
କାଳଚକ୍ରଂ ଭ୍ରମି ତୀକ୍ଷ୍ଣଂ ସର୍ବଂ ନିଷ୍କର୍ଷୟତ୍‌ଜଗତ୍ ।
ସ୍ୱତନ୍ତ୍ରମବୁଧସ୍ୟେହ କିମସତ୍‌କର୍ମଭିର୍ଭବେତ୍ । ୧୯ ।
ଶାସ୍ତ୍ରସ୍ୟ ପିତୁରାଦେଶଂ ଯୋ ନ ବେଦ ନିବର୍ତ୍ତକମ୍ ।
କଥଂ ତଦନୁରୂପାୟ ଗୁଣବିସ୍ରମ୍ଭ୍ୟୁପକ୍ରମେତ୍ । ୨୦ ।
ଇତି ବ୍ୟବସିତା ରାଜନ୍ ହର୍ଯ୍ୟଶ୍ୱା ଏକଚେତସଃ ।
ପ୍ରୟୟୁସ୍ତଂ ପରିକ୍ରମ୍ୟ ପନ୍ଥାନମନିବର୍ତ୍ତନମ୍ । ୨୧ ।

---

ପରମପୁରୁଷ ଭଗବାନ୍ ପ୍ରକୃତି ପୁରୁଷାଦି ପଞ୍ଚବିଂଶତି ତତ୍ତ୍ୱର ଅଧିଷ୍ଠାନ । ଏହି ସଂସାରରେ ସେ ପ୍ରତି ଜୀବରେ ଅନ୍ତର୍ଯ୍ୟାମୀ ରୂପେ ବିରାଜମାନ ଅଛନ୍ତି, ଅର୍ଥାତ୍ ତାହାଙ୍କୁ ନ ଜାଣି ଅସତ୍ କର୍ମପଥ ଅବଲମ୍ବନ କରି ରହିଲେ କି ଫଳ ଅଛି । ୧୭ ।

ଈଶ୍ୱର ପ୍ରତିପାଦକ ଭକ୍ତ୍ୟାଦି ଶାସ୍ତ୍ରମତରେ ଚୈତନ୍ୟ ଓ ଜଡ଼ ପଦାର୍ଥ ପୃଥକରୂପେ ବିଶ୍ଳେଷ କରାଯାଏ ଏବଂ ନାନାପ୍ରକାର କଥା ଦ୍ୱାରା ବନ୍ଧ ଓ ମୋକ୍ଷ ସ୍ୱରୂପ ନିରୂପିତ ହୋଇଅଛି, ଅଭ୍ୟାସ ଅଭାବରେ ଏହି ଶାସ୍ତ୍ରର ତାତ୍ପର୍ଯ୍ୟ ନ ବୁଝି କେବଳ ଅସତ୍ କର୍ମ ପଥ ଅବଲମ୍ବନ କଲେ କି ଫଳ ହେବ ? । ୧୮ ।

ଏହି ସଂସାରରେ ଅତି ତୀବ୍ର କାଳଚକ୍ର ସର୍ବଦା ସ୍ୱାଧୀନ ଭାବରେ ଭ୍ରମଣକରୁଅଛି ଏବଂ ସମସ୍ତ ଜଗତକୁ ବିନାଶ ଆଡ଼କୁ ଘେନି ଯାଉଅଛି,ତାହାର ତତ୍ତ୍ୱ ନବୁଝି ଅସତ୍ କର୍ମପଥ ଅବଲମ୍ବନକଲେ କିଫଳହେବ? । ୧୯

ଶାସ୍ତ୍ର ସ୍ୱରୂପ ପିତାଙ୍କର ନିବୃତ୍ତି ଧର୍ମ ପ୍ରଯୋଜକ ଅନୁଶାସନ ବା ଆଦେଶ ଅବଗତ ନ ହୋଇ ଯେଉଁ ବ୍ୟକ୍ତି ଗୁଣମୟ ପ୍ରବୃତ୍ତିମାର୍ଗରେ ନିର୍ଭରଶୀଳ ହୁଏ ସେ ବ୍ୟକ୍ତି ନିବୃତ୍ତିମାର୍ଗର ଅନ୍ୟ ପ୍ରକାର ଆଚରଣ ନିମିତ୍ତ ସୃଷ୍ଟ୍ୟାଦି କାର୍ଯ୍ୟରେ କି ହେତୁ ପ୍ରବୃତ୍ତ ହେବ ? । ୨୦ ।

ହେ ରାଜନ ପରୀକ୍ଷିତ ! ହର୍ଯ୍ୟଶ୍ୱମାନେ ଏହିପରି ସିଦ୍ଧାନ୍ତରେ ଉପନୀତହୋଇ ସମସ୍ତେ ଏକମତ ଅବଲମ୍ବନ କରି ନାରଦଙ୍କୁ ପ୍ରଦକ୍ଷିଣକରି ଏପରି ପଥରେ ପ୍ରସ୍ଥାନକଲେ ଯେ ଆଉ କଦାପି ପ୍ରତ୍ୟାବର୍ତ୍ତନ କଲେନାହିଁ । ୨୧

---

ପଚିଶ ତତ୍ତ୍ୱେ ଗଢ଼ା ଦେହ
ଶ୍ରୀହରି ତହିଁର ଆଶ୍ରୟ
ତାହାଙ୍କୁ ନ ଜାଣିଣ ଭଲେ
କି ଲାଭ ତୁଚ୍ଛା କର୍ମ କଲେ । ୧୭ ।
ବିଚିତ୍ର ନାଦ, ହଂସ ସେହି
ଅଧ୍ୟାତ୍ମ ଶାସ୍ତ୍ର ଯେ ବୋଲଇ
ତହିଁର ତତ୍ତ୍ୱ ନ ଜାଣିଣ
ଅସତ କର୍ମରେ ଫୁଟନ୍ତି । ୧୮ ।
ଯା ଚକ୍ର ତୀକ୍ଷ୍ଣ କ୍ଷୁରଧାର
ବଜ୍ର କଠିନ ଯେଉଁ କାଳ
ସ୍ୱଚ୍ଛନ୍ଦେ କରଇ ଭ୍ରମଣ
ଜଗତ କରେ କରଷଣ
ତାହାର ଗତିକୁ ନ ବୁଝି
ଅସତ କର୍ମେ କେତେ ମଜ୍ଜି । ୧୯ ।
ଅଧ୍ୟାତ୍ମ ଶାସ୍ତ୍ର ପିତା ସମ
ନ ବୁଝି ତାହାର ମରମ
ପ୍ରବୃତ୍ତି ମାର୍ଗେ କରି କର୍ମ
କର୍ତ୍ତା ହୋଇବୁ ତୁଚ୍ଛା ଭ୍ରମ । ୨୦ ।
ଏମନ୍ତ ମନେ ବିଚାରିଲେ
ହର୍ଯ୍ୟଶ୍ୱେ ଏକମତ ହେଲେ
ନାରଦେ କରି ପ୍ରଦକ୍ଷିଣ
ଗଲେ ଅନିବର୍ତ୍ତ ପଥେଣ । ୨୧ ।

ସ୍ୱରବ୍ରହ୍ମଣି ନିର୍ଭାତହୃଷୀକେଶପଦାମ୍ବୁଜେ ।
ଅଖଣ୍ଡଂ ଚିତ୍ତମାବେଶ୍ୟ ଲୋକାନନୁଚରନ୍ମୁନିଃ । ୨୨ ।
ନାଶଂ ନିଶମ୍ୟ ପୁତ୍ରାଣାଂ ନାରଦାଚ୍ଛୀଳଶାଳିନାମ୍ ।
ଅନ୍ୱତପ୍ୟତ କଃ ଶୋଚନ୍ ସୁପ୍ରଜସ୍ତ୍ୱଂ ଶୁଚାଂ ପଦମ୍ । ୨୩ ।
ସ ଭୂୟଃ ପାଞ୍ଚଜନ୍ୟାୟାମଜେନ ପରିସାନ୍ତ୍ୱିତଃ ।
ପୁତ୍ରାନଜନୟଦ୍ଦକ୍ଷଃ ସବଳାଶ୍ୱାନ୍ ସହସ୍ରିଣଃ । ୨୪ ।
ତେ ଚ ପିତ୍ରା ସମାଦିଷ୍ଟାଃ ପ୍ରଜାସର୍ଗେ ଧୃତବ୍ରତାଃ ।
ନାରାୟଣସରୋ ଜଗ୍ମୁର୍ଯତ୍ର ସିଦ୍ଧାଃ ସ୍ୱପୂର୍ବଜାଃ । ୨୫ ।
ତଦୁପସ୍ପର୍ଶନାଦେବ ବିନିର୍ଧୂତମଲାଶୟାଃ ।
ଜପନ୍ତୋ ବ୍ରହ୍ମ ପରମଂ ତେପୁସ୍ତତ୍ର ମହତ୍ତପଃ । ୨୬ ।

ସେତେବେଳେ ନାରଦ ମୁନି ମଧ୍ୟ ଭଗବାନଙ୍କର ଗୁଣଗାନ କରି କରି ପ୍ରସ୍ଥାନ କଲେ, ତାହାଙ୍କର ସେହି ଗାନର ସ୍ୱର ଶବ୍ଦ ବ୍ରହ୍ମ ମଧ୍ୟରେ ଭଗବାନ୍ ଶ୍ରୀହରିଙ୍କର ସାକ୍ଷାତ୍ ଲାଭ କରି ସେ ତାହାଙ୍କ ଶ୍ରୀପାଦପଦ୍ମରେ ସମ୍ପୂର୍ଣ୍ଣ ଭାବରେ ମନ ସମର୍ପଣକରି ଇଚ୍ଛାନୁସାରେ ଜଗତରେ ପର୍ଯ୍ୟଟନକରିବାକୁ ଲାଗିଲେ ।୨୨

ତଦନନ୍ତର ଦକ୍ଷ ଶୁଣିଲେ ଯେ ତାହାଙ୍କର ସେହି ସାଧୁ ଚରିତ୍ର ପୁତ୍ରମାନେ ନାରଦଙ୍କ ଉପଦେଶ ଲାଭକରି ନିରୁଦ୍ଦେଶ ହୋଇ ଅଛନ୍ତି । ଏହା ଶୁଣି ସେ ଶୋକାକୁଳ ଚିତ୍ତରେ ଅନୁତାପ କରିବାକୁ ଲାଗିଲେ ଯେ ସୁପୁତ୍ର ଲାଭ କରିବା ଜନିତ ଶୋକର କାରଣ । ୨୩ ।

ଶୋକାକୁଳ ଦକ୍ଷ ବ୍ରହ୍ମାଙ୍କଠାରୁ ସାନ୍ତ୍ୱନା ଲାଭକରି ଆଶ୍ୱସ୍ତ ହେଲେ ପୁଣି ପାଞ୍ଚିଜନୀ ଗର୍ଭରେ ସବଳାଶ୍ୱ ନାମରେ ସହସ୍ରପୁତ୍ର ଉତ୍ପାଦନ କରିଥିଲେ । ୨୪ ।

ସବଳାଶ୍ୱମାନେ ପିତାଙ୍କର ଆଦେଶରେ ପ୍ରଜାସୃଷ୍ଟି କରିବା ନିମିତ୍ତ ନିୟମ ପାଳନ କରି ସେମାନେ ସେହି ନାରାୟଣ ସରୋବରକୁ ଗମନ କରିଥିଲେ । ଯେଉଁ ସ୍ଥାନକୁ ସେମାନଙ୍କର ଜ୍ୟେଷ୍ଠଭ୍ରାତାମାନେ ଗମନ କରି ସିଦ୍ଧିଲାଭ କରିଥିଲେ । ୨୫ ।

ନାରାୟଣ ସରୋବର ଜଳ ସ୍ପର୍ଶ କଲାମାତ୍ରେ ସେମାନଙ୍କର ହୃଦୟସ୍ଥିତ ମଳ ବିଦୂରିତ ହୋଇଥିଲା । ସେଠାରେ ସେମାନେ ପରଂବ୍ରହ୍ମ ସ୍ୱରୂପ ମହାମନ୍ତ୍ର ଜପକରି ପ୍ରଗାଢତପସ୍ୟା କରିଥିଲେ । ୨୬ ।

ଅଚ୍ୟୁତ ବ୍ରହ୍ମ ହୃଷୀକେଶ
ଅଖିଳ ପ୍ରଭୁ ପୀତବାସ
ଅଭୟପାଦ ପଙ୍କଜରେ
ଅଖଣ୍ଡ ଚିତ୍ତ ଥୋଇ ସ୍ଥିରେ
ଆନନ୍ଦ ହୋଇ ମୁନିବର
ଗମନ କଲେ ଛାଡିପୁର ।୨୨।
ସୁତମାନଙ୍କ ନାଶ ଶୁଣି
ନାରଦକୃତ ବୋଲି ଜାଣି
ପୁତ୍ରଙ୍କ ଗୁଣ ସୁମରିଲେ
ଦକ୍ଷ ଅନେକ ତାପ କଲେ ।୨୩।
ଅଜଙ୍କ ବାକ୍ୟେ ଶାନ୍ତ ହୋଇ
ପୁଣିହିଁ ପାଞ୍ଚିଜନ ତହିଁ
ବୀର୍ଯ୍ୟ ଆଧାନ କଲେ ଦକ୍ଷ
ପୁତ୍ର ଜନ୍ମିଲେ ସବଳାଶ୍ୱ
ସହସ୍ର ପରମିତ ହୋଇ
ସର୍ବେ ଜନ୍ମିଲେ ଦେହ ବହି
ପିତାର ଆଜ୍ଞାକୁ ଧରିଲେ
ପ୍ରଜା ସର୍ଜ୍ଜନେ ମନ ଦେଲେ
ଯେ ନାରାୟଣ ସରୋବର
ତହିଁକୁ ଗଲେ ଖରତର ।୨୪,୨୫
ସେ ତୀର୍ଥ ସଂସ୍ପର୍ଶ ମାତ୍ରକେ
ଧଉତ ହୋଇଲେ ପାତକେ
ପରମବ୍ରହ୍ମ ଜପକରି
ମହତ ତପକୁ ଆଚରି

ଅବ୍‌ଭକ୍ଷାଃ କତିଚନ୍ମାସାନ୍ କତିଚିଦ୍‌ବାୟୁଭୋଜନାଃ ।
ଆରାଧୟନ୍ ମନ୍ତ୍ରମିମମଭ୍ୟସ୍ୟନ୍ତ ଇଡସ୍ପତିମ୍ । ୨୭ ।
ଓଁ ନମୋ ନାରାୟଣାୟ ପୁରୁଷାୟ ମହାତ୍ମନେ ।
ବିଶୁଦ୍ଧସତ୍ତ୍ୱଧିଷ୍ଣ୍ୟାୟ ମହାହଂସାୟ ଧୀମହି । ୨୮ ।
ଇତି ତାନପି ରାଜେନ୍ଦ୍ର ପ୍ରଜାସର୍ଗଧିୟୋ ମୁନିଃ ।
ଉପେତ୍ୟ ନାରଦ ପ୍ରାହ ବାଚଃ କୂଟାନି ପୂର୍ବବତ୍ । ୨୯ ।
ଦାକ୍ଷାୟଣାଃ ସଂଶୃଣୁତ ଗଦତୋ ନିଗମଂ ମମ ।
ଅନ୍ୱିଚ୍ଛତାନୁପଦବୀଂ ଭ୍ରାତୃଣାଂ ଭ୍ରାତୃବତ୍ସଲାଃ । ୩୦ ।
ଭ୍ରାତୃଣାଂ ପ୍ରାୟଣଂ ଭ୍ରାତା ଯୋଽନୁତିଷ୍ଠତି ଧର୍ମବିତ୍ ।
ସ ପୁଣ୍ୟବନ୍ଧୁଃ ପୁରୁଷୋ ମରୁଦ୍‌ଭିଃ ସହ ମୋଦତେ । ୩୧ ।

---

ସେମାନେ କେତେକ ମାସ କେବଳ ଜଳପାନ ଓ କେତେକମାସ ବାୟୁ ସେବନ କରି ସେହି ମନ୍ତ୍ର ଜପ କରି ମନ୍ତ୍ରାଧିପତି ବିଷ୍ଣୁଙ୍କ ଆରାଧନା କରିଥିଲେ । ୨୭ ।

ବିଶୁଦ୍ଧ ସତ୍ତ୍ୱଗୁଣର ଆଶ୍ରୟ, ପରମହଂସସ୍ୱରୂପ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରାତ୍ମକ ପୁରୁଷୋତ୍ତମ ନାରାୟଣଙ୍କୁ ପ୍ରଣାମ ଓ ଧ୍ୟାନ କରିଥିଲେ । ୨୮ ।

ହେ ମହାରାଜ ! ଏହାପରେ ସମୟରେ ଦେବର୍ଷି ନାରଦ ସେଠାକୁ ଆଗମନ କରି ସବଳାଶ୍ୱମାନଙ୍କୁ ପୂର୍ବପରି ନିଗୂଢ଼ ବାକ୍ୟମାନ କହିଥିଲେ । ୨୯ ।

ହେ ଦକ୍ଷପୁତ୍ର ସବଳାଶ୍ୱଗଣ ! ମୁଁ ଯେଉଁ ଉପଦେଶ ଦେଉଛି ତାହା ଶ୍ରବଣ କର । ତୁମ୍ଭେମାନେ ଭ୍ରାତୃବତ୍ସଳ ଅର୍ଥାତ୍ ତୁମ୍ଭମାନଙ୍କ ହୃଦୟରେ ଜ୍ୟେଷ୍ଠଭ୍ରାତାଙ୍କ ପ୍ରତି ଅନୁରାଗ ରହିଅଛି । ସେମାନେ ଯେଉଁ ପଥର ପଥିକ ହୋଇ ଅଛନ୍ତି ତୁମ୍ଭେମାନେ ସେହିପଥ ଅବଲମ୍ବନ କର । ୩୦ ।

ଯେଉଁ ଧର୍ମଜ୍ଞ ଭ୍ରାତା ଭ୍ରାତୃମାନଙ୍କ ଅବଲମ୍ବିତ ପ୍ରକୃଷ୍ଟପନ୍ଥା ଅନୁସରଣ କରନ୍ତି ସେ ଧର୍ମ ସହାୟରେ ଦେବଗଣଙ୍କ ସହିତ ମିଳିତ ହୋଇ ଆନନ୍ଦ ଅନୁଭବ କରନ୍ତି । ୩୧ ।

---

କେତେହେଁ ଦିନ ଜଳାହାରେ
ରହିଲେ ପବନ ଆହାରେ
ଏମନ୍ତ କରି ଆରାଧନ
ସ୍ମରଣ କଲେ ନାରାୟଣ ।୨୭,୨୭
ଓଁ ନମୋ ପ୍ରଭୁ ଭଗବାନ
ଓ ନମୋ ପ୍ରଭୁ ନାରାୟଣ
ଅଶେଷ ପୁରୁଷ ପୁରାଣ
ଅନାଦି ପ୍ରଭୁ ନିରଞ୍ଜନ

ବିଶୁଦ୍ଧ ସତ୍ତ୍ୱ ମହାହଂସ
ନମସ୍ତେ ପ୍ରଭୁ ହୃଷୀକେଶ ।୨୮।
ଏମନ୍ତ ପ୍ରକାରେ ରାଜନ
ପ୍ରଜା ନିମିତ୍ତେ ଦେଇ ମନ
ତପ ସେ କରୁଥିଲେ ଯହିଁ
ନାରଦ ମୁନି ତାଙ୍କୁ ତହିଁ
କପଟ କରିଣ ବଚନ
ବୋଇଲେ ଶୁଣ ହେ ନନ୍ଦନ

ଜ୍ୟେଷ୍ଠ ଭାଇ ମାନଙ୍କର
ନପାଇଁ ତୁମ୍ଭେ ହେ ନ କର
ଭ୍ରାତୃବତ୍ସଳ ତୁମ୍ଭେମାନେ
ଏ କର୍ମ୍ମ ନକର କେସନେ ।୨୯,୩୦
ଭାଇର ଦୁଃଖେ ଯେହୁ ଦୁଃଖୀ
ସେ ପ୍ରାଣୀ ସର୍ବକାଳେ ସୁଖୀ
ତାହାକୁ ପୁଣ୍ୟବନ୍ତ କହି
ଦେବଙ୍କ ସଙ୍ଗେ ସ୍ୱର୍ଗେ ଯାଇ ।୩୧

ଏତାବଦୁକ୍ତ୍ୱା ପ୍ରଯଯୌ ନାରଦୋଽମୋଘଦର୍ଶନଃ ।
ତେଽପି ଚାନ୍ୱଗମନ୍ମାର୍ଗଂ ଭ୍ରାତୃଣାମେବ ମାରିଷ । ୩୨ ।
ସାଧ୍ରୀଚୀନଂ ପ୍ରତୀଚୀନଂ ପରସ୍ୟାନୁପଥଂ ଗତାଃ ।
ନାଦ୍ୟାପି ତେ ନିବର୍ତ୍ତନ୍ତେ ପଶ୍ଚିମା ଯାମିନୀରିବ । ୩୩ ।
ଏତସ୍ମିନ୍ କାଲ ଉତ୍ପାତାନ୍ ବହୂନ୍ ପଶ୍ୟନ୍ ପ୍ରଜାପତିଃ ।
ପୂର୍ବବନ୍ନାରଦକୃତଂ ପୁତ୍ରନାଶମୁପାଶୃଣୋତ୍ । ୩୪ ।
ଚୁକ୍ରୋଧ ନାରଦାୟାସୌ ପୁତ୍ରଶୋକବିମୂର୍ଚ୍ଛିତଃ ।
ଦେବର୍ଷିମୁପଲଭ୍ୟାହ ରୋଷାଦ୍ୱିସ୍ଫୁରିତାଧରଃ । ୩୫ ।

---

ହେ ମାରିଷ (ଆର୍ଯ୍ୟସମ୍ବୋଧିତ) ! ଯେ ଅମୋଘ ଦର୍ଶନ ଅର୍ଥାତ୍ ଯାହାଙ୍କ ଦର୍ଶନ କଦାପି ବ୍ୟର୍ଥ ହୁଏ ନାହିଁ ସେହି ନାରଦ ମୁନି ଏହା କହି ପ୍ରସ୍ଥାନ କଲେ ଏବଂ ସବଳାଶ୍ୱମାନେ ଜ୍ୟେଷ୍ଠ ଭ୍ରାତାମାନଙ୍କର ପନ୍ଥା ଅବଲମ୍ବନ କଲେ । ୩୨ ।

ଭଗବାନଙ୍କୁ ପାଇବାର ଉପଯୁକ୍ତ ପନ୍ଥା ନିବୃତ୍ତି ମାର୍ଗ, ତାହା ଅତି ସମୀଚୀନ । ଇନ୍ଦ୍ରିୟ ବୃତ୍ତି ଉପ୍ୟକରି ତାହା ଲାଭ କରିବାକୁ ହୁଏ, ସବଳାଶ୍ୱ ମାନେ ସେହି ନିବୃତ୍ତି ମାର୍ଗ ଆଶ୍ରୟକରି ଗତରାତ୍ରିରେ ସ୍ୱପ୍ନ ଦେଖିଲା ପରି ଅଦ୍ୟାପି ଆଉ ପ୍ରତ୍ୟାବର୍ତ୍ତନ କରି ନାହାନ୍ତି । ୩୨ ।

ଏହି ସମୟରେ ଦକ୍ଷ ନାନା ଅମଙ୍ଗଳ ଚିହ୍ନ ଦେଖିଲେ ଏବଂ ଶୁଣିଲେ ତାଙ୍କର ଏ ପୁତ୍ରମାନେ ମଧ୍ୟ ନାରଦଙ୍କ ଉପଦେଶ ଲାଭକରି ନିରୁଦ୍ଦେଶ ହୋଇ ଅଛନ୍ତି । ୩୪ ।

ପୁତ୍ର ଶୋକରେ ଅଧୀର ଦକ୍ଷ ନାରଦଙ୍କୁ ସମ୍ମୁଖରେ ଦେଖି ,ତାହାଙ୍କ ପ୍ରତି ଅତ୍ୟନ୍ତ କୁପିତ ହେଲେ ଏବଂ ସେ ଅଧର କମ୍ପିତ କରି କହିଲେ । ୩୫ ।

---

ଏମନ୍ତ କହି ତାଙ୍କ ଆଗେ
ନାରଦ ଗଲେ ଶୂନ୍ୟ ମାର୍ଗେ
ସେ ପୁଣି ଋଷିମାନଙ୍କର
ଉପଦେଶେ ଗଲେ ନୃପବର
ଭାଇର ଖୋଜେ ଯେବେ ଗଲେ
ଅଦ୍ୟାପି ଫେରି ନୋହିଲେ

ପଶ୍ଚିମ ରାତ୍ରି ପ୍ରାପ୍ତ ହୋଇ
ନିବୃତ୍ତି ତାଙ୍କ ଆଉ ନାହିଁ ।୩୨,୩୩
ଏକାଳେ ଉତପାତ ବହୁ
ଦକ୍ଷ ଜାଣିଲେ ପୁଣ ତହୁଁ
ପୁତ୍ରମାନଙ୍କ ନାଶ ଶୁଣି
ନାରଦକୃତ ବୋଲି ଜାଣି

ପୁତ୍ର ଶୋକରେ ମୋହ ହୋଇ
ନାରଦେ ଅତି କ୍ରୋଧ ବହି
ନାରଦ ନିକଟେ ମିଳିଲେ
ଦେଖି ନାରଦ ଭୟ କଲେ
କମ୍ପାଇ କୋପରେ ଅଧର
ନାରଦେ ବୋଲନ୍ତି ଉତ୍ତର ।୩୪,୩୫

ଶ୍ରୀଦକ୍ଷ ଉବାଚ ।

ଅହୋ ଅସାଧୋ ସାଧୂନାଂ ସାଧୁଲିଙ୍ଗେନ ନସ୍ତ୍ୱୟା ।
ଅସାଧ୍ୱକାର୍ଯ୍ୟର୍ଭକାଣାଂ ଭିକ୍ଷୋମାର୍ଗଃ ପ୍ରଦର୍ଶିତଃ । ୩୬ ।
ଋଣୈସ୍ତ୍ରିଭିରମୁକ୍ତାନାମମୀମାଂସିତକର୍ମଣାମ୍ ।
ବିଘାତଃ ଶ୍ରେୟସଃ ପାପ ଲୋକୟୋରୁଭୟୋଃ କୃତଃ । ୩୭ ।
ଏବଂ ତ୍ୱଂ ନିରନୁକ୍ରୋଶୋ ବାଲାନାଂ ମତିଭିଦ୍ଧରେଃ ।
ପାର୍ଷଦମଧ୍ୟେ ଚରସି ଯଶୋହା ନିରପତ୍ରପଃ । ୩୮ ।
ନନୁ ଭାଗବତା ନିତ୍ୟଂ ଭୂତାନୁଗ୍ରହକାତରାଃ ।
ଋତେ ତ୍ୱାଂ ସୌହୃଦଘ୍ନଂ ବୈ ବୈରଙ୍କରମବୈରିଣାମ୍ । ୩୯ ।

---

ଶ୍ରୀଦକ୍ଷ କହିଲେ :—

ହେ ଦୁଷ୍ଟ ନାରଦ ! ତୁମ୍ଭେ ସାଧୁପୁରୁଷ ମାନଙ୍କ ତୁଲ୍ୟ ବେଶଧାରଣ କରିଅଛ କିନ୍ତୁ ମୁଁ ତୁମ୍ଭର କୌଣସି ଅହିତ କାମନା କେବେ କରିନାହିଁ, ତଥାପି ତୁମ୍ଭେ ମୋର ଅପରିଣତ ବୟସ୍କ ପୁତ୍ରମାନଙ୍କ ପ୍ରତି ଛତାନ୍ତ ଅହିତ ଆଚରଣ କରିଅଛ ଏବଂ ସେମାନଙ୍କୁ ସନ୍ନ୍ୟାସୀ ଜନୋଚିତ ଉପଦେଶ ଦେଇଅଛ । ୩୬ ।

ମୋର ପୁତ୍ରମାନେ କର୍ମପନ୍ଥା ନିର୍ଣ୍ଣୟ କରି ପାରିଲେ ନାହିଁ ଏବଂ ଆର୍ଷ, ଦୈବ ଏବଂ ପୈତ୍ର ଏହି ତ୍ରିବିଧ ଋଣରୁ ମୁକ୍ତ ହୋଇ ପାରିଲେ ନାହିଁ । ସେମାନଙ୍କର ଇହ ପର ଉଭୟ କାଳର ମଙ୍ଗଳରେ ବ୍ୟାଘାତ ଘଟିଲା । ୩୭ ।

ଏହିପରି ତୁମ୍ଭେ ଅପରିଣତ ବୟସ୍କବାଳକମାନଙ୍କର ବୁଦ୍ଧି ଭ୍ରମ ଘଟାଇଅଛ । ତୁମ୍ଭେ ଅତି ନିର୍ଦ୍ଦୟ ଓ ନିର୍ଲଜ, ତୁମ୍ଭେ ଯେଉଁ ଭଗବାନଙ୍କର ପାରିଷଦ ଗଣଙ୍କ ମଧ୍ୟରେ ବିଚରଣ କରୁଅଛ ତାହାଙ୍କର ଯଶ ମଧ୍ୟ ନଷ୍ଟ କରିଅଛ । ୩୮ ।

ହେ ନାରଦ ! ଯେଉଁମାନେ କଦାପି ତୁମ୍ଭପ୍ରତି ଶତ୍ରୁତାଚରଣ କରିନାହାନ୍ତି ତୁମ୍ଭେ ସେମାନଙ୍କ ପ୍ରତି ମଧ୍ୟ ଶତ୍ରୁତା କଲ ଓ ସେମାନଙ୍କ ସ୍ନେହ ନଷ୍ଟ କଲ । ତୁମ୍ଭ ବ୍ୟତୀତ ଭଗବତ୍ ପରାୟଣ ସମସ୍ତେ ଜୀବପ୍ରତି ସର୍ବଦା ଅନୁଗ୍ରହ ପ୍ରକାଶ କରିଥାନ୍ତି । ୩୯ ।

---

ଶ୍ରୀ ଦକ୍ଷ ଉବାଚ—

ଅହୋ ଅସାଧୁ ! ସାଧୁଙ୍କର
ଚିହ୍ନକୁ ବହୁ ଅଙ୍ଗେ ତୋର
ଯେଣୁ ମୋ ବାଳକଙ୍କୁ ଭିକ୍ଷୁ
ଉଚିତ ମାର୍ଗକୁ ଦେଖାଇ ।୩୬।
ତିନି ଋଣରୁ ଯେ ଅମୁକ୍ତ
ନୋହିଛି କର୍ମ ସମାପତ
ଶ୍ରେୟ କାରଣ ତାଙ୍କ ତପ
କି କାର୍ଯ୍ୟେ ନଷ୍ଟକଲୁ ପାପ । ୩୭।
କେମନ୍ତେ ଭକ୍ତ ବୋଲି ତୋତେ
ସଜ୍ଜନେ ବୋଲନ୍ତି ଜଗତେ
ଈଶ୍ୱର ପାରିଷଦ ହେଇ
ମଧ୍ୟ ଜନ୍ମରେ ଛଡେ଼ୟ ଥାଇ ।୩୮।
ଯେ ଜନ ବିଷ୍ଣୁ ଭକ୍ତ ହୋଏ
ପ୍ରାଣୀଙ୍କୁ କରନ୍ତି ସଦୟେ
ତୁ ମିତ୍ରଦ୍ରୋହୀ ପାପୀ ହେଇ
ଏ କର୍ମ କରେ ଅବା କେହୁ
ନିର୍ବୈରଠାରେ ଶତ୍ରୁପଣ
କପାଇଁ କଲୁ ଅକାରଣ
ସୁହୃଦ ଲୋକେ ନୋଧଭିର
ତୋ ଚିତ୍ତେ ନାହିଁ ନା ଅସର ।୩୯।

ନେତ୍ଥଂ ପୁଂସାଂ ବିରାଗଃ ସ୍ୟାତ୍ ତ୍ୱୟା କେବଲିନା ମୃଷା ।
ମନ୍ୟସେ ଯଦ୍ୟୁପଶମଂ ସ୍ନେହପାଶନିକୃନ୍ତନମ୍ । ୪୦ ।
ନାନୁଭୂୟ ନ ଜାନାତି ପୁମାନ୍ ବିଷୟତୀକ୍ଷ୍ଣତାମ୍ ।
ନିର୍ବିଦ୍ୟତେ ସ୍ୱୟଂ ତସ୍ମାନ୍ନ ତଥା ଭିନ୍ନଧୀଃ ପରୈଃ । ୪୧ ।
ଯଦସ୍ତ୍ୱଂ କର୍ମସନ୍ଧାନାଂ ସାଧୂନାଂ ଗୃହମେଧିନାମ୍ ।
କୃତବାନସି ଦୁର୍ମର୍ଷଂ ବିପ୍ରିୟଂ ତବ ମର୍ଷିତମ୍ । ୪୨ ।
ତନ୍ତୁକୃନ୍ତନ ଯନ୍ନସ୍ତ୍ୱମଭଦ୍ରମଚରଃ ପୁନଃ ।
ତସ୍ମାଲ୍ଲୋକେଷୁ ତେ ମୂଢ଼ ନ ଭବେଦ୍ଭ୍ରମତଃ ପଦମ୍ । ୪୩ ।

---

ତୁମ୍ଭେ ମନେ କରୁଥିବ ନିବୃତ୍ତି ମାର୍ଗ ଆସକ୍ତି, ବନ୍ଧନ ଛେଦନ କରିପାରେ କିନ୍ତୁ ତୁମ୍ଭେ ବୃଥା ଭଣ୍ଡବେଶ ଧାରଣ କରି ଏପରି ବୁଦ୍ଧି ବିପର୍ଯ୍ୟୟ ଘଟାଇଲେ ମଧ୍ୟ ଏଥିରେ ଲୋକମାନେ ଯଥାର୍ଥରେ ବୈରାଗ୍ୟ ଲାଭ କରି ପାରିବେ ନାହିଁ । ୪୦ ।

ଉପଭୋଗ ନ କରି ଜୀବ ବିଷୟର ତୀକ୍ଷ୍ଣତା ବା ଦୁଃଖ ଅନୁଭବ ନ କରିପାରେ । ଉପଭୋଗ ଦ୍ୱାରା ଯେଉଁ ଜ୍ଞାନ ଜନ୍ମେ ତାହାର ଫଳରେ ଲୋକ ଯେଉଁ ଜ୍ଞାନ ଲାଭକରେ, ଅନ୍ୟର ଉପଦେଶରେ ସେପରି ଲାଭ କରେ ନାହିଁ । ୪୧ ।

ଆମ୍ଭେମାନେ ସଦାଚାର ପରାୟଣ ଗୃହସ୍ଥ, କର୍ମପଥହିଁ ଆମ୍ଭମାନଙ୍କର ମର୍ଯ୍ୟାଦା, ତୁମ୍ଭେ ଯେ ଆମ୍ଭମାନଙ୍କ ପ୍ରତି ଅସହ୍ୟ ଅପ୍ରିୟ ଆଚରଣ କରିଅଛ ତାହା କ୍ଷମା କଲୁ । ୪୨ ।

ହେ ତନ୍ତୁକୃନ୍ତନ (ସନ୍ତାନଛେଦକ) ! ତୁମ୍ଭେ ବାରମ୍ବାର ଆମ୍ଭମାନଙ୍କର ଯେଉଁ ଅନିଷ୍ଟ ଆଚରଣ କରିଅଛ ସେଥିପାଇଁ ତୁମ୍ଭେ ତ୍ରିଭୁବନରେ ବିଚରଣ କଲେ ମଧ୍ୟ କୌଣସିଠାରେ ସ୍ଥାନ ପାଇବ ନାହିଁ ।୪୩

---

ପ୍ରାଣୀମାନଙ୍କ ସ୍ନେହ ପାଶ
ଏରୂପେ ନୁହଇ ବିନାଶ
କଠୋର ବୈରାଗ୍ୟ ସାଧନ
ଯହିଁ ସ୍ନେହପାଶ ଛେଦନ
ବିଷୟ କର୍ମ ଯେତୁ ଜନ
ନ ଜାଣି କରେ ଅନୁମାନ

ଏମନ୍ତ ଅଳ୍ପବୁଦ୍ଧିମାନେ
ହିତ ଅହିତକୁ ନ ଜାଣେ ।୪୦,୪୧
ତୁ ଯେଉଁ କାରଣରୁ କରି
ସାଧୁଙ୍କୁ ଅପରାଧ ଆଚରି
ସ୍ୱକର୍ମ ବନ୍ଧ ଗୃହମଧ୍ୟେ
ପରର ହିତେ ଯାର ବୁଦ୍ଧି

ତାଙ୍କୁ ଅମାର୍ଗ ଦେଖାଇଲୁ
ବାରେକ ଆମ୍ଭେ ତା ସହିଲୁ
ମୂଢ଼ ତୁ ଆମ୍ଭ ଶାପୁଁ କରି
ଲୋକର ମଧ୍ୟରେ ବିହରି
ଭ୍ରମଣ କରୁଥିବୁ ତୁହି,
ତୋହର ସ୍ଥିତି କାହିଁନାହିଁ ୪୨,୪୩

ଶ୍ରୀଶୁକ ଉବାଚ ।

ପ୍ରତିଜଗ୍ରାହ ତଦ୍‌ବାଢ଼ଂ ନାରଦଃ ସାଧୁସମ୍ମତଃ ।
ଏତାବାନ୍ ସାଧୁବାଦୋ ହି ତିତିକ୍ଷେତେଶ୍ୱରଃ ସ୍ୱୟମ୍ । ୪୪ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ନାରଦଶାପଃ ନାମ ପଞ୍ଚମୋଽଧ୍ୟାୟଃ । ୫ ।

---

ଶ୍ରୀଶୁକଦେବ କହିଲେ :—

ସାଧୁଜନ ପୂଜିତ ନାରଦ ଦକ୍ଷଙ୍କ ବାକ୍ୟରେ ତଥାସ୍ତୁ ବୋଲି କହିଲେ କାରଣ ପ୍ରତୀକାର ସମର୍ଥ ହୋଇ ମଧ୍ୟ ଯେ ସହ୍ୟ କରେ ସେ ଯଥାର୍ଥରେ ସାଧୁ । ୪୪ ।

---

ଶ୍ରୀ ଶୁକ ଉବାଚ—
ଅସ୍ତୁ ବୋଇଣ ଶାପ ଘେନି
ସାଧୁଜନ ନାରଦ ମୁନି
ଏଣୁକରି ତୋ ସାଧୁବାଦ
ସକଳେ ବୋଲନ୍ତି ନାରଦ ।୪୪।
କହଇ ଦାସ ଜଗନ୍ନାଥ
ସଂସାର ହିତ ଏହି ଗୀତ



---

ଭାବାର୍ଥ:—

ପ୍ରଜାପତି ଦକ୍ଷ ଭଗବାନଙ୍କ କଠୋର ତପସ୍ୟା ଫଳରେ ପଞ୍ଚଜନ ନାମକ ପ୍ରଜାପତିଙ୍କର କନ୍ୟା, ପଞ୍ଚଜନଙ୍କୁ ପତ୍ନୀରୂପେ ଲାଭ କରି ତାହାଙ୍କ ଗର୍ଭରେ ଅୟୁତ ସଂଖ୍ୟକ ପୁତ୍ର ଉତ୍ପାଦନ କରି ସେମାନଙ୍କୁ ପ୍ରଜାସୃଷ୍ଟି କରିବାର ଆଦେଶ ଦେଇଥିଲେ, ସେମାନେ ସିନ୍ଧୁନଦୀ ଓ ସମୁଦ୍ର ସଙ୍ଗମ ସ୍ଥଳ ନାରାୟଣ ସରୋବର ନାମକ ପବିତ୍ର ତୀର୍ଥରେ ଉପସ୍ଥିତ ହୋଇ ତାହାର ଜଳ ସ୍ପର୍ଶରେ ପବିତ୍ରୀଭୂତ ହୋଇଥିଲେ, ସେଠାରେ ନାରଦଙ୍କର ଉପଦେଶ ଲାଭକରି ସେମାନେ ନିବୃତ୍ତି ମାର୍ଗ ଅବଲମ୍ବନ କରିଥିଲେ । ନାରଦ ତାହାଙ୍କୁ ଅର୍ଥପୂର୍ଣ୍ଣ ଦଶଗୋଟି କଥା କହିଥିଲେ । ସେମାନେ ନିଜର ବିଶୁଦ୍ଧ ବୁଦ୍ଧି ଦ୍ୱାରା ତାହାର ଅର୍ଥ ହୃଦୟଙ୍ଗମ କରିଥିଲେ । ସୁତରାଂ ନାରଦଙ୍କ ଉପଦେଶାନୁସାରେ ସୂକ୍ଷ୍ମଦେହ ଈଶ୍ୱର, ବ୍ରହ୍ମ, ବୁଦ୍ଧି, ଜୀବ, ମାୟା, ଅନ୍ତରାତ୍ମା, ଶାସ୍ତ୍ର, କାଳ ଓ ଶାସ୍ତ୍ରୀୟ ବିଧାନ ଏ ସମସ୍ତର ପ୍ରକୃତ ଉଦ୍ଦେଶ୍ୟ ନ ବୁଝି କାର୍ଯ୍ୟ କଲେ ତହିଁର କୌଣସି ଫଳ ହୁଏନାହିଁ । ଦକ୍ଷ ପୁତ୍ରମାନଙ୍କର ଗତିରେ ଶୋକାତୁର ହୁଅନ୍ତେ ବ୍ରହ୍ମା ତାହାଙ୍କୁ ସାନ୍ତ୍ୱନା ପ୍ରଦାନ କରିଥିଲେ, ଦକ୍ଷ ପଞ୍ଚଜନୀଙ୍କର ଗର୍ଭରେ ପୁନର୍ବାର ସହସ୍ର ପୁତ୍ର ଉତ୍ପାଦନକରି ସେମାନଙ୍କୁ ମଧ୍ୟ ପ୍ରଜାସୃଷ୍ଟି କରିବାକୁ ଆଦେଶ ଦେଇଥିଲେ । ସେମାନେ ମଧ୍ୟ ନାରଦଙ୍କ ଉପଦେଶରେ ଜ୍ୟେଷ୍ଠମାନଙ୍କର ମାର୍ଗ ଅନୁସରଣ କରିଥିଲେ । ଏଥିରେ ଦକ୍ଷ ନାରଦଙ୍କ ପ୍ରତି ଅତ୍ୟନ୍ତ ବିରକ୍ତହୋଇ ନାରଦଙ୍କୁ ଅଭିଶାପ ଦେଇଥିଲେ, ନାରଦ ଦକ୍ଷଙ୍କ କର୍ତ୍ତୃକ ତିରସ୍କୃତ ହୋଇ ମଧ୍ୟ ସେ କୌଣସିପ୍ରକାର ପ୍ରତିକାର କରିନଥିଲେ କାରଣ ସହିଷ୍ଣୁତା ଯଥାର୍ଥରେ ସାଧୁର ଲକ୍ଷଣ ।

## ଷ ଷ୍ଠ ଅ ଧ୍ୟା ୟ ।

ଷଷ୍ଠେ ଦକ୍ଷେଣ ସୃଷ୍ଟାୟାଂ କନ୍ୟାଷଷ୍ଟ୍ୟାଂ ପ୍ରକୀର୍ତ୍ତିତାଃ ।
ପୃଥକ୍‌ବଂଶା ଯତୋ ଜାତୋ ବିଶ୍ୱରୂପୋ ଦିତେଃ ସୁତାତ୍ । (ଶ୍ରୀଧରସ୍ୱାମୀ)

ଶ୍ରୀଶୁକ ଉବାଚ ।

ତତଃ ପ୍ରଚେତସୋଽସିକ୍ନ୍ୟାମନୁନୀତଃ ସ୍ୱୟମ୍ଭୁବା ।
ଷଷ୍ଟିଂ ସଞ୍ଜନୟାମାସ ଦୁହିତୃଃ ପିତୃବତ୍ସଲାଃ । ୧ ।
ଦଶ ଧର୍ମାୟ କାୟାଦାଦ୍ଦ୍ୱିଷଟ୍ ତ୍ରିନବ ଚେନ୍ଦବେ ।
ଭୂତାଙ୍ଗିରଃ କୃଶାଶ୍ୱେଭ୍ୟୋ ଦ୍ୱେ ଦ୍ୱେ ତାର୍କ୍ଷ୍ୟାୟ ଚାପରାଃ । ୨ ।
ନାମଧେୟାନ୍ୟମୂଷାଂ ତ୍ୱଂ ସାପତ୍ୟାନାଞ୍ଚ ମେ ଶୃଣୁ ।
ଯାସାଂ ପ୍ରସୂତିପ୍ରସବୈର୍ଲୋକା ଆପୂରିତାସ୍ତ୍ରୟଃ । ୩ ।

---

### ଦକ୍ଷକନ୍ୟାମାନଙ୍କ ବଂଶ କଥନ ଓ ବିଶ୍ୱରୂପ ଉତ୍ପତ୍ତି ।

ଷଷ୍ଠ ଅଧ୍ୟାୟରେ ଦକ୍ଷଙ୍କର କନ୍ୟାମାନଙ୍କର ବଂଶ ପୃଥକ୍ ପୃଥକ୍ ଭାବରେ ବର୍ଣ୍ଣନା ଏବଂ ବିଶ୍ୱରୂପଙ୍କର ଉତ୍ପତ୍ତି ହୋଇଅଛି ।୦।

ଶ୍ରୀଶୁକଦେବ କହିଲେ :—

ଦକ୍ଷ ବ୍ରହ୍ମାଙ୍କ ଅନୁରୋଧରେ ଅସିକ୍ନୀ ନାମ୍ନୀ ପତ୍ନୀଙ୍କ ଗର୍ଭରେ ଷାଠିଏଟି କନ୍ୟା ଉତ୍ପାଦନ କରିଥିଲେ; ଏମାନେ ପିତାଙ୍କପ୍ରତି ଅତ୍ୟନ୍ତ ସ୍ନେହ ପରାୟଣା ଥିଲେ । ୧ ।

ଦକ୍ଷ ଦଶୋଟି କନ୍ୟା ଧର୍ମଙ୍କୁ, ତେରୋଟି କଶ୍ୟପଙ୍କୁ, ସତେଇଶଟି ଚନ୍ଦ୍ରଙ୍କୁ ଓ ଭୂତ, ଅଙ୍ଗିରା ଓ କୃଶାଶ୍ୱ ପ୍ରତ୍ୟେକଙ୍କୁ ଦୁଇଟି ଲେଖାଏଁ କନ୍ୟା ପ୍ରଦାନ କରିଥିଲେ । ୨ ।

ସେହି ଦକ୍ଷ କନ୍ୟାମାନଙ୍କର ପୁତ୍ର ପୌତ୍ରାଦି ଦ୍ୱାରା ତ୍ରିଭୁବନ ପରିପୂର୍ଣ୍ଣ ହୋଇଥିଲା । ସେହି ଦକ୍ଷ କନ୍ୟାମାନଙ୍କର ଓ ସେମାନଙ୍କର ସନ୍ତାନମାନଙ୍କର ନାମ ମୋହ ନିକଟରୁ ଶ୍ରବଣ କର । ୩ ।

---

ଷଷ୍ଠରେ ଦକ୍ଷକନ୍ୟାବଂଶ । ପୃଥକ ପୃଥକ ପ୍ରକାଶ ॥

ଶ୍ରୀ ଶୁକ ଉବାଚ—

ଶୁଣ ସ୍ୱଜନ ଏ ଅନ୍ତରେ
ଦକ୍ଷ ଯେ ବ୍ରହ୍ମାଙ୍କ ଆଜ୍ଞାରେ
ଭାରିଯା ଅସିକ୍ନୀଙ୍କ ଠାରେ
ଷାଠିଏ କନ୍ୟା ଜନ୍ମାଇଲେ । ୧।

ଧର୍ମ୍ମଙ୍କୁ ଦେଲେ କନ୍ୟା ଦଶ
କଶ୍ୟପେ ଦେଲେ ତ୍ରୟୋଦଶ
ସପ୍ତବିଂଶତି ଚନ୍ଦ୍ରଙ୍କରେ
ପ୍ରଦାନ କଲେ ଆନନ୍ଦରେ
ଭୂତ ଅଙ୍ଗିରା କୃଶାଶ୍ୱଙ୍କୁ
ବେଣି ବେଣିଟି ଦେଲେ ତାଙ୍କୁ

ଆଉରି ଯାଉ ଯେ କନ୍ୟାଙ୍କୁ
ଅର୍ପିଲେ ତାର୍କ୍ଷ୍ୟ କାଶ୍ୟପଙ୍କୁ ।୨।
ଏ ସର୍ବ କନ୍ୟାଙ୍କର ନାମ
କହିବା ଶୁଣ ହେ ସ୍ୱଜନ
ଏହାଙ୍କ ପୁତ୍ର ପୌତ୍ରମାନେ
ପୂର୍ଣ୍ଣ ହୋଇଲେ ତ୍ରିଭୁବନେ ।୩।

ଭାନୁର୍ଲମ୍ବା କକୁଦ୍‌ଯାମିର୍ବିଶ୍ୱା ସାଧ୍ୟା ମରୁତ୍ୱତୀ ।
ବସୁର୍ମୁହୂର୍ତ୍ତା ସଂକଳ୍ପା ଧର୍ମପତ୍ନ୍ୟଃ ସୁତାନ୍ ଶୃଣୁ । ୪ ।
ଭାନୋସ୍ତୁ ଦେବଋଷଭ ଇନ୍ଦ୍ରସେନସ୍ତତୋ ନୃପ ।
ବିଦ୍ୟୋତ ଆସୀଲ୍ଲମ୍ବାୟାସ୍ତତଶ୍ଚ ସ୍ତନୟିତ୍ନବଃ । ୫ ।
କକୁଦଃ ସଙ୍କଟସ୍ତସ୍ୟ କୀକଟସ୍ତନୟୋ ଯତଃ ।
ଭୁବୋ ଦୁର୍ଗାଣି ଯାମେୟଃ ସ୍ୱର୍ଗୋ ନନ୍ଦିସ୍ତତୋଽଭବତ୍ । ୬ ।
ବିଶ୍ୱେଦେବାସ୍ତୁ ବିଶ୍ୱାୟା ଅପ୍ରଜାଂସ୍ତାନ୍ ପ୍ରଚକ୍ଷତେ ।
ସାଧ୍ୟୋଗଣଶ୍ଚ ସାଧ୍ୟାୟା ଅର୍ଥସିଦ୍ଧିସ୍ତୁ ତତ୍‌ସୁତଃ । ୭ ।
ମରୁତ୍ୱାଂଶ୍ଚ ଜୟନ୍ତଶ୍ଚ ମରୁତ୍ୱତ୍ୟା ବଭୂବତୁଃ ।
ଜୟନ୍ତୋ ବାସୁଦେବାଂଶ ଉପେନ୍ଦ୍ର ଇତି ଯଂ ବିଦୁଃ । ୮ ।

---

ଧର୍ମ ଯେଉଁ ଦଶଜଣଙ୍କୁ ବିବାହ କରିଥିଲେ ସେମାନଙ୍କର ନାମ ଭାନୁ, ଲମ୍ବା, କକୁଦ୍, ଯାମୀ, ବିଶ୍ୱା, ସାଧ୍ୟା, ମରୁତ୍ୱତୀ, ବସୁ, ମୁହୂର୍ତ୍ତା ଓ ସଂକଳ୍ପା, ଏମାନଙ୍କର ପୁତ୍ରମାନଙ୍କର ନାମ ଶ୍ରବଣ କର । ୪ ।

ହେ ମହାରାଜ ପରୀକ୍ଷିତ ! ଭାନୁଙ୍କଗର୍ଭରେ ଋଷଭ ଦେବ ନାମରେ ପୁତ୍ର ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପୁତ୍ର ଇନ୍ଦ୍ରସେନ, ଲମ୍ବାଙ୍କର ପୁତ୍ର ବିଦ୍ୟୋତ, ତାହାଙ୍କର ପୁତ୍ର ସ୍ତନୟିତ୍ନୁ ଗଣ । ୫ ।

କକୁଦ୍‌ଙ୍କ ଗର୍ଭରେ ସଙ୍କଟ ଜାତ ହୋଇଥିଲେ । ସଙ୍କଟଙ୍କର ପୁତ୍ର କୀକଟ, କୀକଟଙ୍କଠାରୁ ପୃଥିବୀର ଦୁର୍ଗାଭିମାନୀ ଦେବଗଣ ଜନ୍ମିଥିଲେ । ଯାମୀଙ୍କଗର୍ଭରେ ସ୍ୱର୍ଗନାମକ ପୁତ୍ର ଏବଂ ସ୍ୱର୍ଗଙ୍କଠାରୁ ନନ୍ଦି ଜନ୍ମ ଗ୍ରହଣ କରିଥିଲେ । ୬ ।

ବିଶ୍ୱାଙ୍କ ଗର୍ଭରେ ବିଶ୍ୱଦେବମାନେ ଜନ୍ମିଥିଲେ, ସେମାନେ ନିଃସନ୍ତାନ ଥିଲେ, ସାଧ୍ୟାଙ୍କ ଗର୍ଭରେ ସାଧ୍ୟଗଣ ଉତ୍ପନ୍ନ ହୋଇଥିଲେ, ସାଧ୍ୟଗଣଙ୍କର ପୁତ୍ର ଅର୍ଥ ସିଦ୍ଧି । ୭ ।

ମରୁତ୍ୱତୀଙ୍କ ଗର୍ଭରେ ମରୁତ୍ୱାନ୍ ଏବଂ ଜୟନ୍ତ ନାମରେ ଦୁଇ ପୁତ୍ର ଜନ୍ମିଥିଲେ । ଜୟନ୍ତ ବାସୁଦେବଙ୍କ ଅଂଶରେ ଜାତ ବୋଲି ତାହାଙ୍କୁ ଉପେନ୍ଦ୍ର ବୋଲଯାଏ । ୮ ।

---

ଭାନୁ, ଲମ୍ବା, କକୁଦ ଯାମି
ମୁହୂର୍ତ୍ତା ବସୁ ଧର୍ମପତ୍ନୀ
ବିଶ୍ୱା ସାଧ୍ୟା ଯେ ମରୁତ୍ୱତୀ
ସଂକଳ୍ପା ନାମେ ଯେତେ ସତୀ
ଧର୍ମ୍ମର ଦଶ ପତ୍ନୀ ନାମ
କହିଲୁଁ ଶୁଣ ହେ ରାଜନ ।୪।
ଏବେ ତାହାଙ୍କ ପୁତ୍ର ନାମ
କହିବା ଶୁଣ ହେ ରାଜନ

ଭାନୁର ପୁତ୍ର ହେ ରାଜନ
ଦେବ ଋଷଭ ଯେ ତା ନାମ
ଋଷଭ ପୁତ୍ର ଇନ୍ଦ୍ର ସେନ
ବିଦ୍ୟୋତ ଲମ୍ବାରୁ ଜନମ ।୫।
କକୁଦ ପୁତ୍ର ଯେ ସଙ୍କଟ
ତାହାର ତନୟ କୀକଟ
କୀକଟ ଠାରୁଁ ସେ ଜନମ
ଭୂବ ଦୁର୍ଗ ଦେବତାମାନ

ଯାମିର ସ୍ୱର୍ଗ ଯେ ବାଳକ
ସ୍ୱର୍ଗ ଯେ ନନ୍ଦର ଜନକ ।୬।
ବିଶ୍ୱାର ବିଶ୍ୱଦେବା ପୁତ୍ର
ସେମାନେ ସକଳେ ଅପୁତ୍ର
ସାଧ୍ୟାର ପୁତ୍ର ସାଧ୍ୟଗଣ
ତା ପୁତ୍ର ଅର୍ଥ ସିଦ୍ଧିଜାଣ । ୭ ।
ଜୟନ୍ତ ମରୁତ୍ୱାନ ଦୁଇ
ଜନ୍ମିଲେ ମରୁତ୍ୱତୀ ଠାଇଁ

ମୌହୂର୍ତ୍ତିକା ଦେବଗଣା ମୁହୂର୍ତ୍ତାୟାଶ୍ଚ ଜଜ୍ଞିରେ ।
ଯେ ବୈ ଫଳଂ ପ୍ରୟଚ୍ଛନ୍ତି ଭୂତାନାଂ ସ୍ୱସ୍ୱକାଳଜମ୍ । ୯ ।
ସଙ୍କଳ୍ପାୟାସ୍ତୁ ସଂକଳ୍ପଃ କାମଃ ସଂକଳ୍ପଜଃ ସ୍ମୃତଃ ।
ବସବୋଽଷ୍ଟୌ ବସୋଃ ପୁତ୍ରାସ୍ତେଷାଂ ନାମାନି ମେ ଶୃଣୁ । ୧୦ ।
ଦ୍ରୋଣଃ ପ୍ରାଣୋ ଧ୍ରୁବୋଽର୍କୋଽଗ୍ନିର୍ଦୋଷୋ ବାସ୍ତୁର୍ବିଭାବସୁଃ ।
ଦ୍ରୋଣସ୍ୟାଭିମତେଃ ପତ୍ନ୍ୟା-ହର୍ଷଶୋକଭୟାଦୟଃ । ୧୧ ।
ପ୍ରାଣସ୍ୟୋର୍ଜସ୍ୱତୀ ଭାର୍ଯ୍ୟା ସହ ଆୟୁଃ ପରୋଜବଃ ।
ଧ୍ରୁବସ୍ୟ ଭାର୍ଯ୍ୟା ଧରଣିରସୂତ ବିବିଧାଃ ପୁରଃ । ୧୨ ।
ଅର୍କସ୍ୟ ବାସନା ଭାର୍ଯ୍ୟା ପୁତ୍ରାସ୍ତର୍ଷାଦୟଃ ସ୍ମୃତାଃ ।
ଅଗ୍ନେର୍ଭାର୍ଯ୍ୟା ବସୋର୍ଧାରା ପୁତ୍ରା ଦ୍ରବିଣକାଦୟଃ । ୧୩ ।

---

ମୁହୂର୍ତ୍ତାଙ୍କ ଗର୍ଭରେ ମୌହୂର୍ତ୍ତିକ ନାମକ ଦେବଗଣ ଉତ୍ପନ୍ନ ହୋଇଥିଲେ । ଏମାନେ ପ୍ରାଣିମାନଙ୍କୁ ନିଜ ନିଜର ମୁହୂର୍ତ୍ତ ଅନୁସାରେ ଫଳ ପ୍ରଦାନ କରିଥାନ୍ତି । ୯ ।

ସଂକଳ୍ପାଙ୍କ ଗର୍ଭରେ ସଂକଳ୍ପ ଏବଂ ସଂକଳ୍ପଙ୍କଠାରୁ କାମ ଉତ୍ପନ୍ନ ହୋଇଥିଲେ ଏବଂ ବସୁଙ୍କଗର୍ଭରେ ଅଷ୍ଟବସୁ ଜନ୍ମିଥିଲେ, ଏମାନଙ୍କ ନାମ ମୋଠାରୁ ଶ୍ରବଣ କର । ୧୦ ।

ଦ୍ରୋଣ, ପ୍ରାଣ, ଧ୍ରୁବ, ଅର୍କ, ଅଗ୍ନି, ଦୋଷ, ବାସ୍ତୁ ଓ ବିଭାବସୁ ଏମାନେ ଅଷ୍ଟବସୁ । ଦ୍ରୋଣପତ୍ନୀ ଅଭିମତୀଙ୍କ ଗର୍ଭରେ ହର୍ଷ, ଶୋକ ଓ ଭୟ ପ୍ରଭୃତି ପୁତ୍ର ଜନ୍ମିଥିଲେ । ୧୧ ।

ପ୍ରାଣଙ୍କର ପତ୍ନୀ ଊର୍ଜ୍ଜସ୍ୱତୀ, ତାହାଙ୍କ ଗର୍ଭରେ ସହ, ଆୟୁ, ପୁରୋଜବ ନାମକ ତିନିପୁତ୍ର ଜନ୍ମିଥିଲେ ଧ୍ରୁବଙ୍କର ପତ୍ନୀ ଧରଣୀ, ସେ ବିବିଧ ପୁତ୍ର ପ୍ରସବ କରିଥିଲେ । ୧୨ ।

ଅର୍କଙ୍କର ପତ୍ନୀ ବାସନା, ତର୍ଷ ପ୍ରଭୃତି ତାହାଙ୍କର ପୁତ୍ର, ଅଗ୍ନିଙ୍କର ପତ୍ନୀ ଧାରା, ଦ୍ରବିଣକ ପ୍ରଭୃତି ଏବଂ କୃତ୍ତିକା ତନୟ ସ୍କନ୍ଦ ବା କାର୍ତ୍ତିକେୟ ତାହାଙ୍କର ପୁତ୍ର, ଏହି ସ୍କନ୍ଦଙ୍କଠାରୁ ବିଶାଖ ପ୍ରଭୃତି ବହୁପୁତ୍ର ଜନ୍ମିଥିଲେ, ଦୋଷଙ୍କର ପତ୍ନୀ ସର୍ବରୀ, ତାହାଙ୍କର ପୁତ୍ର ଶିଶୁମାର, ସେ ଭଗବାନ୍ ଶ୍ରୀହରିଙ୍କର ଅଂଶରେ

---

ଜୟନ୍ତ ଅଂଶ ବାସୁଦେବ
ଯା ନାମ ଉପେନ୍ଦ୍ର ପ୍ରସିଦ୍ଧ
ମୁହୂର୍ତ୍ତା ଗର୍ଭେ ଦେବଗଣ
ଜନ୍ମିଲେ ଅଖିଳ କାରଣ
ଯେ କାଳେ ଯେ ଫଳ ପ୍ରାଣିରେ
ଦିଅନ୍ତି ମୁହୂର୍ତ୍ତ ରୂପରେ ।୮,୯।
ସଂକଳ୍ପ ସଂକଳ୍ପାର ସୁତ
କାମ ଯାହାର ପୁତ୍ର ଜାତ

ବସୁର ଅଷ୍ଟବସୁ ସୁତ
କହିବା ଶୁଣ ସଂକ୍ଷିପ୍ତ
ଧ୍ରୁବାର୍କ ଦୋଷ ଅଗ୍ନି ଦ୍ରୋଣ
ବିଭାବସୁ ବାସ୍ତୁ ଯେ ପ୍ରାଣ
ଦ୍ରୋଣ ଯେ ଅଭିମତି ତହିଁ
ହର୍ଷ ଶୋକଭୟ ଜନ୍ମାଇ ।୧୦,୧୧
ପ୍ରାଣର ଊର୍ଜ୍ଜସ୍ୱତୀ ନାମା
ପତ୍ନୀ ଯେ ଅତି ମନୋରମା

ତା ତହୁଁ ଏ ତିନି ଉଭବ
ସହ ଆୟୁ ଯେ ପୁରୋଜବ
ଧରଣୀ ଧ୍ରୁବ ଭାର୍ଯ୍ୟା ହୋଇ
ବିବିଧ ସୁତ ପ୍ରସବଇ । ୧୨।
ଅର୍କର ରମଣୀ ବାସନା
ତା ପୁତ୍ର ତର୍ଷ ଆଦି ନାମା
ଅଗ୍ନି ବସୁର ଭାର୍ଯ୍ୟା ଧାର
ଦ୍ରବିଣ ଆଦି ପୁତ୍ର ତାର ।୧୩।

ସ୍କନ୍ଦଶ୍ଚ କୃତ୍ତିକାପୁତ୍ରୋ ଯେ ବିଶାଖାଦୟସ୍ତତଃ ।
ଦୋଷସ୍ୟ ଶର୍ବରୀପୁତ୍ରଃ ଶିଶୁମାରୋ ହରେଃ କଳା । ୧୪ ।
ବାସ୍ତୋରାଙ୍ଗିରସୀପୁତ୍ରୋ ବିଶ୍ୱକର୍ମାକୃତୀପତିଃ ।
ତତୋ ମନୁଶ୍ଚାକ୍ଷୁଷୋଽଭୂଦ୍ ବିଶ୍ୱେସାଧ୍ୟା ମନୋଃ ସୁତାଃ ।୧୫ ।
ବିଭାବସୋରସୂତୋଷା ବ୍ୟୁଷ୍ଟଂ ରୋଚିଷମାତପମ୍ ।
ପଞ୍ଚଯାମୋଽଥଭୂତାନି ଯେନ ଜାଗ୍ରତି କର୍ମସୁ । ୧୬ ।
ସରୂପାସୂତ ଭୂତସ୍ୟ ଭାର୍ଯ୍ୟା ରୁଦ୍ରାଂଶ୍ଚ କୋଟିଶଃ ।
ରୈବତୋଽଜୋ ଭବୋଭୀମୋବାମଉଗ୍ରୋ ବୃଷାକପିଃ । ୧୭ ।
ଅଜୈକପାଦହିର୍ବୁଧ୍ନ୍ୟୋ ବହୁରୂପୋ ମହାନିତି ।
ରୁଦ୍ରସ୍ୟ ପାର୍ଷଦାଶ୍ଚାନ୍ୟେ ଘୋରାଃ ପ୍ରେତବିନାୟକାଃ । ୧୮ ।

---

ଜନ୍ମ, ବାସ୍ତୁଙ୍କର ପତ୍ନୀ ଅଙ୍ଗିରସୀ, ତାହାଙ୍କର ପୁତ୍ର ଶିଳ୍ପାଗ୍ରଗଣ୍ୟ ବିଶ୍ୱକର୍ମା, ତାହାଙ୍କଠାରୁ ଚାକ୍ଷୁଷନାମକ ମନୁ ଉତ୍ପନ୍ନ ହୋଇଥିଲେ । ଚାକ୍ଷୁଷଙ୍କର ପୁତ୍ର ମନୁ ଓ ତାହାଙ୍କର ପୁତ୍ରମାନେ ବିଶ୍ୱଦେବଗଣ ଓ ସାଧ୍ୟଗଣ । ୧୩-୧୫ ।

ବିଭାବସୁଙ୍କର ପତ୍ନୀ ଉଷା, ବ୍ୟୁଷ୍ଟ, ରୋଚିଷ୍, ଆତପ ନାମକ ତିନପୁତ୍ର ପ୍ରସବ କରିଥିଲେ । ସେମାନଙ୍କ ମଧ୍ୟରୁ ଆତପଙ୍କଠାରୁ ଦିବସ ଉତ୍ପନ୍ନ । ଏହିଦିବସକୁ ଅବଲମ୍ବନକରି ପ୍ରାଣୀମାନେ କର୍ମପଥରେ ଅଗ୍ରସର ହୁଅନ୍ତି । ୧୬ ।

ଭୂତଙ୍କର ସ୍ୱରୂପା ନାମ୍ନୀ ସ୍ତ୍ରୀ ରୁଦ୍ରଗଣଙ୍କୁ ଏବଂ ଅନ୍ୟାନ୍ୟ କୋଟି କୋଟି ପୁତ୍ରଙ୍କୁ ପ୍ରସବ କରିଥିଲେ, ରୈବତ, ଅଜ, ଭବ, ଭୀମ, ବାମ, ଉଗ୍ର, ବୃଷ କପି, ଅଜୈକପାଦ, ଅହିର୍ବୁଧ୍ନ, ବହୁରୂପ, ମହାନ ଏହି ଏକାଦଶ ରୁଦ୍ରାନୁଚର ଭୟଙ୍କର ପ୍ରେତ, ବିନାୟକ ପ୍ରଭୃତି ଭୂତଙ୍କର ଅନ୍ୟ ପତ୍ନୀ ଗର୍ଭରେ ଜନ୍ମଗ୍ରହଣ କରିଥିଲେ । ୧୭,୧୮ ।

---

କୃତ୍ତିକା ପୁତ୍ର ସ୍କନ୍ଦ ହୋଇ
ଯହିଁ ବିଶାଖା ଆଦି ହୋଇ
ଶର୍ବରୀ ରମଣୀ ଦୋଷର
ଯାହାର ପୁତ୍ର ଶିଶୁମାର
ଈଶ୍ୱର ଅଂଶ ସେ ଅଟଇ
ଜଗତ ବ୍ୟାପିତ ସେହୋଇ ।୧୪।
ବାସ୍ତୁ ବନିତା ଅଙ୍ଗିରସୀ
ତହିଁ ବିଶ୍ୱକର୍ମା ପ୍ରକାଶୀ
ସକଳ କଳାମାନଙ୍କର
ସ୍ୱାମୀ ଅଟଇ ଜଗତର
ଚାକ୍ଷୁଷ ମନୁ ତା କୁମର
ମନୁର ହୋଇଲେ କୁମର

ବିଶ୍ୱେଦେବାଦି ସାଧ୍ୟେ ଯେତେ
ମନୁର ପୁତ୍ର ଏ ଜଗତେ । ୧୫।
ବିଭାବସୁର ତିନି ସୁତ
ଉଷା ଗର୍ଭରେ ହେଲେ ଜାତ
ତାହାଙ୍କ ନାମ ଶୁଣ ନୃପ
ବ୍ୟୁଷ୍ଟ ରୋଚିଷ ଯେ ଆତପ
ଏ ତିନି ପୁତ୍ରଙ୍କ ମଧ୍ୟର
ଆତପ ଅଟେ ନାମ ଯାର
ତାଠାରୁ ଦିବସ ଜନମ
ଯାହାର ନାମ ପଞ୍ଚ ଯାମ
ଯା ହେତୁ ପ୍ରାଣୀ ଜାଗରିତ
ସଂସାରେ ହୁଅନ୍ତି ଆତଯାତ ।୧୬।

ସ୍ୱରୂପା ଭାର୍ଯ୍ୟାଠାରୁ କରି
ଭୂତ ବହୁତ ସୁତ କରି
ରୈବତ ଅଜ ଭବ ଭୀମ
ଉଗ୍ର ବୃଷାକପି ଯେ ବାମ
ଅଜୈକାପାଦ ଅହି ବୁଧ୍ନ
ବହୁରୂପା ମହାନ ନାମ
ରୁଦ୍ରର ପାରିଷଦ ଯେତେ
କହିବି ଏକେ ଏକ କେତେ
ପ୍ରେତ ବିନାୟକ ଯେ ଘୋର
ଏମନ୍ତେ ଜନ୍ମିଲେଅପାର ।୧୭,୧୮

ପ୍ରଜାପତେରଙ୍ଗିରସଃ ସ୍ୱଧା ପତ୍ନୀ ପିତୃନଥ ।
ଅଥର୍ବାଙ୍ଗିରସଂ ବେଦଂ ପୁତ୍ରତ୍ୱେ ଚାକରୋତ୍ ସତୀ । ୧୯ ।
କୃଶାଶ୍ୱୋଽର୍ଚ୍ଚିଷି ଭାର୍ଯ୍ୟାୟାଂ ଧୂମକେତୁମଜୀଜନତ୍ ।
ଧିଷଣାୟାଂ ବେଦଶିରୋ ଦେବଲଂ ବୟୁନଂ ମନୁମ୍ । ୨୦ ।
ତାର୍କ୍ଷ୍ୟସ୍ୟ ବିନତା କଦ୍ରୂଃ ପତଙ୍ଗୀ ଯାମିନୀତି ଚ ।
ପତଙ୍ଗ୍ୟସୂତ ପତଗାନ୍ ଯାମିନୀ ଶଲଭାନଥ । ୨୧ ।
ସୁପର୍ଣ୍ଣାସୂତ ଗରୁଡ଼ଂ ସାକ୍ଷାଦ୍‌ଯଜ୍ଞେଶବାହନମ୍ ।
ସୂର୍ଯ୍ୟସୂତମନୂରୁଞ୍ଚ କଦ୍ରୂର୍ନାଗାନନେକଶଃ । ୨୨ ।
କୃତ୍ତିକାଦୀନି ନକ୍ଷତ୍ରାଣୀନ୍ଦୋଃ ପତ୍ନ୍ୟସ୍ତୁ ଭାରତ ।
ଦକ୍ଷଶାପାତ୍ ସୋଽନପତ୍ୟସ୍ତାସୁ ଯକ୍ଷ୍ମଗ୍ରହାର୍ଦ୍ଦିତଃ । ୨୩ ।

---

ପ୍ରଜାପତି ଅଙ୍ଗିରାଙ୍କର ପତ୍ନୀ ସ୍ୱଧା ପିତୃଗଣଙ୍କୁ ପୁତ୍ରରୂପେ ପ୍ରାପ୍ତ ହୋଇଥିଲେ, ସତୀ ଅଙ୍ଗିରାଙ୍କର ଅନ୍ୟ ସ୍ତ୍ରୀ, ଅଥର୍ବାଙ୍ଗୀରସ ନାମକ ବେଦକୁ ପୁତ୍ରରୂପେ ଜନ୍ମ କରିଥିଲେ । ୧୯ ।

କୃଶାଶ୍ୱ ତାହାଙ୍କର ଅର୍ଚ୍ଚୀ ନାମୀ ସ୍ତ୍ରୀ ଗର୍ଭରେ ଧୂମକେତୁ ନାମକ ଗୋଟିଏ ପୁତ୍ର ଏବଂ ଧୀଷଣାନାମ୍ନୀ ସ୍ତ୍ରୀ ଗର୍ଭରେ ବେଦଶିର, ଦେବଳ, ବୟୁନ ଓ ମନୁ ନାମକ ଚାରିଗୋଟି ପୁତ୍ର ଉତ୍ପାଦନ କରିଥିଲେ ।୨୦।

ତାର୍କ୍ଷ୍ୟ ନାମକ କଶ୍ୟପଙ୍କର ବିନତା, କଦ୍ରୁ, ପତଙ୍ଗୀ, ଯାମିନୀ ନାମରେ ଚାରିଗୋଟି ପତ୍ନୀ ଥିଲେ । ପତଙ୍ଗୀ ପକ୍ଷିମାନଙ୍କୁ; ଯାମିନୀ ଶଲଭ ବା ଝିଣ୍ଟିକାମାନଙ୍କୁ ପ୍ରସବ କରିଥିଲେ । ୨୧ ।

ବିନତା ଗରୁଡ଼ ଓ ଅରୁଣ ନାମକ ଦୁଇପୁତ୍ର ପ୍ରସବ କରିଥିଲେ, ଗରୁଡ଼ ସ୍ୱୟଂ ଭଗବାନଙ୍କର ବାହନ, ଅରୁଣ ସୂର୍ଯ୍ୟଙ୍କର ସାରଥି, କଦ୍ରୁ ବହୁସଂଖ୍ୟକ ନାଗ ପ୍ରସବ କରିଥିଲେ । ୨୨ ।

ହେ ଭାରତ ! କୃତ୍ତିକାଦି ସତେଇଶ ନକ୍ଷତ୍ର ଚନ୍ଦ୍ରଙ୍କର ପତ୍ନୀ । କିନ୍ତୁ ଦକ୍ଷଙ୍କର ଅଭିଶାପରେ ଚନ୍ଦ୍ର ଯକ୍ଷ୍ମାରୋଗରେ ପୀଡ଼ିତ ହୋଇଥିଲେ । କେବଳ ରୋହିଣୀ ବ୍ୟତୀତ ଅନ୍ୟ ଗର୍ଭରେ ତାହାଙ୍କର ସନ୍ତାନ ଜାତ ହୋଇ ନ ଥିଲେ । ୨୩ ।

---

ଅଙ୍ଗୀରସ ଯେ ପ୍ରଜାପତି
ତାହାଙ୍କ ପତ୍ନୀ ସ୍ୱଧାସତୀ
ପିତୃଗଣଙ୍କୁ ସେ ଜନ୍ମାଇ
ଆବର ଶୁଣ ଯାହା କହି
ଅଥର୍ବ ଅଙ୍ଗୀରସ ବେଦ
ସତୀର ପୁତ୍ର ଯେ ସମ୍ବାଦ । ୧୯ ।
କୃଶାଶ୍ୱ ଅର୍ଚ୍ଚି ଭାର୍ଯ୍ୟା ଠାରୁ
ଧୂମକେତୁକୁ ଜନମାଇ

ଧିଷଣା ଠାରୁ ବେଦ ଶିର
ବୟୁନ ମନୁ ଯେ ଦେବଳ ।୨୦।
ବିନତା କଦ୍ରୁ ତାର୍କ୍ଷ୍ୟ ପତ୍ନୀ
ପତଙ୍ଗୀ ଯାମିନୀଙ୍କୁ ଘେନି
ପତଙ୍ଗୀ ପତଙ୍ଗମାନଙ୍କୁ
ଯାମିନୀ ଶଲଭ ପୁତ୍ରଙ୍କୁ
ବିନତା ଗରୁଡ଼ ଜନ୍ମାଇ
ଯଜ୍ଞେଶ ବାହନ ସେ ହୋଇ

ଅନୂରୁ ସୂର୍ଯ୍ୟର ସାରଥି
ବିନତା ପୁତ୍ର ଏ ପ୍ରସିଦ୍ଧି
ଅଶେଷ ନାଗଲୋକ ଯେହି
ଜାତହୋଇଲେକଦ୍ରୁ ଠାରୁ ୨୧।୨୨
କୃତ୍ତିକା ଆଦି ଯେତେ ଋକ୍ଷ
ଇନ୍ଦୁର ପତ୍ନୀ ଯେ ପ୍ରତ୍ୟକ୍ଷ
ଦକ୍ଷଙ୍କ ଶାପ ସେ ପାଇଲେ
ଚନ୍ଦ୍ର ଯେ ଅପୁତ୍ର ହୋଇଲେ

ପୁନଃ ପ୍ରସାଦ୍ୟ ତଂ ସୋମଃ କଲାଲେଭେ କ୍ଷୟେ ଦିତାଃ ।
ଶୃଣୁ ନାମାନି ଲୋକାନାଂ ମାତୃଣାଂ ଶଙ୍କରାଣି ଚ । ୨୪ ।
ଅଥ କଶ୍ୟପପତ୍ନୀନାଂ ଯତ୍ପ୍ରସୂତମିଦଂ ଜଗତ୍ ।
ଅଦିତିର୍ଦିତିର୍ଦନୁଃ କାଷ୍ଠା ଅରିଷ୍ଟା ସୁରସା ଇଳା । ୨୫ ।
ମୁନିଃ କ୍ରୋଧବଶା ତାମ୍ରା ସୁରଭିଃ ସରମା ତିମିଃ ।
ତିମେର୍ଯାଦୋଗଣା ଆସନ୍ ଶ୍ୱାପଦାଃ ସରମାସୁତାଃ । ୨୬ ।
ସୁରଭେର୍ମହିଷା ଗାବୋ ଯେ ଚାନ୍ୟେ ଦ୍ୱିଶଫା ନୃପ । ।
ତାମ୍ରାୟାଃ ଶ୍ୟେନଗୃଧ୍ରାଦ୍ୟା ମୁନେରପ୍ସରସାଂ ଗଣାଃ । ୨୭ ।
ଦନ୍ଦଶୂକାଦୟଃ ସର୍ପା ରାଜନ୍ କ୍ରୋଧବଶାତ୍ମଜାଃ ।
ଇଳାୟାଃ ଭୂରୁହାଃ ସର୍ବେ ଯାତୁଧାନଶ୍ଚ ସୌରସାଃ । ୨୮ ।

---

ଚନ୍ଦ୍ର ଦକ୍ଷଙ୍କୁ ସନ୍ତୁଷ୍ଟ କରି ଷୋଳକଳା ଲାଭ କରିଥିଲେ, ତାହା କୃଷ୍ଣପକ୍ଷରେ କ୍ଷୟ ହୁଏ । ତଦନନ୍ତର ତ୍ରିଭୁବନର ମାତୃସ୍ଥାନୀୟା କଶ୍ୟପ ପତ୍ନୀମାନଙ୍କର କଲ୍ୟାଣୀୟ ନାମ କହୁଅଛି ଶ୍ରବଣକର, ଏମାନେ ତ୍ରିଭୁବନ ସୃଷ୍ଟି କରିଥିଲେ । ୨୪ ।

ଅଦିତି, ଦିତି, ଦନୁ, କାଷ୍ଠା, ଅରିଷ୍ଟା, ସୁରସା, ଇଳା, ମୁନି, କ୍ରୋଧବଶା, ତାମ୍ରା ସୁରଭି, ସରମା ଓ ତିମି ଏହି ତେରଜଣ କଶ୍ୟପ ପତ୍ନୀ । ହେ ମହାରାଜ ! ତିମିଙ୍କଠାରୁ ଜଳଜନ୍ତୁମାନେ ଉତ୍ପନ୍ନ, ବ୍ୟାଘ୍ରାଦି ହିଂସ୍ରଜନ୍ତୁଗଣ ସରମାଙ୍କର ସନ୍ତାନ । ଗୋ, ମହିଷ ଏବଂ ଅନ୍ୟାନ୍ୟ ଦୁଇଖୁର ବିଶିଷ୍ଟ ଜନ୍ତୁଗଣ ସୁରଭିଙ୍କର ଠାରୁ ଜାତ । ହେ ରାଜନ୍ ! ତାମ୍ରାଙ୍କଠାରୁ ଶ୍ୟେନ, ଗୃଧ୍ର ପ୍ରଭୃତି ପକ୍ଷିମାନେ, ମୁନିଙ୍କଠାରୁ ଅପ୍‌ସରାମାନେ, କ୍ରୋଧ ବଶାଙ୍କଠାରୁ ଦନ୍ଦଶୂକ ବା ମଶା ଡ଼ାଆଁସ ପ୍ରଭୃତି ଓ ସର୍ପମାନେ ଜନ୍ମିଥିଲେ । ଦନୁଙ୍କ ଗର୍ଭରେ ଏକଷଠି ପୁତ୍ର ଜନ୍ମିଥିଲେ, ସେମାନଙ୍କ ମଧ୍ୟରେ ଯେଉଁମାନେ ପ୍ରଧାନ ସେମାନଙ୍କ ନାମ ଶ୍ରବଣ କର, ଦ୍ୱିମୂର୍ଦ୍ଧା, ସମ୍ବର, ଅରିଷ୍ଟ, ହୟଗ୍ରୀବ, ବିଭାବସୁ, ଅୟୋମୁଖ, ଶଙ୍କୁଶିରା, ସ୍ୱର୍ଭାନୁ, କପିଳ

---

ଯକ୍ଷ୍ମାରୋଗରେ କରି ସୋମ
କଳାରୁ ହିନ ହେଲେ କ୍ଷୀଣ
ଦକ୍ଷଙ୍କୁ ପ୍ରସନ୍ନ କରାଇ
କଳା ଲଭିଲେ ପୁଣ ସେହି
ଏ ଅନନ୍ତରେ ମାତୃଗଣ
ତାହାଙ୍କନାମ କହୁଁ ଶୁଣ ।୨୩,୨୪
କଶ୍ୟପ ପତ୍ନୀ ମାନଙ୍କର
କହିବା ନାମର ବିସ୍ତାର

ଯାହାର ଅପତ୍ୟରୁ କରି
ଜଗତ ହୋଇଅଛି ପୂରି
କାଷ୍ଠା ଅରିଷ୍ଟା ଦନୁ ଦିତି
ସୁରସା ଇଳା ଯେ ଅଦିତି
ସୁରଭି କ୍ରୋଧବଶା ତିମି
ସରମା ତାମ୍ରା ଆର ମୁନି
ତିମିର ପୁତ୍ର ଯାଦୋଗଣ
ଶ୍ୱାପଦେ ସୁରମାନନ୍ଦନ

ସୁରଭି ପୁତ୍ର ଗୋ ମହିଷି
ଦ୍ୱିଶଫେ ଯେତେକ ପ୍ରକାଶି
ଶ୍ୟେନ ଗୃଧ୍ରାଦି ତାମ୍ରାସୁତ
ଅପ୍‌ସରା ମୁନିର ଦୁହିତ
ଦନ୍ଦଶୂକାଦି ସର୍ପ ଯେତେ
କ୍ରୋଧବଶା ସୁତ ସମସ୍ତେ
ଇଳାର ତନୁଁ ବୃକ୍ଷମାନେ
ସୁରସାସୁତ ଯାତୁଧାନେ ।୨୫-୨୮

ଅରିଷ୍ଟାୟାସ୍ତୁ ଗନ୍ଧର୍ବାଃ କାଷ୍ଠାୟା ଦ୍ୱିଶଫେତରାଃ ।
ସୁତା ଦନୋରେକଷଷ୍ଟିସ୍ତେଷାଂ ପ୍ରାଧାନିକାନ୍ ଶୃଣୁ । ୨୯ ।
ଦ୍ୱିମୂର୍ଦ୍ଧା ଶମ୍ବରୋଽରିଷ୍ଟୋ ହୟଗ୍ରୀବୋ ବିଭାବସୁଃ ।
ଅୟୋମୁଖଃ ଶଙ୍କୁଶିରାଃ ସ୍ୱର୍ଭାନୁଃ କପିଳୋଽରୁଣଃ । ୩୦ ।
ପୁଲୋମା ବୃଷପର୍ବା ଚ ଏକଚକ୍ରୋଽନୁତାପନଃ ।
ଧୂମ୍ରକେଶୋ ବିରୂପାକ୍ଷୋ ବିପ୍ରଚିତ୍ତିଶ୍ଚ ଦୁର୍ଜ୍ଜୟଃ । ୩୧ ।
ସ୍ୱର୍ଭାନୋଃ ସୁପ୍ରଭାଂ କନ୍ୟାମୁବାହ ନମୁଚିଃ କିଲ ।
ବୃଷପର୍ବଣସ୍ତୁ ଶର୍ମିଷ୍ଠାଂ ଯଯାତିର୍ନାହୁଷୋ ବଳୀ । ୩୨ ।
ବୈଶ୍ୱାନରସୁତା ଯାଶ୍ଚ ଚତସ୍ରଶ୍ଚାରୁଦର୍ଶନାଃ ।
ଉପଦାନବୀ ହୟଶିରା ପୁଲୋମା କାଳକା ତଥା । ୩୩ ।
ଉପଦାନବୀଂ ହିରଣ୍ୟାକ୍ଷଃ କ୍ରତୁର୍ହୟଶିରାଂ ନୃପ ।
ପୁଲୋମାଂ କାଳକାଂ ଚ ଦ୍ୱେ ବୈଶ୍ୱାନରସୁତେ ତୁ କଃ । ୩୪ ।

---

ଅରୁଣ, ପୁଲୋମା, ବୃଷପର୍ବା, ଏକଚକ୍ର, ଅନୁତାପନ, ଧୂମ୍ରକେଶ, ବିରୂପାକ୍ଷ, ବିପ୍ରଚିତ୍ତି, ଦୁର୍ଜ୍ଜୟ ଏହି ଅଠର ଜଣ ପ୍ରଧାନ, ଏମାନଙ୍କ ମଧ୍ୟରେ ସ୍ୱର୍ଭାନୁ କନ୍ୟା ସୁପ୍ରଭା ଏହାଙ୍କୁ ନମୁଚି ନାମକ ଦୈତ୍ୟ ବିବାହ କରିଥିଲା । ୨୯-୩୧ ।

ବୃଷପର୍ବାଙ୍କର କନ୍ୟା ଶର୍ମିଷ୍ଠାଙ୍କୁ ନହୁଷପୁତ୍ର ବଳଶାଳୀ ଯଯାତି ବିବାହ କରିଥିଲେ । ଦନୁଙ୍କର ବୈଶ୍ୱାନର ନାମକ ଗୋଟିଏ ପୁତ୍ରଥିଲା, ତାହାଙ୍କର ଉପଦାନବୀ, ହୟଶିରା, ପୁଲୋମା ଏବଂ କାଳକା ଏହି ଚାରି କନ୍ୟାଥିଲେ । ଉପଦାନବୀଙ୍କୁ ହିରଣାକ୍ଷ୍ୟ ଓ ହୟ ଶିରାଙ୍କୁ କ୍ରତୁ ବିବାହ କରିଥିଲେ । ପ୍ରଜାପତି ଭଗବାନ୍ କଶ୍ୟପ ବ୍ରହ୍ମାଙ୍କ ଉପଦେଶରେ ବୈଶ୍ୱାନରଙ୍କର ପୁଲୋମା ଓ କାଳକା ନାମ୍ନୀ ଦୁଇ କନ୍ୟାଙ୍କୁ ବିବାହ କରିଥିଲେ । ୩୨-୩୪ ।

---

ଗନ୍ଧର୍ବେ ଅରିଷ୍ଟା ଜଠରେ
କାଷ୍ଠାର ଦ୍ୱିଶଫ ଇତରେ
ଦନୁର ଏକଷଠି ସୁତ
ଅଠର ପ୍ରଧାନ ସେ ପୁତ୍ର
ଶୁଣ କହିବା ହେ ରାଜନ
ଏହାଙ୍କ ଏକ ଏକ ନାମ
ଦ୍ୱିମୂର୍ଦ୍ଧା ଅରିଷ୍ଟ ଶମ୍ବର
ହୟଗ୍ରୀବ ଯେ ଶଙ୍କୁଶିର
ବିଭାବସୁ ଯେ ଅୟୋମୁଖ
ବୃଷପର୍ବା ଯେ ବିରୂପାକ୍ଷ

ସ୍ୱର୍ଭାନୁ କପିଳ ଅରୁଣ
ପୁଲୋମା ଏକଚକ୍ର ଜାଣ
ଧୂମ୍ରକେଶ ଅନୁତାପନ
ଦୁର୍ଜ୍ଜୟ ବିପ୍ରଚିତ୍ତି ନାମ । ୨୯-୩୧ ।
ସ୍ୱର୍ଭାନୁ କୁମାରୀ ସୁପ୍ରଭା
ନମୁଚି ତାଙ୍କୁ ହେଲେ ବିଭା
ରାଜନ ଯେ ବୃଷପର୍ବାର
ଶର୍ମିଷ୍ଠା ନାମେ କନ୍ୟାବର
ଅତିସୁନ୍ଦରୀ କନ୍ୟାଥିଲା
ଯଯାତି ତାଙ୍କୁ ବିଭାହେଲା । ୩୨ ।

ବୈଶ୍ୱାନରର ଚାରି କନ୍ୟା
ଥିଲେ ଯେ ଚାରୁ ଦରଶନା
ଉପଦାନବୀ ହୟଶିରୀ
କାଳକା ପୁଲୋମା ସୁନ୍ଦରୀ । ୩୩ ।
ଉପଦାନବୀ କନ୍ୟା ଭୁଲେ
ହିରଣାକ୍ଷ ଯେ ବିଭା ହେଲେ
ହୟଶିରୀ ନାମେ ସୁନ୍ଦରୀ
କ୍ରତୁର ସେହି ହେଲା ନାରୀ
ପୁଲୋମା କାଳକା ଏ ଦୁଇ
କଶ୍ୟପ ସଙ୍ଗେ ବିଭା ହୋଇ

ଉପଯେମେଽଥ ଭଗବାନ୍ କଶ୍ୟପୋ ବ୍ରହ୍ମଚୋଦିତଃ ।
ପୌଲୋମାଃ କାଳକେୟାଶ୍ଚ ଦାନବା ଯୁଦ୍ଧଶାଳିନଃ । ୩୫ ।
ତୟୋଃ ଷଷ୍ଟିସହସ୍ରାଣି ଯଜ୍ଞଘ୍ନାଂସ୍ତେ ପିତୁଃ ପିତା ।
ଜଘାନ ସ୍ୱର୍ଗତୋ ରାଜନ୍ନେକ ଇନ୍ଦ୍ରପ୍ରିୟଙ୍କରଃ । ୩୬ ।
ବିପ୍ରଚିତ୍ତିଃ ସିଂହିକାୟାଂ ଶତଞ୍ଚୈକମଜୀଜନତ୍ ।
ରାହୁଜ୍ୟେଷ୍ଠଂ କେତୁଶତଂ ଗ୍ରହତ୍ୱଂ ଯ ଉପାଗତାଃ । ୩୭ ।
ଅଥାତଃ ଶ୍ରୂୟତାଂ ବଂଶୋ ଯୋଽଦିତେରନୁପୂର୍ବଶଃ ।
ଯତ୍ର ନାରାୟଣୋ ଦେବଃ ସ୍ୱାଂଶେନାବତରଦ୍ବିଭୁଃ । ୩୮ ।
ବିବସ୍ୱାନର୍ଯ୍ୟମା ପୂଷା ତ୍ୱଷ୍ଟାଥ ସବିତା ଭଗଃ ।
ଧାତା ବିଧାତା ବରୁଣୋ ମିତ୍ର ଶକ୍ର ଉରୁକ୍ରମଃ । ୩୯ ।

---

ସେମାନଙ୍କର ଗର୍ଭରେ ପୌଲମ ଓ କାଳକେୟ ନାମକ ଷାଠିଏ ହଜାର ଦାନବ ଜନ୍ମଗ୍ରହଣ କରିଥିଲେ । ସେମାନେ ଯୁଦ୍ଧ ବ୍ୟବସାୟରେ ସୁନିପୁଣ ଥିଲେ ( ଏମାନେ ନିବାତ କବଚ ନାମରେ ପ୍ରସିଦ୍ଧ ) । ୩୫ ।

ହେ ରାଜନ୍ ! ଏମାନେ ଲୋକମାନଙ୍କର ଯଜ୍ଞାଦି ନଷ୍ଟ କରୁଥିଲେ, ତେଣୁ ଇନ୍ଦ୍ରଙ୍କର ପ୍ରିୟକାରୀ ତୁମ୍ଭର ପିତାମହ ଅର୍ଜ୍ଜୁନ ସ୍ୱର୍ଗକୁ ଗମନ କରି ଏକାକୀ ସମସ୍ତ ଦାନବଙ୍କୁ ବିନାଶ କରିଥିଲେ । ୩୬ ।

ବିପ୍ରଚିତ୍ତି ନାମକ ଦାନବ ସିଂହିକାନାମ୍ନୀ ପତ୍ନୀ ଗର୍ଭରେ ଏକଶ ଷାଠିଏଟି ପୁତ୍ର ଉତ୍ପାଦନ କରିଥିଲେ, ତନ୍ମଧ୍ୟରେ ଜ୍ୟେଷ୍ଠ ରାହୁ ଅବଶିଷ୍ଟ ଏକଶତ କେତୁ ଏମାନେ ଗ୍ରହତ୍ୱ ପ୍ରାପ୍ତ ହୋଇ ନବଗ୍ରହ ମଧ୍ୟରେ ପରିଗଣିତ ହୁଅନ୍ତି । ୩୭ ।

ତଦନନ୍ତର ଅଦିତିବଂଶ ବୃତ୍ତାନ୍ତ ଶ୍ରବଣ କର ଏହି ବଂଶରେ ଭଗବାନ୍ ନାରାୟଣ ସ୍ୱୟଂ ନିଜଅଂଶରେ ଅବତୀର୍ଣ୍ଣ ହୋଇଥିଲେ । ୩୮ ।

ବିବସ୍ୱାନ୍, ଅର୍ଯ୍ୟମା, ପୂଷା, ତ୍ୱଷ୍ଟା, ସବିତା, ଭଗ, ଧାତା, ବିଧାତା, ବରୁଣ, ମିତ୍ର, ଶକ୍ର ଉରୁକ୍ରମ ଏହି ଦ୍ୱାଦଶଟି ଅଦିତିଙ୍କ ପୁତ୍ର । ୩୯ ।

---

ବ୍ରହ୍ମାର ଆଜ୍ଞା ପାଇ କରି
କଶ୍ୟପ ବିଭା ହେବା ନାରୀ
ପୁଲୋମା କାଳକାର ସୁତ
ଦାନବେ ହୋଇଲେ ବହୁତ
ଷାଠି ସହସ୍ର ତାର ମଧ୍ୟେ
ଯଜ୍ଞ ନାଶନ୍ତି ସେହୁ ବାଦେ
ଇନ୍ଦ୍ରର ଅପ୍ରୀତି କରନ୍ତି
ନିତ୍ୟେ କୁକର୍ମ ଆଚରନ୍ତି

ପିତାର ପିତା ଯେ ତୋହର
ଅର୍ଜ୍ଜୁନ ନାମଟି ଯାହାର
ସ୍ୱର୍ଗକୁ ଯାଇ କଲା ନଷ୍ଟ
ଦାନବ ବଳବନ୍ତ ଦୁଷ୍ଟ ।୩୪-୩୬।
ସିଂହିକା ଚର୍ତ୍ତୁ ବିପ୍ରଚିତ୍ତି
ଶତଏକ କଲା ଉତ୍ପତ୍ତି
ରାହୁ କେତୁ ଯେତେକ ଆଦି
ହୋଇଲେ ଗ୍ରହରେ ପ୍ରସିଦ୍ଧି ।୩୭।

ଏ ଅନନ୍ତରେ ନୃପବର
ଅଦିତି ବଂଶର ବିସ୍ତର
ଯହିଁ ଶ୍ରୀଚକ୍ରପାଣିଠାକୁର
ଅଂଶେ ହୋଇଲେ ଅବତାର
ଅର୍ଯ୍ୟମା ବିବସ୍ୱାନ ତ୍ୱଷ୍ଟା
ଧାତା ବିଧାତା ଯେ ସବିତା
ପୂଷା ଭଗ ଆଉ ବରୁଣ
ମିତ୍ର ଶକ୍ର ଯେ ଉରୁକ୍ରମ ।୩୮,୩୯

ବିବସ୍ୱତଃ ଶ୍ରାଦ୍ଧଦେବଂ ସଂଜ୍ଞାସୂୟତ ବୈ ମନୁମ୍ ।
ମିଥୁନଞ୍ଚ ମହାଭାଗା ଯମଂ ଦେବଂ ଯମୀଂ ତଥା-
ସୈବ ଭୂତ୍ୱାଥ ବଡ଼ବା ନାସତ୍ୟୌ ସୁଷୁବେ ଭୁବି । ୪୦ ।
ଛାୟା ଶନୈଶ୍ଚରଂ ଲେଭେ ସାବର୍ଣ୍ଣିଞ୍ଚ ମନୁନ୍ତତଃ ।
କନ୍ୟାଞ୍ଚ ତପତୀଂ ଯା ବୈ ବବ୍ରେ ସମ୍ବରଣଂ ପତିମ୍ । ୪୧ ।
ଅର୍ଯ୍ୟମ୍ଣୋ ମାତୃକା ପତ୍ନୀ ତୟୋଶ୍ଚର୍ଷଣୟଃ ସୁତାଃ ।
ଯତ୍ର ବୈ ମାନୁଷୀ ଜାତିର୍ବ୍ରହ୍ମଣା ଚୋପକଳ୍ପିତା । ୪୨ ।
ପୂଷାନପତ୍ୟଃ ପିଷ୍ଟାଦୋ ଭଗ୍ନଦନ୍ତୋଽଭବତ୍ ପୁରା ।
ଯୋଽସୌ ଦକ୍ଷାୟ କୁପିତଂ ଜହାସ ବିବୃତଦ୍ୱିଜଃ । ୪୩ ।

---

ବିବସ୍ୱାନଙ୍କର ସଂଜ୍ଞା ନାମ୍ନୀ ପତ୍ନୀ ଶ୍ରାଦ୍ଧଦେବ ନାମକ ମନୁଙ୍କୁ ପ୍ରସବ କରିଥିଲେ ଏବଂ ତାହାଙ୍କର ଅନ୍ୟ ପତ୍ନୀ ମହାଭାଗାଙ୍କଠାରୁ ଯମ ନାମକ ପୁତ୍ର ଓ ଯମୀନାମ୍ନୀ କନ୍ୟା ଜାତ ହୋଇଥିଲେ । ସେହି ମହାଭାଗା ମର୍ତ୍ତ୍ୟଲୋକରେ ଘୋଟକୀରୂପେ ଅବସ୍ଥାନ କରି ଅଶ୍ୱିନୀକୁମାର ଦ୍ୱୟଙ୍କୁ ପ୍ରସବ କରିଥିଲେ ।୪୦।

ବିବସ୍ୱାନଙ୍କ ଔରସରେ ଛାୟା, ଶନୈଶ୍ଚର ଓ ସାବର୍ଣ୍ଣି ମନୁ ନାମକ ଦୁଇପୁତ୍ର ଜାତ ହୋଇଥିଲେ, ତପତୀ ମଧ୍ୟ ତାହାଙ୍କର କନ୍ୟା, ତପତୀ ସମ୍ବରଣଙ୍କୁ ପତିରୂପେ ବରଣ କରିଥିଲେ । ୪୧ ।

ଆର୍ଯ୍ୟମାନଙ୍କର ପତ୍ନୀ ମାତୃକା, ସେମାନଙ୍କର ବହୁଲକ୍ଷଣବାନ୍ ପୁତ୍ର ଜନ୍ମିଥିଲେ, ଭଗବାନ୍ ବ୍ରହ୍ମା ସେହି ପୁତ୍ରମାନଙ୍କଦ୍ୱାରା ମନୁଷ୍ୟ ଜାତି ବିଧାନ କରିଥିଲେ । ୪୨ ।

ଅଦିତୀଙ୍କର ପୁତ୍ର ପୁଷା, ସେ ଦକ୍ଷଙ୍କ ପ୍ରତି କୁପିତ ମହାଦେବଙ୍କୁ ଦନ୍ତ ଦେଖାଇ ଉପହାସ କରିଥିବାରୁ ରୁଦ୍ରାନୁଚର ଗଣ ତାହାଙ୍କର ଦାନ୍ତ ଭାଙ୍ଗି ଦେଇଥିଲେ, ସେହିଦିନୁ ସେ ପିଷ୍ଟ ଦ୍ରବ୍ୟ ଭକ୍ଷଣ କରନ୍ତି । ସେ ନିଃସନ୍ତାନ । ୪୩ ।

---

ବିବସ୍ୱାନଙ୍କ ଠାରୁଁ ଜାତ
ଶ୍ରାଦ୍ଧଦେବ ହେଲେ ସାକ୍ଷାତ
ଯମଦେବତା ପୁଣ ହୋଇ
ଯମୁନା ନାମେ ସୁତା ସେହି
ଯମୁନା ଘୋଟକୀ ରୂପରେ
ଜନ୍ମାଏ ଅଶ୍ୱିନୀକୁମାରେ
ଛାୟାର ଶନୈଶ୍ଚର ସୁତ
ଶୁଣ କହିବା ହେ ଭାରତ

ଏ ଅନନ୍ତରେ ତାର ତହୁଁ
ସାବର୍ଣ୍ଣି ମନୁ ଜାତ ହୋଇ
କନ୍ୟାଏ ହୋଇଲା ତପମ
ଯାହାର ପତି ସମ୍ବରଣ ।୪୦,୪୧।
ମାତୃକା ପତ୍ନୀ ଅର୍ଯ୍ୟମାର
ବହୁତ ସୁତ ହେଲେ ତାର
ଏ ସର୍ବ ମାନୁଷ ଜାତିରେ
କଳ୍ପିଲା କଲେ ବେଦବରେ ।୪୨।

ପୁଷା ସ୍ୱଭାବେ ଅନପତ୍ୟ
ପୂର୍ବେ ତା ଥିଲା ଭଗ୍ନଦନ୍ତ
ଯେ ଦକ୍ଷ କୋପର କାରଣ
ହସିଲା ଦେଖାଇ ଦଶନ । ୪୩।

ତ୍ୱଷ୍ଟୁର୍ଦୈତ୍ୟାତ୍ମଜା ଭାର୍ଯ୍ୟା ରଚନା ନାମ କନ୍ୟକା ।
ସନ୍ନିବେଶସ୍ତୟୋର୍ଜଜ୍ଞେ ବିଶ୍ୱରୂପଶ୍ଚ ବୀର୍ଯ୍ୟବାନ୍ । ୪୪ ।
ତଂ ବବ୍ରିରେ ସୁରଗଣାଃ ସ୍ୱସ୍ରୀୟଂ ଦ୍ୱିଷତାମପି ।
ବିମତେନ ପରିତ୍ୟକ୍ତା ଗୁରୁଣାଙ୍ଗିରସେନ ଯତ୍ । ୪୫ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଦକ୍ଷକନ୍ୟା ବଂଶୋ ନାମ ଷଷ୍ଠୋଽଧ୍ୟାୟଃ । ୬ ।

---

ରଚନା ନାମ୍ନୀ ଦୈତ୍ୟକନ୍ୟା ପ୍ରଜାପତି ତ୍ୱଷ୍ଟାଙ୍କର ପତ୍ନୀ, ସେମାନଙ୍କର ସନ୍ନିବେଶ ଓ ବିଶ୍ୱରୂପ ନାମକ ଦୁଇପୁତ୍ର ଜାତ ହୋଇଥିଲେ । ବିଶ୍ୱରୂପ ଅତ୍ୟନ୍ତ ପ୍ରଭାବଶାଳୀ ଥିଲେ । ୪୪ ।

ଦେବଗଣ ଯେତେବେଳେ ଅପମାନିତ ବୃହସ୍ପତିଙ୍କ କର୍ତ୍ତୃକ ପରିତ୍ୟକ୍ତ ହୋଇଥିଲେ ବିଶ୍ୱରୂପ ଶତ୍ରୁକୁଳର ଭଗିନେୟ ହେଲେ ମଧ୍ୟ ସେତେବେଳେ ଦେବତାମାନେ ଏହାଙ୍କୁ ପୁରୋହିତରୂପେ ବରଣ କରିଥିଲେ । ୪୫ ।

---

ଦୈତ୍ୟ କନ୍ୟା ପତ୍ନୀ ତ୍ୱଷ୍ଟାର
ରଚନା ନାମ ସେ କନ୍ୟାର
ସନ୍ନିବେଶ ତାର କୁମର
ବିଶ୍ୱରୂପ ସୁତ ଅପର
ଯାହାକୁ ସୁରଗଣ ମାନେ
ବରିଲେ ପୁରୋହିତ ପଣେ
ଶତ୍ରୁ ନନ୍ଦନା ଯେବେ ତାର
ସେ ଯେ ସ୍ୱହେବ ବଳସ୍ୱାର
ଯେବେ ସେ ଗୁରୁ ଆଙ୍ଗୀରସ
ମନରେ ହୋଇ ଅସନ୍ତୋଷ
ତାଙ୍କୁ ତେଜିଲେ ମୁନିବଣ
ସେ ମୁନି ସକଳ କାରଣ । ୪୪, ୪୫
ବୋଲଇ ଦୀନ ଜଗନ୍ନାଥ
ଦକ୍ଷଙ୍କ ସୃଷ୍ଟି ଏ ଜଗତ



## ସ ପ୍ତ ମ ଅ ଧ୍ୟା ୟ ।

ସପ୍ତମେ ବିଶ୍ୱରୂପୋଽସୌ ପୌରହିତ୍ୟେ ବୃତ ସୁରୈଃ ।
ଗୁରୁଣା ସଂପରିତ୍ୟକ୍ତୈଃ ପୌରୋହିତ୍ୟମଥାକରୋତ୍ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀରାଜୋବାଚ । କସ୍ୟ ହେତୋଃ ପରିତ୍ୟକ୍ତା ଆଚାର୍ଯ୍ୟେଣାତ୍ମନଃ ସୁରାଃ ।
ଏତଦାଚକ୍ଷ୍ୱ ଭଗବନ୍ ଶିଷ୍ୟାଣାମକ୍ରମଂ ଗୁରୌ । ୧ ।

ଶ୍ରୀବାଦରାୟଣିରୁବାଚ । ଇନ୍ଦ୍ରସ୍ତ୍ରିଭୁବନୈଶ୍ୱର୍ଯ୍ୟମଦୋଲ୍ଲଙ୍ଘିତସତ୍ପଥଃ ।
ମରୁଦ୍‌ଭିର୍ବସୁଭୀ ରୁଦ୍ରୈରାଦିତ୍ୟୈରୃଭୁଭିର୍ନୃପ ।୨।

---

### ବିଶ୍ୱରୂପଙ୍କର ପୌରହିତ୍ୟ ବିବରଣ ।

ସପ୍ତମ ଅଧ୍ୟାୟରେ ଦେବଗୁରୁ ବୃହସ୍ପତିଙ୍କ ପରିତ୍ୟାଗ କରି ତାଙ୍କସ୍ଥାନରେ ବିଶ୍ୱରୂପଙ୍କୁ ବରଣ କରିବା ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀରାଜା କହିଲେ :—

ହେ ଭଗବନ୍ ! ଦେବଗୁରୁ ବୃହସ୍ପତି କି କାରଣରୁ ତାହାଙ୍କର ଶିଷ୍ୟମାନଙ୍କୁ ପରିତ୍ୟାଗ କରିଥିଲେ, ଗୁରୁଙ୍କଠାରେ ଶିଷ୍ୟମାନେ କି ଅପରାଧ କରିଥିଲେ, ତାହା ମୋତେ କହନ୍ତୁ । ୧ ।

ଶ୍ରୀଶୁକଦେବକହିଲେ :—

ହେ ରାଜନ୍ ! ଇନ୍ଦ୍ର ତ୍ରିଜଗତର ଆଧିପତ୍ୟ ବଶତଃ ସନ୍ମାର୍ଗୋଲ୍ଲଙ୍ଘିତ ପନ୍ଥା ଉତ୍ପଥାଚାରୀ ଅଣଚାଶ ପବନ, ଅଷ୍ଟବସୁ, ଏକାଦଶରୁଦ୍ର, ଦ୍ୱାଦଶାଦିତ୍ୟ ଓ ଅନ୍ୟାନ୍ୟ ଦେବଗଣଙ୍କ କର୍ତ୍ତୃକ ପରିବେଷ୍ଟିତ ହୋଇ ବିରାଜିତ ଥିଲେ । ୨ ।



ବିଶ୍ୱରୂପଙ୍କୁ ଗୁରୁପଦରେ ବରଣ ।

---

ସକଳ ଦେବେ ସ୍ମରିଲେ, ବିଶ୍ୱରୂପଙ୍କୁ ଆଦରିଲେ । ତାହାଙ୍କୁ କଲେ ପୁରୋହିତ, ସପ୍ତମ ଅଧ୍ୟାୟ ଚରିତ ।୦।

ଶ୍ରୀ ରାଜୋବାଚ—
କି ହେତୁ କରି ଆଙ୍ଗୀରସ
ଦେବଙ୍କୁ କଲେ ଅବିଶ୍ୱାସ
ତାଙ୍କର ଶିଷ୍ୟେ ଦେବଗଣେ
ତାଙ୍କୁ ଲଙ୍ଘିଲେ କି କାରଣେ
ଏ କଥା କହ ମୁନିବର
ଯେବେ କରୁଣା ମୋତେ କର ।୧

ଶ୍ରୀ ବାଦରାୟଣିରୁବାଚ
ଇନ୍ଦ୍ର ତ୍ରିଭୁବନ ସମ୍ପଦେ
ସତ୍‌ପଥ ଲଂଘିଲି ଦୁର୍ମ୍ମଦେ
ପବନ ବସୁ ରୁଦ୍ରଗଣ
ଆଦିତ୍ୟ ଯେତେ ସିଦ୍ଧଗଣ
ବିଶ୍ୱେଦେବା ସାଧ୍ୟ ସହିତେ
ଅଶ୍ୱିନୀକୁମାର ବେଷ୍ଟିତେ

ବିଶ୍ୱଦେବୈଶ୍ଚ ସାଧ୍ୟୈଶ୍ଚ ନାସତ୍ୟାଭ୍ୟାଂ ପରିଶ୍ରିତଃ ।
ସିଦ୍ଧଚାରଣଗନ୍ଧର୍ବୈର୍ମୁନିଭିର୍ବ୍ରହ୍ମବାଦିଭିଃ । ୩ ।
ବିଦ୍ୟାଧରାପ୍‌ସରୋଭିଶ୍ଚ କିନ୍ନରୈଃ ପତଗୋରଗୈଃ ।
ନିଷେବ୍ୟମାଣୋ ମଘବାନ୍ ସ୍ତୂୟମାନଶ୍ଚ ଭାରତଃ । ୪ ।
ଉପଗୀୟମାନୋ ଲଳିତମାସ୍ଥାନାଧ୍ୟାସନାଶ୍ରିତଃ ।
ପାଣ୍ଡୁରେଣାତପତ୍ରେଣ ଚନ୍ଦ୍ରମଣ୍ଡଳଚାରୁଣା । ୫ ।
ଯୁକ୍ତଶ୍ଚାନ୍ୟୈଃ ପାରମେଷ୍ଠ୍ୟୈଶ୍ଚାମରବ୍ୟଜନାଦିଭିଃ ।
ବିରାଜମାନଃ ପୌଲୋମ୍ୟା ସହାର୍ଦ୍ଧାସନୟା ଭୃଶମ୍ । ୬ ।
ସ ଯଦା ପରମାଚାର୍ଯ୍ୟଂ ଦେବାନାମାତ୍ମନଶ୍ଚ ହ ।
ନାଭ୍ୟନନ୍ଦତ ସମ୍ପ୍ରାପ୍ତଂ ପ୍ରତ୍ୟୁତ୍‌ଥାନାସନାଦିଭିଃ ।୭।
ବାଚସ୍ପତିଂ ମୁନିବରଂ ସୁରାସୁରନମସ୍କୃତମ୍ ।
ନୋଚଚାଲାସନାଦିନ୍ଦ୍ରଃ ପଶ୍ୟନ୍ନପି ସଭାଗତମ୍ । ୮ ।

---

ବିଶ୍ୱଦେବ ଗଣ, ସାଧ୍ୟଗଣ, ଅଶ୍ୱିନୀକୁମାର ଦ୍ୱୟ, ସିଦ୍ଧ, ଚାରଣ, ଗନ୍ଧର୍ବ, ବ୍ରହ୍ମବାଦୀ ମୁନିଗଣ ସମସ୍ତେ ତାହାଙ୍କୁ ବେଷ୍ଟନ କରିଥିଲେ । ୩ ।

ବିଦ୍ୟାଧର ଅପ୍‌ସରା, କିନ୍ନର, ପକ୍ଷୀ ଓ ସର୍ପମାନେ ସମସ୍ତେ ଇନ୍ଦ୍ରଙ୍କର ସେବା ଓ ସ୍ତୁତି କରୁଥିଲେ ।୪।

ସେ ଚନ୍ଦ୍ରମଣ୍ଡଳତୁଲ୍ୟ ମନୋହର ଶ୍ୱେତଛତ୍ର ଆବୃତ ହୋଇ ସଭାମଣ୍ଡପସ୍ଥ ସିଂହାସନରେ ଉପବେଶନ କରିଥିଲେ । ଚାରିଆଡ଼େ ତାହାଙ୍କ ଯଶୋଗାନ ଶୁଭୁଥିଲା । ୫ ।

ସେ ଚାମର, ବ୍ୟଜନ ପ୍ରଭୃତି ଅନ୍ୟାନ୍ୟ ମହାରାଜଚିହ୍ନ ଅଳଙ୍କୃତ ହୋଇ ଓ ନିଜର ଅର୍ଦ୍ଧାଙ୍ଗରେ ଶଚୀଦେବୀଙ୍କୁ ବସାଇ ଅତ୍ୟନ୍ତ ଶୋଭା ପାଉଥିଲେ । ୬ ।

ଯେଉଁ ଇନ୍ଦ୍ରଙ୍କର ଓ ଅନ୍ୟାନ୍ୟ ଦେବଗଣଙ୍କର ପରମ ଗୁରୁ ବୃହସ୍ପତି ଏବଂ ଯେ ଦେବାସୁର ସମସ୍ତଙ୍କର ନମସ୍ୟ ସେହି ବୃହସ୍ପତିଙ୍କୁ ଆସିବାର ଦେଖି ଇନ୍ଦ୍ର ନ ଉଠି ଆସନ ଦାନ ନ କରି ଅଭିବାଦନ କରି ନ ଥିଲେ । ୭,୮ ।

---

ସିଦ୍ଧ ଗନ୍ଧର୍ବ ଯେ ଚାରଣ
ବ୍ରହ୍ମବାଦୀ ଯେ ମୁନିଗଣ
କିନ୍ନର ବିଦ୍ୟାଧରଗଣ
ସେମନ୍ତ ଅପସରାମାନ
ପତଙ୍ଗ ଉରଗ ଯେ ଆଦି
ସେମନ୍ତ ଯେ ଯାହାର ବିଧି
ସ୍ତୁତି କରନ୍ତି ବନ୍ଦିଗଣ
ଅସ୍ଥାନେ ବସି ମଘବାନ

ଲଳିତେ କେତେ ଗୀତ ଗାଇ
ଚାମର ଧରି କେ ବିଞ୍ଚିଇ
ଶ୍ୱେତାତପତ୍ରେ ଶୋଭା ଶିରି
ଯେ ସ୍ଫୁରୁ ଚନ୍ଦ୍ର ମଣ୍ଡଳରି
ଅନ୍ୟ ଯେ ପାରିଷଦଗଣ
ବିଞ୍ଚନ୍ତି ଘେନିଣ ବ୍ୟଜନ
ଶଚୀ ସଙ୍ଗତେ ଦେବରାୟେ
ରତ୍ନ ଆସନରେ ବିଜୟେ ।୨-୬।

ଏମନ୍ତ ସମୟେ ରାଜନ
କହିବା ଶୁଣ ଏକମନ
ପରମ ଗୁରୁ ଦେବଙ୍କର
ପ୍ରବେଶ ହେଲେ ସେ ସଭାର
ବାଚସ୍ପତି ମୁନିଙ୍କ ବର
ବନ୍ଦିତ ସୁରାସୁରଙ୍କର
ଏମନ୍ତେ ମୁନିଙ୍କି ଦେଖିଲେ
ଇନ୍ଦ୍ର ଆସନୁ ନ ଉଠିଲେ ।୭,୮।

ତତୋ ନିର୍ଗତ୍ୟ ସହସା କବିରାଙ୍ଗିରସଃ ପ୍ରଭୁଃ ।
ଆଯଯୌ ସ୍ୱଗୃହଂ ତୂଷ୍ଣୀଂ ବିଦ୍ୱାନ୍ ଶ୍ରୀମଦବିକ୍ରିୟାମ୍ । ୯
ତର୍ହ୍ୟେବ ପ୍ରତିବୁଦ୍ଧ୍ୟେନ୍ଦ୍ରୋ ଗୁରୁହେଳନମାତ୍ମନଃ ।
ଗର୍ହୟାମାସ ସଦସି ସ୍ୱୟମାତ୍ମାନମାତ୍ମନା । ୧୦ ।
ଅହୋ ବତ ମୟାସାଧୁ କୃତଂ ବୈ ଦଭ୍ରବୁଦ୍ଧିନା ।
ଯନ୍ମୟୈଶ୍ୱର୍ଯ୍ୟମତ୍ତେନ ଗୁରୁଃ ସଦସି କାତ୍‌କୃତଃ । ୧୧ ।
କୋ ଗୃଧ୍ୟେତ୍ ପଣ୍ଡିତୋ ଲକ୍ଷ୍ମୀଂ ତ୍ରିପିଷ୍ଟପପତେରପି ।
ଯୟାହମାସୁରଂ ଭାବଂ ନୀତୋଽଦ୍ୟ ବିବୁଧେଶ୍ୱରଃ । ୧୨ ।
ଯେ ପାରମେଷ୍ଠ୍ୟଂ ଧିଷଣ-ମଧିତିଷ୍ଠନ୍ନ କଞ୍ଚନ ।
ପ୍ରତ୍ୟୁତ୍ତିଷ୍ଠେଦିତି ବ୍ରୂୟୁର୍ଧର୍ମଂ ତେ ନ ପରଂ ବିଦୁଃ । ୧୩ ।

---

ସେତେବେଳେ ସେହି ମହାପ୍ରାଜ୍ଞ, ପ୍ରଭାବ ସମ୍ପନ୍ନ ବୃହସ୍ପତି ଇନ୍ଦ୍ରଙ୍କର ଏପରି ଅହଂକାର ଓ ଐଶ୍ୱର୍ଯ୍ୟଗର୍ବ ହୋଇଅଛି ଜାଣିପାରି କିଛି ନ କହି ତୁରନ୍ତ ନିଜ ଗୃହକୁ ଫେରିଗଲେ । ୯ ।

ଇନ୍ଦ୍ର ସେତେବେଳେ ବୁଝି ପାରିଲେ ନିଜର ଗୁରୁଙ୍କଠାରେ ଅପରାଧୀ ହୋଇ ଅଛନ୍ତି । ତାହା ସ୍ମରଣ କରି ସେ ନିଜେ ନିଜର ନିନ୍ଦା କରିବାକୁ ଲାଗିଲେ । ୧୦ ।

ଓହୋ ! ମୋର ବୁଦ୍ଧି ଅତ୍ୟନ୍ତ ଅଳ୍ପ, ମୁଁ ଐଶ୍ୱର୍ଯ୍ୟ ଗର୍ବରେ ମତ୍ତ ହୋଇ ସଭାମଧ୍ୟରେ ଗୁରୁଦେବଙ୍କୁ ଅପମାନିତ କରି ଅତ୍ୟନ୍ତ ଅନ୍ୟାୟ କରିଅଛି । ୧୧ ।

ମୁଁ ଦେବତାମାନଙ୍କର ଅଧିପତି ହେଲେ ମଧ୍ୟ ସେହି ସମ୍ପଦ ମୋହରେ ଅସୁରଭାବ ପ୍ରାପ୍ତ ହୋଇଅଛି, ସ୍ୱର୍ଗ ସମ୍ପଦ ହେଲେ ମଧ୍ୟ କୌଣସି ଜ୍ଞାନୀବ୍ୟକ୍ତି ଏହା କାମନା କରିବ ନାହିଁ । ୧୨ ।

ରାଜା ରାଜ ସିଂହାସନରେ ଅଧିଷ୍ଠିତ ଥିଲାବେଳେ ପ୍ରତ୍ୟୁତ୍ଥାନ କରି କାହାରିକୁ ଅଭିବାଦନ କରିବେ ନାହିଁ ବୋଲି ଯେଉଁମାନେ କହନ୍ତି, ସେମାନେ ଯଥାର୍ଥରେ ଧର୍ମତତ୍ତ୍ୱ ଅବଗତ ନୁହନ୍ତି । ୧୩ ।

---

ସେଠାରୁ ଶୀଘ୍ରେ ଆଙ୍ଗୀରସ
ମଉନେ ମନ୍ଦିରେ ପ୍ରବେଶ
ଶ୍ରୀମଦେ ଇନ୍ଦ୍ରର ବିକୃତି
ମନେ ଜାଣିଲେ ମୁନି ଏହା
ତାହାଙ୍କ ବିନୁ କେ ପଣ୍ଡିତ
ସ୍ୱର୍ଗ ରାଜ୍ୟ କରେ ରକ୍ଷିତ ।୯।
ସେକ୍ଷଣେ ଇନ୍ଦ୍ର ଜାଣିକରି
ଗୁରୁ ଅପରାଧ ବିଚାରି

ଆତ୍ମାକୁ ଇନ୍ଦ୍ର ନିନ୍ଦାକଲେ
ଅନେକ ସନ୍ତାପ ପାଇଲେ ।୧୦।

ଶ୍ରୀ ଇନ୍ଦ୍ର ଉବାଚ—

ବଡ଼ ଅସାଧୁ ପଣ କଲି
ମୁଁ ଅଳ୍ପ ବୁଦ୍ଧିକି ପାଇଲି
ଅଜ୍ଞାନ ଐଶ୍ୱର୍ଯ୍ୟ ମଦରେ
ଗୁରୁ ନିନ୍ଦିଲି ମୁଁ ସଭାରେ ।୧୧।

ମୁଁ ଦେବମାନଙ୍କ ଈଶ୍ୱର
ଅସୁର ଭାବ ମୋ ଆଶ୍ରର
ଯେ ମହାରାଜ ଲକ୍ଷ୍ମୀ ବହି
ମନରେ ମତ୍ତଗର୍ବ ବହି
ଧର୍ମ୍ମ ଧାରଣା ଯେଉଁମାନେ
ସାଧୁ ପଣ୍ଡିତ ଯେତେ ଜନେ
ଏହାଙ୍କୁ ଦେଖି ନ ଉଠନ୍ତି
ସେମାନେ ଧର୍ମ୍ମ ନଜାଣନ୍ତି ।୧୨,୧୩

ତେଷାଂ କୁପଥଦେଷ୍ଟୄଣାଂ ପତତାଂ ତମସି ହ୍ୟଧଃ ।
ଯେ ଶ୍ରଦ୍ଦଧ୍ୟୁର୍ବଚସ୍ତେ ବୈ ମଜ୍ଜନ୍ତ୍ୟଶ୍ମପ୍ଲବା ଇବ । ୧୪ ।
ଅଥାହମମରାଚାର୍ଯ୍ୟମଗାଧଧିଷଣଂ ଦ୍ୱିଜମ୍ ।
ପ୍ରସାଦୟିଷ୍ୟେ ନିଶଠଃ ଶୀର୍ଷ୍ଣା ତଚ୍ଚରଣଂ ସ୍ପୃଶନ୍ । ୧୫ ।
ଏବଂ ଚିନ୍ତୟତସ୍ତସ୍ୟ ମଘୋନୋ ଭଗବାନ୍ ଗୃହାତ୍ ।
ବୃହସ୍ପତିର୍ଗତୋଽଦୃଶ୍ୟାଂ ଗତିମଧ୍ୟାତ୍ମମାୟୟା । ୧୬ ।
ଗୁରୋର୍ନାଧିଗତଃ ସଂଜ୍ଞାଂ ପରୀକ୍ଷନ୍ ଭଗବାନ୍ ସ୍ୱରାଟ୍ ।
ଧ୍ୟାୟନ୍ ଧିୟା ସୁରୈର୍ଯୁକ୍ତଃ ଶର୍ମ ନାଲଭତାତ୍ମନଃ । ୧୭ ।
ତଚ୍ଛ୍ରୁତ୍ୱୈବାସୁରାଃ ସର୍ବେ ଆଶ୍ରିତ୍ୟୌଶନସଂ ମତମ୍ ।
ଦେବାନ୍ ପ୍ରତ୍ୟୁଦ୍ୟମଂ ଚକ୍ରୁର୍ଦୁର୍ମଦା ଆତତାୟିନଃ । ୧୮ ।

---

ଯେଉଁମାନେ ଏପରି ଅପଥ ପଥର ଉପଦେଶ ଦିଅନ୍ତି ସେମାନେ ଗଭୀର ମୋହ ସାଗରରେ ପତିତ । ଯେଉଁମାନେ ସେମାନଙ୍କ କଥାରେ ବିଶ୍ୱାସ କରନ୍ତି, ସେମାନେ ପ୍ରସ୍ତରମୟ ଭେଳାରେ ସମୁଦ୍ର ପାର ହେବାକୁ ଇଚ୍ଛା କରନ୍ତି । ତାହାର ଫଳରେ ଭେଳା ସଙ୍ଗେ ସଙ୍ଗେ ବୁଡ଼ି ମରନ୍ତି, ସେହିପରି ମୋହ ସାଗରରେ ବୁଡ଼ି ମରିବାକୁ ହୁଏ । ୧୪ ।

ତା ହେଲେ ମୁଁ ଅକପଟ ଚିତ୍ତରେ ସେହି ଅସୀମ ବୁଦ୍ଧିଶାଳୀ ଦେବଗୁରୁ ବୃହସ୍ପତିଙ୍କୁ ଅବନତ ମସ୍ତକରେ ତାହାଙ୍କ ଚରଣତଳେ ପ୍ରଣତ ହୋଇ ତାହାଙ୍କର ତୁଷ୍ଟି ବିଧାନ କରିବି । ୧୫ ।

ଇନ୍ଦ୍ର ଏହିପରି ଚିନ୍ତା କରୁଅଛନ୍ତି, ଏଣେ ଭଗବାନ୍ ବୃହସ୍ପତି ନିଜ ଗୃହକୁ ଗମନ କରି ନିଜର ପ୍ରବଳମାୟା ପ୍ରଭାବରେ ଅଦୃଶ୍ୟ ଭାବରେ ରହିଲେ । ୧୬ ।

ସ୍ୱର୍ଗାଧିପତି ଇନ୍ଦ୍ରଦେବ ବହୁ ଅନୁସନ୍ଧାନ କରି ପୂଜା ବୃହସ୍ପତିଙ୍କୁ ପାଇଲେ ନାହିଁ, ଅତ୍ୟନ୍ତ ଚିନ୍ତାନ୍ୱିତ ହୋଇ ସେ ଦେବତାମାନଙ୍କ ସହିତ ମିଳିତ ହେଲେ କିନ୍ତୁ ତାହାଙ୍କର ମନର ଶାନ୍ତି ଜନ୍ମିଲା ନାହିଁ । ୧୭ ।

ଗର୍ବିତ ସ୍ୱଭାବ ଅସୁରମାନେ ଏ ଘଟଣା ଶୁଣି ଶୁକ୍ରାଚାର୍ଯ୍ୟଙ୍କ ଅନୁମତି ଅନୁସାରେ ଅସ୍ତ୍ରଧାରଣକରି ଦେବତାମାନଙ୍କ ସହିତ ଯୁଦ୍ଧ ଆୟୋଜନ କରିଥିଲେ । ୧୮ ।

---

କୁପଥ ଦେଖାନ୍ତି ଯେ ଜନେ
ନରକେ ପଡ଼ନ୍ତି ବହନେ
ତାହାଙ୍କ ବୋଲ ଯେ କରନ୍ତି
ପାଷାଣ ଭେଳା ପ୍ରାୟେ ହୋନ୍ତି
ସ୍ୱଭାବେ ଗରୁ ସେ ପାଷାଣ
ତାହାର ଅଶ୍ରେୟ ମରଣ । ୧୪ ।
ଏବେ ଅମରଗଣଙ୍କର
ଆଚାର୍ଯ୍ୟ ଅଗାଧ ବୁଦ୍ଧିର

ମୁଁ ମୂଢ଼ ସେହି ବ୍ରାହ୍ମଣରେ
ମସ୍ତକ ଦେବି ତା ପାଦରେ
ତାହାଙ୍କୁ କରାଇ ପ୍ରସନ୍ନ
ଦୁଃଖ ମୋ ହୋଇବ ଦହନ । ୧୫
ଏମନ୍ତ ଚିନ୍ତା ମନେ କରି
ଗୁରୁ ଭୁବନେ ଅଗସରି
ଗୁରୁ ତା ଆଗମନ ଦେଖି
ଗୃହକୁ ଗଲେ ତା ଉପେକ୍ଷି । ୧୬ ।

ଗୁରୁ ଦରଶନ ନ ପାଇ
ଭୟ ଶୋକରେ ଯୁକ୍ତ ହୋଇ
ଆତ୍ମାର ଅକୁଶଳ ଜାଣି
ଚିନ୍ତା କରିଲେ ବଜ୍ରପାଣି । ୧୭ ।
ଏହା ଶୁଣି ଅସୁରମାନେ
ଶୁକ୍ର ମନ୍ତ୍ରୀଙ୍କର ବଚନେ
ଦେବଙ୍କ ନାଶ ବିଚାରନ୍ତି
ସ୍ୱଭାବେ ଦୁର୍ମଦ ହୁଅନ୍ତି । ୧୮ ।

ତୈର୍ବିସୃଷ୍ଟେଷୁଭିସ୍ତୀକ୍ଷ୍ଣୈର୍ନିର୍ଭିନ୍ନାଙ୍ଗୋରୁବାହବଃ ।
ବ୍ରହ୍ମାଣଂ ଶରଣଂ ଜଗ୍ମୁଃ ସହେନ୍ଦ୍ରା ନତକନ୍ଧରାଃ । ୧୯ ।
ତାଂସ୍ତଥାଭ୍ୟର୍ଦ୍ଦିତାନ୍ ବୀକ୍ଷ୍ୟ ଭଗବାନାତ୍ମଭୂରଜଃ ।
କୃପୟା ପରୟା ଦେବ ଉବାଚ ପରିସାନ୍ତ୍ୱୟନ୍ । ୨୦ ।

ଶ୍ରୀବ୍ରହ୍ମୋବାଚ । ଅହୋ ବତ ସୁରଶ୍ରେଷ୍ଠା ହ୍ୟଭଦ୍ରଂ ବଃ କୃତଂ ମହତ୍
ବ୍ରହ୍ମିଷ୍ଠଂ ବ୍ରାହ୍ମଣଂ ଦାନ୍ତମୈଶ୍ୱର୍ଯ୍ୟାନ୍ନାଭ୍ୟନନ୍ଦତ । ୨୧
ତସ୍ୟାୟମନୟସ୍ୟାସୀତ୍ ପରେଭ୍ୟୋ ବଃ ପରାଭବଃ ।
ପ୍ରକ୍ଷୀଣେଭ୍ୟଃ ସ୍ୱବୈରିଭ୍ୟଃ ସମୃଦ୍ଧାନାଞ୍ଚ ଯତ୍ ସୁରାଃ । ୨୨ ।
ମଘବନ୍ ଦ୍ୱିଷତଃ ପଶ୍ୟ ପ୍ରକ୍ଷୀଣାନ୍ ଗୁର୍ବତିକ୍ରମାତ୍ ।
ସମ୍ପ୍ରତ୍ୟୁପଚିତାନ୍ ଭୂୟଃ କାବ୍ୟମାରାଧ୍ୟ ଭକ୍ତିତଃ-
ଆଦଦୀରନ୍ ନିଳୟନଂ ମମାପି ଭୃଗୁଦେବତାଃ । ୨୩ ।

---

ଅସୁରମାନେ ଯେଉଁ ବାଣ ନିକ୍ଷେପ କରିଥିଲେ ତଦ୍ୱାରା ଦେବତାମାନଙ୍କର ଅଙ୍ଗ, ଉରୁ ଓ ବାହୁ ବିଦୀର୍ଣ୍ଣ ହେଲା । ସେହି ଅବସ୍ଥାରେ ଇନ୍ଦ୍ର ଓ ଅନ୍ୟାନ୍ୟ ଦେବତାମାନେ ଅବନତମସ୍ତକରେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ୧୯ ।

ଭଗବାନ୍ ବ୍ରହ୍ମା ଶରଣାଗତ ଦେବତାମାନଙ୍କୁ ଦେଖି ଦୟାର୍ଦ୍ର ଚିତ୍ତରେ ସେମାନଙ୍କୁ ସାନ୍ତ୍ୱନା ଦେଇଥିଲେ ।୨୦

ଶ୍ରୀବ୍ରହ୍ମା କହିଲେ :—ହେ ଦେବଶ୍ରେଷ୍ଠ ଗଣ ! ତୁମ୍ଭେମାନେ ଅତ୍ୟନ୍ତ ଅନ୍ୟାୟାଚରଣ କରିଅଛ, କାରଣ ଐଶ୍ୱର୍ଯ୍ୟଗର୍ବରେ ମତ୍ତ ହୋଇ ତୁମ୍ଭେମାନେ ବ୍ରହ୍ମଜ୍ଞ, ସଂଯମଶୀଳ ବ୍ରାହ୍ମଣଙ୍କୁ ନମସ୍କାର କରି ନାହଁ ।୨୧।

ହେ ଦେବଗଣ ! ତୁମ୍ଭେମାନେ ଅତ୍ୟନ୍ତ ସମୃଦ୍ଧିଶାଳୀ ଏବଂ ତୁମ୍ଭର ଶତ୍ରୁମାନେ ପରସ୍ପର ମଧ୍ୟରେ ବିବାଦ କରି ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲେ । କିନ୍ତୁ ସେହି ଶତ୍ରୁମାନେ ଯେ ତୁମ୍ଭମାନଙ୍କୁ ପରାଜିତ କରିଅଛନ୍ତି ଏହା ତୁମ୍ଭମାନଙ୍କର ଅନ୍ୟାୟାଚରଣର ଫଳ । ୨୨ ।

ହେ ଦେବରାଜ ! ଦେଖ ତୁମ୍ଭର ଶତ୍ରୁପକ୍ଷ ଅସୁରମାନେ ଗୁରୁଙ୍କୁ ଉପେକ୍ଷା କରି ଅତ୍ୟନ୍ତ ଅବନତ ହୋଇଥିଲେ । ପୁଣି ଶୁକ୍ରାଚାର୍ଯ୍ୟଙ୍କର ଆରାଧନା କରି ସେମାନେ ଉନ୍ନତ ହୋଇଅଛନ୍ତି । ସେମାନେ ଶୁକ୍ରାଚାର୍ଯ୍ୟଙ୍କୁ ଦେବତୁଲ୍ୟ ଭକ୍ତି କରନ୍ତି, ତେଣୁ ସେମାନେ ବ୍ରହ୍ମଲୋକପର୍ଯ୍ୟନ୍ତ ଅଧିକାର କରିପାରିବେ ।୨୩

---

ତାହାଙ୍କ ବାଣେ ମଘବାନ
ଦେବଙ୍କ ଦେହ ହେଲା କ୍ଷୀଣ
ବ୍ରହ୍ମା ସମ୍ମୁଖ ଦେବେ ଗଲେ
ଏ ସର୍ବକଥା ନିବେଦିଲେ
ନତ କନ୍ଧରେ ଦେବଗଣ
ନମିଲେ ବ୍ରହ୍ମାର ଚରଣ
ଦୁଃଖିତ ଦେଖି ଦେବଗଣ
ସ୍ୱୟମ୍ଭୂ ଅଜ ଭଗବାନ

ପରମ କୃପାଯୁକ୍ତ ହୋଇ
ତାଙ୍କୁ ବୋଇଲେ ସେହିବହି ।୧୯,୨୦

ଶ୍ରୀ ବ୍ରହ୍ମୋବାଚ—

ହେ ଦେବେ ! ଶୁଣ କହୁଁ ଅମ୍ଭେ
ଅତ୍ୟନ୍ତ ମନ୍ଦ କଲ ତୁମ୍ଭେ
ବ୍ରହ୍ମିଷ୍ଠ ଦାନ୍ତ ଯେ ବ୍ରାହ୍ମଣ
ତାହାଙ୍କୁ କଲ ଅପମାନ

ତୁମ୍ଭଙ୍କୁ ସେ ପାପ କାରଣେ
ତେଣୁ ଜିଣିଲେ ଶତ୍ରୁଗଣେ
ତୁମ୍ଭଙ୍କୁ ନ ଜିଣନ୍ତି ବାଦେ
ଏବେ ଜିଣିଲେ ଅପ୍ରମାଦେ
ହେ ଇନ୍ଦ୍ର ! ଶୁଣ ସାବଧାନେ
ଗୁରୁଙ୍କୁ ଲଘିଲ ଅଜ୍ଞାନେ
ଆଚାର୍ଯ୍ୟ ଭଜି ଦୈତ୍ୟଗଣ
ଲଭିଲେ ଆମ୍ଭର ଭୁବନ ।୨୩।

ତ୍ରିପିଷ୍ଟପଂ କିଂ ଗଣୟନ୍ତ୍ୟଭେଦ୍ୟମନ୍ତ୍ରା ଭୃଗୁଣାମନୁଶିକ୍ଷିତାର୍ଥାଃ ।
ନ ବିପ୍ରଗୋବିନ୍ଦଗବୀଶ୍ୱରାଣାଂ ଭବନ୍ତ୍ୟଭଦ୍ରାଣି ନରେଶ୍ୱରାଣାମ୍ । ୨୪ ।
ତଦ୍‌ବିଶ୍ୱରୂପଂ ଭଜତାଶୁ ବିପ୍ରଂ ତପସ୍ୱିନଂ ତ୍ୱାଷ୍ଟ୍ରମଥାତ୍ମବନ୍ତମ୍ ।
ସଭାଜିତୋଽର୍ଥାନ୍ ସ ବିଧାସ୍ୟତେ ବୋ ଯଦି କ୍ଷମିଷ୍ୟଧ୍ୱମୁତାସ୍ୟ କର୍ମ । ୨୫ ।

ଶ୍ରୀଶୁକ ଉବାଚ ।

ତ ଏବମୁଦିତା ରାଜନ୍ ବ୍ରହ୍ମଣା ବିଗତଜ୍ୱରାଃ ।
ଋଷିଂ ତ୍ୱାଷ୍ଟ୍ରମୁପବ୍ରଜ୍ୟ ପରିଷ୍ୱଜ୍ୟେଦମବ୍ରୁବନ୍ । ୨୬ ।

ଶ୍ରୀଦେବା ଊଚୁଃ ।

ବୟଂ ତେଽତିଥୟଃ ପ୍ରାପ୍ତା ଆଶ୍ରମଂ ଭଦ୍ରମସ୍ତୁ ତେ ।
କାମଃ ସମ୍ପାଦ୍ୟତାଂ ତାତ ପିତୃଣାଂ ସମୟୋଚିତଃ । ୨୭ ।

---

ଅସୁରମାନଙ୍କର କୌଣସି ପ୍ରକାର ମନ୍ତ୍ରଣା ଭେଦକରିବାର ଉପାୟ ନାହିଁ, କାରଣ ଶୁକ୍ରାଚାର୍ଯ୍ୟଙ୍କର ଉପଦେଶକୁ ସେମାନେ ପରମାର୍ଥ ବୋଲି ଜ୍ଞାନ କରି ସ୍ୱର୍ଗକୁ ଗଣ୍ୟ କରନ୍ତି ନାହିଁ । ବ୍ରାହ୍ମଣ ଶ୍ରୀହରି ଏବଂ ଗୋ ଯାହାପ୍ରତି ସଦୟ, ତାହାର କୌଣସି ଅମଙ୍ଗଳ ଘଟି ନ ପାରେ । ୨୪ ।

ବର୍ତ୍ତମାନ ତୁମ୍ଭେମାନେ ତ୍ୱଷ୍ଟାଙ୍କର ପୁତ୍ର ବିଶ୍ୱରୂପଙ୍କୁ ଗୁରୁରୂପେ ବରଣ କର, ସେ ତପସ୍ୱୀ, ପ୍ରଶସ୍ତଚେତା ବ୍ରାହ୍ମଣ, ତାହାଙ୍କୁ ଆରାଧନା କଲେ ସେ ତୁମ୍ଭମାନଙ୍କର ପ୍ରୟୋଜନୀୟ କାର୍ଯ୍ୟ ସମ୍ପାଦନ କରି ପାରିବେ । ତୁମ୍ଭେମାନେ ତାହାଙ୍କର ଅସୁର ପକ୍ଷପାତ କାର୍ଯ୍ୟ କ୍ଷମାକର । ୨୫ ।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ପରୀକ୍ଷିତ ! ବ୍ରହ୍ମା ଏହିପରି କହିବାରୁ ଦେବଗଣଙ୍କର ଦୁଃଖ ବହୁପରିମାଣରେ ପ୍ରଶମିତ ହେଲା, ସେମାନେ ତ୍ୱଷ୍ଟାଙ୍କର ପୁତ୍ର ବିଶ୍ୱରୂପଙ୍କ ନିକଟକୁ ଗମନ କରି ତାହାଙ୍କୁ ଏହିପରି କହିଲେ । ୨୬ ।

ଶ୍ରୀଦେବତାମାନେ କହିଲେ :—

ବତ୍ସ ବିଶ୍ୱରୂପ ! ଅମ୍ଭେମାନେ ତୁମ୍ଭର ଆଶ୍ରମରେ ଅତିଥି ରୂପରେ ଉପସ୍ଥିତ ହୋଇଅଛୁ । ତୁମ୍ଭର ମଙ୍ଗଳ ହେଉ, ଅମ୍ଭେମାନେ ତୁମ୍ଭର ପିତୃତୁଲ୍ୟ, ଆମ୍ଭମାନଙ୍କର ବର୍ତ୍ତମାନ ସମୟୋଚିତ ଅଭିଳାଷ ତୁମ୍ଭେ ପୂରଣ କର । ୨୭ ।

---

ଶୁକ୍ରଙ୍କୁ ଆରାଧି ଅସୁରେ
ଐଶ୍ୱର୍ଯ୍ୟ ଲଭିଲେ ସ୍ୱର୍ଗରେ
ଗୋ ବିପ୍ର ଗୋବିନ୍ଦ ଯାହାର
ଠାକୁର ବିଘ୍ନ ନାହିଁ ତାର ।୨୪।
ଅଶେଷ ପ୍ରାଣିଙ୍କ ଈଶ୍ୱର
ଶୁଦ୍ଧ କରିବେ ଚକ୍ରଧର
ବିଶ୍ୱରୂପଙ୍କୁ ତୁମ୍ଭେ ଭଜ
ତୁମ୍ଭର କରିବ ସେ କାର୍ଯ୍ୟ

ସେ ବିପ୍ର ପ୍ରସନ୍ନ ହୋଇଲେ
ତୁମ୍ଭର ଦୁଃଖ ଯିବ ଭଲେ ।୨୫।
ଶୁକ କହିଲେ ଶୁଣ ରାଏ
ବ୍ରହ୍ମା ଯେ କହିଲେ ଉପାୟେ
ଶୁଣି ଦେବତାଏ ହରଷ
ବ୍ରହ୍ମାରେ ହୋଇଲେ ବିଶ୍ୱାସ
ଋଷିଙ୍କ ଠାବକୁ ସେ ଗଲେ
ହରଷେ ଆଲିଙ୍ଗନ କଲେ

ଏ ଅନନ୍ତରେ ତୁଷ୍ଟ ହୋଇ
ଦେବେ କହିଲେ କଥା ଏହି ।୨୬

ଶ୍ରୀ ଦେବାଊଚୁଃ

ଅମ୍ଭେ ଅତିଥି ହେଲୁଁ ଯହୁଁ
ତୁମ୍ଭ ଆଶ୍ରମ ଶୁଭ ହେଉ
ପିତୃମାନଙ୍କ କାମ ପୂର୍ଣ୍ଣ
କର ଏ ଯଥୋଚିତ ଧର୍ମ । ୨୭

ପୁତ୍ରାଣାଂ ହି ପରୋ ଧର୍ମଃ ପିତୃଶୁଶ୍ରୂଷଣଂ ସତାମ୍ ।
ଅପି ପୁତ୍ରବତାଂ ବ୍ରହ୍ମନ୍ କିମୁତ ବ୍ରହ୍ମଚାରିଣାମ୍ । ୨୮ ।
ଆଚାର୍ଯ୍ୟୋ ବ୍ରହ୍ମଣୋ ମୂର୍ତ୍ତି ପିତା ମୂର୍ତ୍ତିଃ ପ୍ରଜାପତେଃ ।
ଭ୍ରାତା ମରୁତ୍‌ପତେର୍ମୂର୍ତ୍ତିର୍ମାତାସାକ୍ଷାତ୍ କ୍ଷିତେସ୍ତନୁଃ । ୨୯ ।
ଦୟାୟା ଭଗିନୀମୂର୍ତ୍ତିର୍ଦ୍ଧର୍ମସ୍ୟାତ୍ମାତିଥିଃ ସ୍ୱୟମ୍ ।
ଅଗ୍ନେରଭ୍ୟାଗତୋ ମୂର୍ତ୍ତିଃ ସର୍ବଭୂତାନି ଚାତ୍ମନଃ । ୩୦ ।
ତସ୍ମାତ୍‌ପିତୃଣାମାର୍ତ୍ତାନାମାର୍ତ୍ତିଂ ପରପରାଭବମ୍ ।
ତପସାପନୟଂସ୍ତାତ ସନ୍ଦେଶଂ କର୍ତ୍ତୁମର୍ହସି । ୩୧ ।
ବୃଣୀମହେ ତ୍ୱୋପାଧ୍ୟାୟଂ ବ୍ରହ୍ମିଷ୍ଠଂ ବ୍ରାହ୍ମଣଂ ଗୁରୁମ୍ ।
ଯଥାଞ୍ଜସା ବିଜେଷ୍ୟାମଃ ସପତ୍ନାଂସ୍ତବ ତେଜସା । ୩୨ ।

---

ହେ ବ୍ରାହ୍ମଣ ! ଯେଉଁମାନେ ସତ୍‌ପୁତ୍ର ସେମାନେ ପୁତ୍ରବାନ୍ ହେଲେ ମଧ୍ୟ ପିତୃମାତୃଙ୍କର ଶୁଶ୍ରୂଷା ସେମାନଙ୍କର ଶ୍ରେଷ୍ଠଧର୍ମ, ପୁତ୍ର ଯଦି ବ୍ରହ୍ମଚାରୀ ହୁଏ ତେବେ ଆଉ କଣ କହିବା । ୨୮ ।

ଆଚାର୍ଯ୍ୟ, ଗୁରୁ, ସାକ୍ଷାତ୍ ବେଦର ପ୍ରତିମୂର୍ତ୍ତି, ପିତା ପ୍ରଜାପତିଙ୍କର ମୂର୍ତ୍ତି, ଭ୍ରାତା ଦେବଗଣଙ୍କର ମୂର୍ତ୍ତି, ମାତା ସାକ୍ଷାତ୍ ପୃଥିବୀର ମୂର୍ତ୍ତି । ୨୯ ।

ଭଗିନୀ ଦୟାର ମୂର୍ତ୍ତି, ଅତିଥି ସାକ୍ଷାତ୍ ଧର୍ମସ୍ୱରୂପ, ଅଭ୍ୟାଗତ ବ୍ୟକ୍ତି ଅଗ୍ନିମୂର୍ତ୍ତି, ସମସ୍ତପ୍ରାଣୀ ଭଗବାନଙ୍କର ମୂର୍ତ୍ତି । ୩୦ ।

ହେ ବତ୍ସ ବିଶ୍ୱରୂପ ! ଆମ୍ଭେମାନେ ତୁମ୍ଭର ପିତୃତୁଲ୍ୟ, ଅତ୍ୟନ୍ତ କାତର ହୋଇ ତୁମ୍ଭ ନିକଟରେ ଉପସ୍ଥିତ ହୋଇଅଛୁ । ତୁମ୍ଭେ ନିଜର ତପୋବଳରେ ଆମ୍ଭମାନଙ୍କର ଶତ୍ରୁ ପରାଭବ ଜନିତ ଦୁଃଖ ନିବାରଣ କର । ୩୧ ।

ତୁମ୍ଭେ ବ୍ରହ୍ମନିଷ୍ଠ ବ୍ରାହ୍ମଣ, ତୁମ୍ଭେ ତେଣୁ ଶ୍ରେଷ୍ଠ, ଆମ୍ଭେମାନେ ତୁମ୍ଭଙ୍କୁ ଗୁରୁରୂପେ ବରଣ କରୁଅଛୁ ତୁମ୍ଭର ପ୍ରଭାବରେ ଆମ୍ଭେମାନେ ଅନାୟାସରେ ଶତ୍ରୁଜୟ କରି ପାରିବୁ । ୩୨ । .

---

ଉତ୍ତମ ପୁତ୍ରଙ୍କର ଧର୍ମ
ଯେ ପିତୃଗଣ ଶୁଶ୍ରୂଷଣ
ଗୃହସ୍ଥଜନଙ୍କ ଏ ଧର୍ମ
ଅଧିକେ ବ୍ରହ୍ମଚାରୀର କର୍ମ । ୨୮ ।
ଆଚାର୍ଯ୍ୟ ବ୍ରହ୍ମାର ମୂରତି
ପିତା ପ୍ରତ୍ୟକ୍ଷେ ପ୍ରଜାପତି

ଭ୍ରାତା ଯେ ମୂରତି ଇନ୍ଦ୍ରର
ମାତା ସାକ୍ଷାତେ ପୃଥିବୀର
ଭଗ୍ନୀ ଯେ ଦୟାର ମୂରତି
ଧର୍ମ-ମୂରତି ଯେ ଅତିଥି
ଅଗ୍ନି ମୂରତି ଅଭ୍ୟାଗତ
ଆତ୍ମାର ମୂର୍ତ୍ତି ସର୍ବଭୂତ । ୨୯,୩୦

ଶତ୍ରୁ ସକାଶୁଁ ପରାଭବ
ଯେଣେ ପିତୃଙ୍କ ଆର୍ତ୍ତିର୍ଭବ
ଏହି କାରଣୁ ମୁନିବର
ତପସ୍ୟା ସାଧି ଏହା ହର । ୩୧
ଗୁରୁ ଉପାଧ୍ୟାୟ ବ୍ରାହ୍ମଣ
ବ୍ରହ୍ମିଷ୍ଠ ଯେତେ ତୁମ୍ଭ ଗୁଣ

ନ ଗର୍ହୟନ୍ତି ହ୍ୟର୍ଥେଷୁ ଯବିଷ୍ଠାଙ୍‌ଘ୍ର୍ୟଭିବାଦନମ୍ ।
ଛନ୍ଦୋଭ୍ୟୋଽନ୍ୟତ୍ର ନ ବ୍ରହ୍ମନ୍ ବୟୋ ଜ୍ୟୈଷ୍ଠ୍ୟସ୍ୟ କାରଣମ୍ । ୩୩ ।

ଶ୍ରୀଋଷିରୁବାଚ ।

ଅଭ୍ୟର୍ଥିତଃ ସୁରଗଣୈଃ ପୌରୋହିତ୍ୟେ ମହାତପାଃ ।
ସ ବିଶ୍ୱରୂପସ୍ତାନାହ ପ୍ରସନ୍ନଃ ଶ୍ଳକ୍ଷ୍ଣୟା ଗିରା । ୩୪ ।

ଶ୍ରୀବିଶ୍ୱରୂପ ଉବାଚ ।

ବିଗର୍ହିତଂ ଧର୍ମଶୀଲୈର୍ବ୍ରହ୍ମବର୍ଚ୍ଚଉପବ୍ୟୟମ୍ ।
କଥଂ ନୁ ମଦ୍‌ବିଧୋ ନାଥା ଲୋକେଶୈରଭିଯାଚିତମ୍ ।
ପ୍ରତ୍ୟାଖ୍ୟାସ୍ୟତି ତଚ୍ଛିଷ୍ୟଃ ସ ଏବ ସ୍ୱାର୍ଥ ଉଚ୍ୟତେ । ୩୫ ।
ଅକିଞ୍ଚନାନାଂ ହି ଧନଂ ଶିଲୋଞ୍ଛନଂ ତେନେହ ନିବର୍ତ୍ତିତସାଧୁସତ୍କ୍ରିୟଃ ।
କଥଂ ବିଗର୍ହ୍ୟଂ ନୁ କରୋମ୍ୟଧୀଶ୍ୱରାଃ ପୌରୋଧସଂ ହୃଷ୍ୟତି ଯେନ ଦୁର୍ମତିଃ ।୩୬।

---

ସମୁଚିତ ପ୍ରୟୋଜନରେ ବୟଃ କନିଷ୍ଠର ଚରଣ ବନ୍ଦନା କଲେ ମଧ୍ୟ ନିନ୍ଦନୀୟ ନୁହେଁ କାରଣ ବୟସରେ ଅଧିକ ହେଲେ ମଧ୍ୟ ତାହା ଶ୍ରେଷ୍ଠତ୍ୱ ହୋଇ ନ ପାରେ । ୩୩ ।

ଶ୍ରୀଋଷି କହିଲେ :—ମହାତପା ବିଶ୍ୱରୂପ ଦେବତାମାନଙ୍କର ପୌରହିତ୍ୟ କାର୍ଯ୍ୟରେ ବରିତ ହେବାକୁ ସମ୍ମତ ହୋଇ ମଧୁର ବାକ୍ୟରେ କହିଲେ । ୩୪ ।

ଶ୍ରୀବିଶ୍ୱରୂପ କହିଲେ :—

ହେ ମାନନୀୟ ଦେବଗଣ ! ପୌରହିତ୍ୟ କାର୍ଯ୍ୟ କଲେ ପୂର୍ବ ସଞ୍ଚିତ ବ୍ରହ୍ମତେଜ କ୍ଷୟ ହୁଏ, ଏଣେ ଇନ୍ଦ୍ରାଦି ଦେବଗଣ ମୋ ପରି ବ୍ୟକ୍ତିକୁ ପ୍ରାର୍ଥନା କରୁଅଛନ୍ତି, ତାହା ପ୍ରତ୍ୟାଖ୍ୟାନ କରିବି କିପରି ? ମୁଁ ଆପଣମାନଙ୍କର ଶିଷ୍ୟ ଅର୍ଥାତ୍ ଶାସନ ଯୋଗ୍ୟ, ଏପରି ପ୍ରତ୍ୟାଖ୍ୟାନ ନ କରିବା ଶିଷ୍ୟ ପକ୍ଷରେ ସ୍ୱାର୍ଥ ।୩୫

ହେ ପ୍ରଭୁଗଣ ! ଯେଉଁମାନେ ନିଃସ୍ୱ ସେମାନେ ଶିଳୋଞ୍ଛ ବୃତ୍ତିଦ୍ୱାରା ଲବ୍ଧ ବସ୍ତୁକୁ ପରମଧନ ବୋଲି ମନେ କରନ୍ତି । ମୁଁ ଗୃହସ୍ଥାଶ୍ରମରେ ଥିଲେ ମଧ୍ୟ ଶିଳୋଞ୍ଛବୃତ୍ତି * ଲବ୍ଧ ଧନଦ୍ୱାରା ସଜ୍ଜନ ସତ୍କାର କରି ଆସିଅଛି । ନିନ୍ଦନୀୟ ପୌରହିତ୍ୟ କାର୍ଯ୍ୟ ମୁଁ କାହିଁକି କରିବି ? ସେ କାର୍ଯ୍ୟ କରି ଦୁଷ୍ଟବୁଦ୍ଧି ଲୋକ ସନ୍ତୁଷ୍ଟ ହୁଅନ୍ତି । ୩୬ ।

---

| | | |
|---|---|---|
| ତୁମ୍ଭଙ୍କୁ କଲୁ ପୁରୋହିତ | ଶ୍ରୀ ଶୁକ ଉବାଚ— | ଶ୍ରୀ ବିଶ୍ୱରୂପ ଉବାଚ— |
| ଶତ୍ରୁଙ୍କୁ ଜିଣିବୁ ତୁରିତ | | |
| କାର୍ଯ୍ୟର ପ୍ରୟୋଜନ ପାଇଁ | ତାହାଙ୍କୁ ପୁରୋହିତ ପଣେ | ହେ ଦେବଗଣେ କହୁଁ ଶୁଣ |
| କନିଷ୍ଠ ପୂଜା ନିନ୍ଦା ନୋହି | ବରଣ କଲେ ଦେବଗଣେ | ଅସ୍ୱର୍ଯ୍ୟ କାର୍ଯ୍ୟ ଦୋଷ ଗୁଣ |
| ବୟସେ ହେଲେହେଁ କନିଷ୍ଠ | ମୁନି ବିଶ୍ୱରୂପ ହସିଲେ | ନିନ୍ଦିତ କାର୍ଯ୍ୟ ପୌରୋହିତ୍ୟ |
| ଜ୍ଞାନରେ ଅଟ ତୁମ୍ଭେ ଜ୍ୟେଷ୍ଠ ।୩୨।୩୩ | ଦେବତାମାନଙ୍କୁ ବୋଇଲେ ।୩୪ | କର୍ପା ଆଗ୍ରହ ତୁମ୍ଭେ ମୋତେ |

---

* ଶିଳୋଞ୍ଛ ବୃତ୍ତି—କ୍ଷେତ୍ରପତିତାନାଂ ଉପେକ୍ଷିତାନାଂ କଣିଶାନାଂ ଉପାଦାନଂ ଶୀଳମ୍ । ହଟ୍ଟାଦୌ ପତିତାନାଂ ଧାନ୍ୟାଦିନାଂ ଏକୈକଶଃ ସଂଗ୍ରହଃ ଉଞ୍ଛନମ୍, ଅର୍ଥାତ୍ ଅକିଞ୍ଚନାନାଂ ଧନମ୍ । ଇତି ଶ୍ରୀଧରସ୍ୱାମୀ

ତଥାପି ନ ପ୍ରତିବ୍ରୂୟାଂ ଗୁରୁଭିଃ ପ୍ରାର୍ଥିତଂ କିୟତ୍ ।
ଭବତାଂ ପ୍ରାର୍ଥିତଂ ସର୍ବଂ ପ୍ରାଣୈରର୍ଥୈଶ୍ଚ ସାଧୟେ । ୩୭ ।
ଶ୍ରୀବାଦରାୟଣିରୁବାଚ ।
ତେଭ୍ୟ ଏବଂ ପ୍ରତିଶ୍ରୁତ୍ୟ ବିଶ୍ୱରୂପୋ ମହାତପାଃ ।
ପୌରୋହିତ୍ୟଂ ବୃତଶ୍ଚକ୍ରେ ପରମେଣ ସମାଧିନା । ୩୮ ।
ସୁରଦ୍ୱିଷାଂ ଶ୍ରିୟଂ ଗୁପ୍ତାମୌଶନସ୍ୟାପି ବିଦ୍ୟୟା ।
ଆଚ୍ଛିଦ୍ୟାଦାନ୍ମହେନ୍ଦ୍ରାୟ ବୈଷ୍ଣବ୍ୟା ବିଦ୍ୟୟା ବିଭୁଃ । ୩୯ ।
ଯୟା ଗୁପ୍ତଃ ସହସ୍ରାକ୍ଷୋ ଜିଗ୍ୟେଽସୁରଚମୂର୍ବିଭୁଃ ।
ତାଂ ପ୍ରାହ ସ ମହେନ୍ଦ୍ରାୟ ବିଶ୍ୱରୂପ ଉଦାରଧୀଃ । ୪୦ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ବିଶ୍ୱରୂପୋପାଖ୍ୟାନେ ନାମ ସପ୍ତମୋଽଧ୍ୟାୟଃ । ୭ ।

---

ତଥାପି ଆପଣମାନେ ଗୁରୁଜନ, ଆପଣମାନଙ୍କର ଅନୁରୋଧ ମୁଁ ଉପେକ୍ଷା କରିପାରୁ ନାହିଁ । ଏ ପ୍ରାର୍ଥନା ଅତି ସାମାନ୍ୟ, ଆପଣମାନଙ୍କର ପ୍ରାର୍ଥନା ମୁଁ ଅର୍ଥ ଓ ପ୍ରାଣ ଦେଇ ସମ୍ପାଦନ କରିବାକୁ ପ୍ରସ୍ତୁତ ଅଛି ।୩୭।

ଶ୍ରୀଶୁକଦେବ କହିଲେ :—

ଦେବଗଣଙ୍କ ଉକ୍ତିକ ପୌରହିତ୍ୟ କାର୍ଯ୍ୟରେ ବୃତହୋଇ ମହାତପା ବିଶ୍ୱରୂପ ସେମାନଙ୍କ ନିକଟରେ ଏହିରୂପେ ପ୍ରତିଶ୍ରୁତ ହୋଇ ଅତ୍ୟନ୍ତ ଏକାଗ୍ରତା ସହିତ ପୌରହିତ୍ୟ କାର୍ଯ୍ୟ କରିଥିଲେ । ୩୮ ।

ଶୁକ୍ରାଚାର୍ଯ୍ୟଙ୍କ ପ୍ରଭାବରେ ଅସୁରମାନେ ସମ୍ପଦଶାଳୀ ହୋଇଥିଲେ ମଧ୍ୟ ବିଶ୍ୱରୂପ ବୈଷ୍ଣବୀ ବିଦ୍ୟା ପ୍ରଭାବରେ ସେମାନ କାଢ଼ିନେଇ ଇନ୍ଦ୍ରଙ୍କୁ ପ୍ରଦାନ କରିଥିଲେ । ୩୯ ।

ସ୍ୱର୍ଗରାଜ ଇନ୍ଦ୍ର ବୈଷ୍ଣବୀ ବିଦ୍ୟାରକ୍ଷିତ ହୋଇ ଅସୁରମାନଙ୍କୁ ଜୟ କରିଥିଲେ ଏବଂ ଉଦାରଚେତା ବିଶ୍ୱରୂପ ଇନ୍ଦ୍ର ଦେବଙ୍କୁ ସେହି ବୈଷ୍ଣବୀ ବିଦ୍ୟା ପ୍ରଦାନ କରିଥିଲେ । ୪୦ ।

---

ହେ ଅଧୀଶ୍ୱର ତୁମ୍ଭେ ଶୁଣ
ଅର୍ଥେ ମୋ ନାହିଁ ପ୍ରୟୋଜନ
କପାଇଁ ତୁଚ୍ଛ ବୃତ୍ତି କରି
ପୁରୋହିତ ପଣ ଆଚରି
ତଥାପି ତୁମ୍ଭର ପ୍ରାର୍ଥିତ
ଆମ୍ଭର କରିବା ଉଚିତ
ତୁମ୍ଭର ଯେତେ କଥାମାନ
ସାଧିବୁ ଶୁଣ ଦେବଗଣ ।୩୬-୩୭।

ଶ୍ରୀ ବାଦରାୟଣିରୁବାଚ—
ଏ ଅନନ୍ତରେ ବିଶ୍ୱରୂପ
ବରଣ ହୋଇ ଶୁଣ ନୃପ
ଶ୍ରୀକୃଷ୍ଣ ବୋଲି ସେ ସୁମରି
ପରମସମାଧିରେ କରି
ଶୁକ୍ରର ବିଦ୍ୟାବଳେଁ କରି
ଅସୁରଙ୍କର ଯେତେ ଶିରୀ
ଇନ୍ଦ୍ରେ କରିଥିଲେ ନାଶ
ଶୁଣ ରାଜନ ଇତିହାସ
ବୈଷ୍ଣବୀ ବିଦ୍ୟା ବୋଲି ଯାହା
ଇନ୍ଦ୍ରର ଅର୍ଥେ ଆଣି ତାହା
ଇନ୍ଦ୍ରକୁ ଆଣି ତାହା ଦେଲେ
ଯାହାକୁ ଅସୁରେ ଶଙ୍କିଲେ
ସେ ବିଦ୍ୟା ପ୍ରଭାବରୁ ଇନ୍ଦ୍ର
ଜିଣିଲ ଦାନବଙ୍କ ବୃନ୍ଦ
ଦେଲେ ଇନ୍ଦ୍ରଙ୍କୁ ବିଦ୍ୟାଧାରି
ମହିତ ବିଶ୍ୱରୂପ ଧୀର ।୩୮-୪୦।
ଇନ୍ଦ୍ରର ଗୁରୁଦ୍ରୋହ ଦୋଷ
କହିଲ ଜଗନ୍ନାଥ ଦାସ

## ବିଶଦାର୍ଥ—

ଷଷ୍ଠ ଓ ସପ୍ତମ ଅଧ୍ୟାୟ ପ୍ରସଙ୍ଗରେ ବିଶଦାର୍ଥ ଲେଖିବାର ବିଶେଷ ପ୍ରୟୋଜନ ନାହିଁ, ଏହି ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ବିଷୟମାନ ସହଜରେ ବୋଧଗମ୍ୟ ହେଉଅଛି । ସପ୍ତମ ଅଧ୍ୟାୟ ପ୍ରସଙ୍ଗରେ ଏତିକିମାତ୍ର କହିଲେ ଯଥେଷ୍ଟ ହେବ ଯେ ଗର୍ବ ପତନର ହେତୁ ଅଟେ, ଏପରିକି ଦେବରାଜ ଇନ୍ଦ୍ର ମଧ୍ୟ ଐଶ୍ୱର୍ଯ୍ୟ ମଦମତ୍ତ ହୋଇ ଦେବଗୁରୁ ବୃହସ୍ପତିଙ୍କୁ ଅବମାନନା କରି ନିଜର ପତନକୁ ବରଣ କରିଥିଲେ । ଦେବଭାବ ଓ ଆସୁରଭାବ ମଧ୍ୟରେ ମନୁଷ୍ୟ ହୃଦୟରେ ଜଗତରେ ନିତ୍ୟ ବିରୋଧ ଲାଗିଅଛି, ମନୁଷ୍ୟ ଯେତେବେଳେ ଐଶ୍ୱର୍ଯ୍ୟ ମଦମତ୍ତ ହୁଏ ଆସୁରିପ୍ରଭାବ ତାହାକୁ ଆକ୍ରମଣ କରେ, ଇନ୍ଦ୍ରଙ୍କର ସେହି ଦୁର୍ଦ୍ଦଶା ଘଟିଥିଲା । ବ୍ରହ୍ମଆରାଧନା ଦ୍ୱାରା ମନୁଷ୍ୟ ସେହି ଆସୁରି ପ୍ରଭାବରୁ ରକ୍ଷା ପାଇଥାଏ । ଇନ୍ଦ୍ର ବ୍ରହ୍ମାଙ୍କର ଆରାଧନା କରି ବିଶ୍ୱରୂପଙ୍କୁ ଗୁରୁପଦରେ ବରଣ କରିବାକୁ ଉପଦେଶ ଲାଭ କରିଥିଲେ, ବିଶ୍ୱରୂପ ତପସ୍ୱୀ ଓ ତପ ପ୍ରଭାବରେ ଅସୀମ ପ୍ରଭାବଶାଳୀ ବ୍ରାହ୍ମଣ ବିଶ୍ୱରୂପ ଦେବତାମାନଙ୍କ ଅପେକ୍ଷା ବୟୋକନିଷ୍ଠ ହେଲେ ମଧ୍ୟ ଜ୍ଞାନ ବୃଦ୍ଧ, ବୟସ ମନୁଷ୍ୟକୁ ଶ୍ରେଷ୍ଠତ୍ୱ ବା ଗୁରୁତ୍ୱର ଅଧିକାରୀ କରେନାହିଁ, ଜ୍ଞାନ ଓ ଶକ୍ତି ସେହି ଗୁରୁତ୍ୱର କାରଣ, ବିଶ୍ୱରୂପ ଉଭୟ ସଙ୍କଟରେ ପଡ଼ିଲେ । ଏକପକ୍ଷରେ ବୟୋଜ୍ୟେଷ୍ଠ ଦେବତାମାନଙ୍କର ଅନୁରୋଧ, ପକ୍ଷାନ୍ତରରେ ପୌରହିତ୍ୟ କାର୍ଯ୍ୟ ନିନ୍ଦନୀୟ । ପୌରହିତ୍ୟ ଦ୍ୱାରା ବ୍ରହ୍ମତେଜ ନଷ୍ଟ ହେବାର ସମ୍ଭାବନା, ପୌରହିତ୍ୟ ବୃତ୍ତିକୁ ଶୀଳୋଞ୍ଛ ବୃତ୍ତି ସଙ୍ଗେ ତୁଳନା କରାଯାଇଅଛି, ନିଃସ୍ୱ ବ୍ୟକ୍ତି ଅନ୍ୟର କ୍ଷେତ୍ରରୁ ବା ଗୃହପତିମାନଙ୍କର ଗୃହ ସମ୍ମୁଖରେ ପଡ଼ିଥିବା ଧାନ୍ୟାଦି ଶସ୍ୟ କଣିକା ସଂଗ୍ରହ କରି ଜୀବନ ଯାତ୍ରା ନିର୍ବାହ କଲା ପରି ପୁରୋହିତଙ୍କର ବ୍ୟବସାୟ । ମହର୍ଷି ବଶିଷ୍ଠ ପୌରହିତ କାର୍ଯ୍ୟକୁ ଅତ୍ୟନ୍ତ ନିନ୍ଦନୀୟ ବୋଲି ଉଲ୍ଲେଖ କରି କହିଥିଲେ "ପୌରୋହିତ୍ୟ ମହଂଜାନେ ଗର୍ହିତଂ ସର୍ବକର୍ମସୁ" ମୁଁ ଜାଣେ ପୌରୋହିତ୍ୟ କର୍ମ ଅତ୍ୟନ୍ତ ନିନ୍ଦନୀୟ କିନ୍ତୁ କେବଳ ଭଗବାନ ଶ୍ରୀରାମଚନ୍ଦ୍ର ଏହି ବଂଶରେ ଜନ୍ମଗ୍ରହଣ କରିବେ ଏବଂ ତାହାଙ୍କର ଅନୁଗ୍ରହରୁ ମୁଁ ପରମଗତି ଲାଭକରିବି, ତେଣୁ ରଘୁବଂଶର ପୌରୋହିତ୍ୟ ଗ୍ରହଣକରୁଛି । ବିଶ୍ୱରୂପ ଦେବତାମାନଙ୍କର ଅନୁରୋଧ ଏଡ଼ି ନ ପାରି ପୌରହିତ୍ୟ ଗ୍ରହଣ କରିଥିଲେ । ତାହାଙ୍କର ତପଃ ପ୍ରଭାବରେ ଦେବଗଣଙ୍କ ଉପରୁ ଆସୁରି ପ୍ରଭାବ ଦୂରୀଭୂତ ହୋଇ ସେ ପୂର୍ବ ସମ୍ପଦ ଲାଭ କରିଥିଲେ । ବିଶ୍ୱରୂପ ବୈଷ୍ଣବ ମନ୍ତ୍ର ଦ୍ୱାରା ଏହି ଦୁଷ୍କର କାର୍ଯ୍ୟ ସମ୍ପାଦନ କରିଥିଲେ । ବିଷ୍ଣୁଶକ୍ତି ଭଗବଦ୍ ପ୍ରଭାବ ମନୁଷ୍ୟ ହୃଦୟରୁ ସେହିପରି ଆସୁରିଭାବ ଦୂର କରି ତାହାକୁ ସୁଶୀଳ ଓ ନିର୍ମଳ କରି ସୁଗତି ପ୍ରଦାନ କରେ ।



## ଅ ଷ୍ଟ ମ ଅ ଧ୍ୟା ୟ ।

ଅଷ୍ଟମେ ବିଶ୍ୱରୂପସ୍ତୁ ବର୍ମ୍ମ ନାରାୟଣାତ୍ମକମ୍ ।
ଇନ୍ଦ୍ରାୟ ପ୍ରାହ ଯେନେନ୍ଦ୍ରୋ ଗୁପ୍ତୋ ଦୈତ୍ୟାନଥାଜୟତ୍ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀରାଜୋବାଚ ।

ଯୟା ଗୁପ୍ତଃ ସହସ୍ରାକ୍ଷଃ ସବାହାନ୍ ରିପୁସୈନିକାନ୍ ।
କ୍ରୀଡ଼ନ୍ନିବ ବିନିର୍ଜିତ୍ୟ ତ୍ରିଲୋକ୍ୟା ବୁଭୁଜେ ଶ୍ରିୟମ୍ । ୧ ।
ଭଗବଂସ୍ତନ୍ମମାଖ୍ୟାହି ବର୍ମ୍ମ ନାରାୟଣାତ୍ମକମ୍ ।
ଯଥାତତାୟିନଃ ଶତ୍ରୂନ୍ ଯେନ ଗୁପ୍ତୋଽଜୟନ୍ମୃଧେ । ୨ ।

ଶ୍ରୀବାଦରାୟଣିରୁବାଚ ।

ବୃତଃ ପୁରୋହିତସ୍ତ୍ୱାଷ୍ଟ୍ରୋ ମହେନ୍ଦ୍ରାୟାନୁପୃଚ୍ଛତେ ।
ନାରାୟଣାଖ୍ୟଂ ବର୍ମାହ ତଦିହୈକମନାଃ ଶୃଣୁ । ୩ ।

---

### ଇନ୍ଦ୍ରଙ୍କର ଦୈତ୍ୟଜୟ ।

ଅଷ୍ଟମଅଧ୍ୟାୟରେ ବିଶ୍ୱରୂପ ଇନ୍ଦ୍ରଙ୍କୁ ନାରାୟଣ ବର୍ମ ଉପଦେଶ ଦିଅନ୍ତେ ଇନ୍ଦ୍ର ଅସୁରଙ୍କୁ ଜୟ କରିଥିଲେ ।୦।

ଶ୍ରୀ ରାଜା ପରୀକ୍ଷିତ କହିଲେ :—ଇନ୍ଦ୍ର ବୈଷ୍ଣବ ମନ୍ତ୍ର ପ୍ରଭାବରେ ରକ୍ଷିତ ହୋଇ ହସ୍ତି, ଅଶ୍ୱ, ଯାନ, ବାହାନସହ ଅସୁର ସୈନ୍ୟ ମାନଙ୍କୁ ଅନାୟାସରେ ପରାଜୟ କରି ତ୍ରିଭୁବନ ସମ୍ପଦ ଭୋଗ କରିଥିଲେ ତାହା ମୋତେ କହନ୍ତୁ । ୧ ।

ହେ ଭଗବନ୍ ! ଇନ୍ଦ୍ର ଯେଉଁ କବଚଦ୍ୱାରା ରକ୍ଷିତ ହୋଇ ଯୁଦ୍ଧ କ୍ଷେତ୍ରରେ ଶତ୍ରୁମାନଙ୍କୁ ଜୟ କରିଥିଲେ ସେହି ନାରାୟଣ କବଚ ପ୍ରସଙ୍ଗ ଆପଣ ମୋତେ କହନ୍ତୁ । ୨ ।

ଶ୍ରୀଶୁକଦେବ କହିଲେ :—ବିଶ୍ୱରୂପ ଇନ୍ଦ୍ରାଦିଙ୍କର କର୍ତ୍ତୃକ ପୌରହିତ୍ୟ କାର୍ଯ୍ୟରେ ବୃତ ହେଲା ପରେ ତାହାଙ୍କର କଲ୍ୟାଣ ଲାଗି ଇନ୍ଦ୍ରଙ୍କୁ ଯେଉଁ ନାରାୟଣ କବଚ ପ୍ରସଙ୍ଗ କହିଥିଲେ ବର୍ତ୍ତମାନ ମୁଁ ତାହା ଆପଣଙ୍କ ଆଗରେ କହୁଅଛି ଏକାଗ୍ରଚିତ୍ତରେ ଶ୍ରବଣ କରନ୍ତୁ । ୩ ।

---

ଅଷ୍ଟମେ ବିଶ୍ୱରୂପ ପୁଣ, ଇନ୍ଦ୍ରକୁ ବର୍ମ ନାରାୟଣ । ଦିଅନ୍ତେ ଇନ୍ଦ୍ର ଯେହିକାଳେ, ଦଇତ ଜିଣିଲେ ସେ ହେଳେ ।୦।

ଶ୍ରୀ ରାଜୋବାଚ—

ହେ ମୁନି ଶୁଣ ସାବଧାନେ
ଯେ ତୁମ୍ଭେ କହିଲ ବିଧାନେ
ଯେଉଁଣେ ରକ୍ଷିତ ଇନ୍ଦ୍ରହୋଇ
ସ୍ୱର୍ଗେ ରାଜଭୋଗ ଭୁଞ୍ଜଇ
ଗଜ ତୁରଗ ରଥୁବଳେ
ଲୀଳା ମାତ୍ରକେ ଜିଣି ହେଳେ
ତ୍ରୈଲୋକ୍ୟ ଅଶେଷ ସମ୍ପଦ
ଭୁଞ୍ଜୁଅଛଇ ଅପ୍ରମାଦ
ହେ ସ୍ୱାମି ! ମୋତେ ଯେବେ ଦୟା
ବିସ୍ତାରି କହ ମୋତେ ଏହା
କେମନ୍ତ ବର୍ମ ନାରାୟଣ
ଇନ୍ଦ୍ରର ରକ୍ଷାର କାରଣ
ଯେ ବର୍ମ୍ମ ବଳେ ଶତ୍ରୁ ଜିଣି
ସ୍ୱର୍ଗେ ନିର୍ଭୟ ବଜ୍ରପାଣି ।୧,୨

ଶ୍ରୀ ବାଦରାୟଣିରୁବାଚ

ଇନ୍ଦ୍ର ଜନନ୍ତେ ହୋଇ ବୃତ
ପ୍ରସନ୍ନ ହୋଇ ପୁରୋହିତ
ଯେ ବର୍ମ୍ମ ନାମ ନାରାୟଣ
କହିବା ଏକମନେ ଶୁଣ । ୩ ।

ଶ୍ରୀବିଶ୍ୱରୂପ ଉବାଚ ।
ଧୌତାଙ୍ଘ୍ରିପାଣିରାଚମ୍ୟ ସପବିତ୍ର ଉଦଙ୍‌ମୁଖଃ ।
କୃତସ୍ୱାଙ୍ଗକରନ୍ୟାସୋ ମନ୍ତ୍ରାଭ୍ୟାଂ ବାଗ୍‌ୟତଃ ଶୁଚିଃ । ୪ ।
ନାରାୟଣପରଂ ବର୍ମ୍ମ ସନ୍ନହ୍ୟେଦ୍‌ଭୟ ଆଗତେ ।
ପାଦୟୋର୍ଜାନୁନୋରୂର୍ବୋରୁଦରେ ହୃଦ୍ୟଥୋରସି । ୫ ।
ମୁଖେ ଶିରସ୍ୟାନୁପୂର୍ବ୍ୟାଦୋଙ୍କାରାଦୀନି ବିନ୍ୟସେତ୍ ।
ଓଁ ନମୋ ନାରାୟଣାୟେତି ବିପର୍ଯ୍ୟୟମଥାପି ବା । ୬ ।
କରନ୍ୟାସଂ ତତଃ କୁର୍ଯ୍ୟାଦ୍ଦ୍ୱାଦଶାକ୍ଷରବିଦ୍ୟୟା ।
ପ୍ରଣବାଦିୟକାରାନ୍ତମଙ୍ଗୁଲ୍ୟଙ୍ଗୁଷ୍ଠପର୍ବସୁ । ୭ ।
ନ୍ୟସେଦ୍ଧୃଦୟ ଓଁକାରଂ ବିକାରମନୁମୂର୍ଦ୍ଧନି ।
ଷକାରନ୍ତୁ ଭ୍ରୁବୋର୍ମଧ୍ୟେ ଣକାରଂ ଶିଖୟା ନ୍ୟସେତ୍ । ୮ ।

ଶ୍ରୀବିଶ୍ୱରୂପ କହିଲେ :—

ହସ୍ତପଦ ପ୍ରକ୍ଷାଳନ କରି ଆଚମନ କରି ସପବିତ୍ରହସ୍ତରେ ଉତ୍ତର ମୁଖ ହୋଇ ଅଷ୍ଟାକ୍ଷର ଓ ଦ୍ୱାଦଶାକ୍ଷର ମନ୍ତ୍ରରେ ଅଙ୍ଗନ୍ୟାସ ଓ କରନ୍ୟାସ କରି ବାକ୍ ସଂଯମନ ପୂର୍ବକ ନାରାୟଣ କବଚ ଧାରଣ କରିବ ।୪।

ବିପଦ ଉପସ୍ଥିତ ହେଲେ, ନାରାୟଣ ସ୍ୱରୂପ ଶ୍ରେଷ୍ଠ କବଚ ଧାରଣ କରିବ । ଅଙ୍ଗ ନ୍ୟାସ—ଓଁ ନମୋ ନାରାୟଣାୟ, ଏହି ଅଷ୍ଟାକ୍ଷର ମନ୍ତ୍ରକୁ ଗୋଟିଏ ଗୋଟିଏ ଅକ୍ଷରଦ୍ୱାରା ପଦଦ୍ୱୟ, ଜାନୁଦ୍ୱୟ, ଉଦର ଉରୁଯୁଗଳ, ବକ୍ଷସ୍ଥଳ ମୁଖ ଏବଂ ମସ୍ତକ ଏହି ଆଠସ୍ଥାନ କ୍ରମଶଃ ସ୍ପର୍ଶ କରି ଅଙ୍ଗନ୍ୟାସ କରିବ ।୫,୬।

କରନ୍ୟାସ :—

ଅଙ୍ଗନ୍ୟାସ ଉତ୍ତାରୁ ଦୁଇ ହସ୍ତର ତର୍ଜନୀ ପ୍ରଭୃତି ଅଙ୍ଗୁଳିରେ ଏବଂ ଅଙ୍ଗୁଷ୍ଠର ମୂଳ ଓ ପର୍ବସ୍ଥାନରେ "ଓଁ ନମୋ ଭଗବତେ ବାସୁଦେବାୟ" ଏହି ଦ୍ୱାଦଶାକ୍ଷରକୁ ଓଁକାରଠାରୁ ଆରମ୍ଭକରି 'ୟ' ପର୍ଯ୍ୟନ୍ତ ନ୍ୟାସ କରିବ । ୭ ।

( ଅନ୍ୟ ପ୍ରକାରରେ ନ୍ୟାସ କୁହାଯାଉ ଅଛି )

ବକ୍ଷସ୍ଥଳରେ ଓଁକାର, ମସ୍ତକରେ 'ବି' ଭ୍ରୂମଧ୍ୟରେ 'ଷ' ଶିଖାରେ 'ଣ' ନ୍ୟାସ କରିବ । ୮ ।

ଶ୍ରୀ ବିଶ୍ୱରୂପ ଉବାଚ

କର ଚରଣ ଜଳେ ଧୋଇ
ଗଣ୍ଡୂଷ ଉଦଙ୍ମୁଖ ହୋଇ
ମନ୍ତ୍ରରେ କରି ଅଙ୍ଗନ୍ୟାସ
ମଉନ ଶୁଚ ହୋଇ ତୋଷ
ଯେବଣ ବର୍ମ୍ମେ ନାରାୟଣ
ତୋଷ ହୋଇବେ ତତକ୍ଷଣ

ନିକଟ ଭୟ ଯେତେବେଳେ
ଜାନୁ ଚରଣ ବକ୍ଷସ୍ଥଳେ
ଉଦର ହୃଦୟ ମୁଖରେ
ଓଁକାର ଆଦି ଦେଇ ଶିରେ
ଓଁକାର ଆଦି ନାରାୟଣ
ଉଚ୍ଚାର କରିବ ତକ୍ଷଣ । ୪-୬।
କରେ କରିବ କରନ୍ୟାସ
ଯେ ବିଦ୍ୟା ଅକ୍ଷର ଦ୍ୱାଦଶ

ପ୍ରଣବ ଆଦି କରି ଯେତେ
କରିବ ୟକାର ପର୍ଯ୍ୟନ୍ତେ
ଅଙ୍ଗୁଳି ଅଙ୍ଗୁଷ୍ଠ ପର୍ବରେ
ଯଥାକ୍ରମେ ଦେଇ ଅକ୍ଷରେ
ହୃଦରେ ଦେଇଣ ଓଁକାର
ମସ୍ତକେ ଦେବ ସେ ବିଂକାର
'ଷ' କାର ଭ୍ରୂଯୁଗେ ଦେଇ
'ଣ'କାର ଶିଖାରେ ବସାଇ

ବେକାରଂ ନେତ୍ରୟୋର୍ୟୁଞ୍ଜ୍ୟାନ୍ନକାରଂ ସର୍ବସନ୍ଧିଷୁ ।
ମ କାରମସ୍ତ୍ରମୁଦ୍ଦିଶ୍ୟ ମନ୍ତ୍ରମୂର୍ତ୍ତିର୍ଭବେଦ୍‌ବୁଧଃ । ।
ସବିସର୍ଗଂ ଫଡ଼ନ୍ତଂ ତତ୍ ସର୍ବଦିକ୍ଷୁ ବିନିର୍ଦ୍ଦିଶେତ୍ ।
"ଓଁ ବିଷ୍ଣବେ ନମଃ ଇତି" । ୧୦ ।
ଆତ୍ମାନଂ ପରମଂ ଧ୍ୟାୟେଦ୍ଧ୍ୟେୟଂ ଷଟ୍‌ଶକ୍ତିଭିର୍ଯୁତମ୍ ।
ବିଦ୍ୟାତେଜସ୍ତପୋମୂର୍ତ୍ତିମିମଂ ମନ୍ତ୍ରମୁଦାହରେତ୍ । ୧୧ ।
ଓଁ ହରିର୍ବିଦଧ୍ୟାନ୍ମମ ସର୍ବରକ୍ଷାଂ ନ୍ୟସ୍ତାଙ୍ଘ୍ରିପଦ୍ମଃ ପତଗେନ୍ଦ୍ର ପୃଷ୍ଠେ ।
ଦରାରିଚର୍ମାସିଗଦେଷୁଚାପପାଶାନ୍ ଦଧାନୋଽଷ୍ଟଗୁଣୋଽଷ୍ଟବାହୁଃ । ୧୨ ।
ଜଳେଷୁ ମାଂ ରକ୍ଷତୁ ମତ୍ସ୍ୟମୂର୍ତ୍ତିର୍ଯାଦୋଗଣେଭ୍ୟୋ ବରୁଣସ୍ୟ ପାଶାତ୍ ।
ସ୍ଥଳେଷୁ ମାୟାବଟୁ ବାମନୋଽବ୍ୟାତ୍ ତ୍ରିବିକ୍ରମଃ ଖେଽବତୁ ବିଶ୍ୱରୂପଃ ।୧୩।

---

ନେତ୍ର ଦ୍ୱୟରେ 'ବେ' ଏବଂ ସର୍ବ ସନ୍ଧିସ୍ଥଳରେ 'ନ' ଏହି ଅକ୍ଷରରେ ନ୍ୟାସ କରିବ, ତଦନନ୍ତର ଜ୍ଞାନୀ ସାଧକ 'ମ' ଅକ୍ଷରକୁ ଅସ୍ତ୍ରରୂପେ ଚିନ୍ତା କରି ସ୍ୱୟଂ ମନ୍ତ୍ରରୂପି ହେବ ଅର୍ଥାତ୍ ମନ୍ତ୍ର ସହିତ ଏକ ବୋଲି ଜ୍ଞାନ କରିବ, ତଦନନ୍ତର ମକାରକୁ ବିସର୍ଗଯୁକ୍ତ କରି ତାହାର ଶେଷରେ "ଫଟ୍" ଯୋଗକରି ଚତୁର୍ଦ୍ଦିଗରେ ନ୍ୟାସ କରିବ, ଯେଉଁ ମନ୍ତ୍ରର ଅକ୍ଷର ସମଷ୍ଟି "ଓଁ ବିଷ୍ଣବେ ନମଃ" । ୯,୧୦ ।

ଷଡ଼୍ୈଶ୍ୱର୍ଯ୍ୟଶାଳୀ ପରମାତ୍ମସ୍ୱରୂପ ଭଗବାନଙ୍କୁ ଚିନ୍ତାକରିବ, ଓ ବିଦ୍ୟା ତେଜ ଓ ତପସ୍ୟା ସ୍ୱରୂପ ମନ୍ତ୍ର ( ଯାହାକି ଜନ୍ମରେ କୁହାଯାଉଅଛି ) ତାହା ଜପ କରିବ । ୧୧ ।

ଯାହାଙ୍କର ପାଦପଦ୍ମ ପକ୍ଷୀରାଜ ଗରୁଡ଼ ପୃଷ୍ଠରେ ସ୍ଥାପିତ, ଯେ ଅଷ୍ଟବାହୁ ସମନ୍ୱିତ, ଯାହାଙ୍କର ହସ୍ତରେ ଶଙ୍ଖ, ଚକ୍ର, ଚର୍ମ, ଅସି, ଗଦା, ବାଣ, ଧନୁ ଓ ପାଶ ବିଦ୍ୟମାନ ଏବଂ ଯେ ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟ ସମ୍ପନ୍ନ, ସେହି ବ୍ରହ୍ମା, ବିଷ୍ଣୁ, ମହେଶ୍ୱରାତ୍ମକ ଶ୍ରୀହରି ମୋତେ ସମସ୍ତ ବିପଦରୁ ରକ୍ଷା କରନ୍ତୁ ।୧୨।

ବିଶ୍ୱରୂପୀ ଭଗବାନ୍ ମତ୍ସ୍ୟରୂପରେ ମୋତେ ଜଳଜନ୍ତୁ ଓ ବରୁଣ ପାଶରୁ ରକ୍ଷା କରନ୍ତୁ, ମାୟା ବଶରେ ଯେ ବାମନ ମୂର୍ତ୍ତି ଧାରଣ କରିଥିଲେ ସେହି ମୂର୍ତ୍ତିରେ ମୋତେ ସ୍ଥଳପଥରେ ରକ୍ଷା କରନ୍ତୁ ଏବଂ ତ୍ରିବିକ୍ରମ ମୂର୍ତ୍ତିରେ ମୋତେ ଆକାଶ ପଥରେ ରକ୍ଷା କରନ୍ତୁ । ୧୩ ।

---

"ବେ" କାର ନୟନ ମଧ୍ୟରେ
"ନ"କାର ସକଳ ସନ୍ଧିରେ
"ମ"କାର କରିଣ ସ୍ମରଣ
ମନ୍ତ୍ରସ୍ୱରୂପେ ହୋଇ ଜନ
"ବିଷ୍ଣବେ ନମଃ" ଉଚ୍ଚାରିବ
'ଓଁ'କାରଭଜିଆଦ୍ୟେଦେବ ।୭-୧୦
ପରମଆତ୍ମା ଏହି ମନ୍ତ୍ରେ
ଧ୍ୟାନ କରିବ ଅବିରତେ

ଷଡ ଶକତିଯୁକ୍ତ ରୂପ
ଅନାଦି ବିଦ୍ୟା ଶୁଦ୍ଧ ସତ୍ତ୍ୱ ।୧୧।
ଯେ ହରି ଗରୁଡ଼ ପୃଷ୍ଠରେ
ପାଦପଦ୍ମ ଦେଇଛନ୍ତି ଶିରେ
ଯେ ଅଷ୍ଟ ବାହୁରେଣ କରି
ଚର୍ମ ଅସି ଗଦାକୁ ଧରି
ଶଙ୍ଖ ପାଶ ଇକ୍ଷୁ ଧ୍ୱଜରେ
ରଖନ୍ତୁ ମୋତେ ଚକ୍ରଧରେ ।୧୨।

ଯେ ଜଳେ ମତ୍ସ୍ୟରୂପ ହୋଇ
ସେ ପ୍ରଭୁ ରକ୍ଷାକରୁ ଦେହି
ଜଳଜନ୍ତୁଙ୍କ ସକାଶରୁ
ରଖିବେ ବରୁଣ ପାଶରୁ
ମାୟା ବାମନରୂପ ସ୍ଥଳେ
ସେ ରକ୍ଷାକରୁ ଅବହେଳେ
ତ୍ରିବିକ୍ରମ ରଖୁ ଭୂମିରେ
ବିଶ୍ୱରୂପ ଯେ ଆକାଶରେ ।୧୩।

ଦୁର୍ଗେଷ୍ୱଟବ୍ୟାଜିମୁଖାଦିଷୁ ପ୍ରଭୁଃ ପାୟାନ୍ନୃସିଂହୋଽସୁରଯୂଥପାରିଃ ।
ବିମୁଞ୍ଚତୋ ଯସ୍ୟ ମହାଟ୍ଟହାସଂ ଦିଶୋ ବିନେଦୁର୍ନ୍ୟପତଂଶ୍ଚ ଗର୍ଭାଃ । ୧୪ ।
ରକ୍ଷତ୍ୱସୌ ମାଧ୍ୱନି ଯଜ୍ଞକଳ୍ପଃ ସ୍ୱଦଂଷ୍ଟ୍ରୟୋନ୍ନୀତଧରୋ ବରାହଃ ।
ରାମୋଽଦ୍ରିକୂଟେଷ୍ୱଥ ବିପ୍ରବାସେ ସଲକ୍ଷ୍ମଣୋଽବ୍ୟାଦ୍ଭରତାଗ୍ରଜୋଽସ୍ମାନ୍ ।୧୫।
ମାମୁଗ୍ରଧର୍ମାଦଖିଳାତ୍ ପ୍ରମଦାନ୍ ନାରାୟଣଃ ପାତୁ ନରଶ୍ଚ ହାସାତ୍ ।
ଦତ୍ତସ୍ତ୍ୱୟୋଗାଦଥ ଯୋଗନାଥଃ ପାୟାଦ୍ଗୁଣେଶଃ କପିଳଃ କର୍ମବନ୍ଧାତ୍ ।୧୬।
ସନତ୍କୁମାରୋଽବତୁ କାମଦେବାଦ୍ଧୟଶୀର୍ଷା ମାଂ ପଥିଦେବହେଳନାତ୍
ଦେବର୍ଷିବର୍ଯ୍ୟଃ ପୁରୁଷାର୍ଚନାନ୍ତରାତ୍ କୂର୍ମୋ ହରିର୍ମାଂ ନିରୟାଦଶେଷାତ୍ ।୧୭।

---

ଯେ ଦୈତ୍ୟପତି ହିରଣ୍ୟକଶ୍ୟପକୁ ବଧ କରିଥିଲେ, ଏହାଙ୍କର ବିଶାଳ ଅଟ୍ଟହାସ୍ୟର ଧ୍ୱନି ହେବାରୁ ଦିକ୍‌ସମୂହ ପ୍ରତିଧ୍ୱନିତ ହୋଇଥିଲା ଏବଂ ଗର୍ଭିଣୀମାନଙ୍କର ଗର୍ଭପାତ ହୋଇଥିଲା ସେହି ନୃସିଂହରୂପୀ ଭଗବାନ ଅରଣ୍ୟ ଓ ଯୁଦ୍ଧକ୍ଷେତ୍ର ପ୍ରଭୃତି ସଙ୍କଟ ସ୍ଥାନମାନଙ୍କରେ ମୋତେ ରକ୍ଷା କରନ୍ତୁ । ୧୪ ।

ଯାହାଙ୍କର ଅଙ୍ଗ ପ୍ରତ୍ୟଙ୍ଗମାନ ବେଦମୟ ଏବଂ ଯେ ନିଜର ଦନ୍ତଦ୍ୱାରା ପୃଥିବୀକୁ ଉଦ୍ଧାର କରିଥିଲେ ସେହି ବରାହରୂପୀ ଭଗବାନ୍ ମୋତେ ପଥ ମଧ୍ୟରେ ରକ୍ଷା କରନ୍ତୁ । ପର୍ବତୀୟ ସଙ୍କଟ ପ୍ରଦେଶରେ ପରଶୁରାମ ଏବଂ ଭରତଙ୍କର ଜ୍ୟେଷ୍ଠଭ୍ରାତା ଲକ୍ଷ୍ମଣ ସହ ରାମ ମୋତେ ବିଦେଶରେ ରକ୍ଷା କରନ୍ତୁ । ୧୫ ।

ଅଭିଚାର ପ୍ରଭୃତି ସର୍ବପ୍ରକାର ଉଗ୍ର ଧର୍ମରୁ ଏବଂ ଅନବଧାନତା ଦୋଷରୁ ସ୍ୱୟଂ ନାରାୟଣ ମୋତେ ରକ୍ଷା କରନ୍ତୁ । ନରରୂପୀ ଭଗବାନ୍ ଗର୍ବରୁ ଯୋଗାଧିପତି ଦତ୍ତ ଯୋଗଭ୍ରଂଶରୁ ଏବଂ କପିଳ ମୂର୍ତ୍ତି ଭଗବାନ୍ ଯେ ସତ୍ତ୍ୱାଦି ତ୍ରିଗୁଣକୁ ବଶ କରିଥିଲେ ସେ ମୋତେ କର୍ମ ବନ୍ଧନରୁ ରକ୍ଷା କରନ୍ତୁ । ୧୬ ।

ସନତ୍‌କୁମାର ମୋତେ କାମଦେବଙ୍କଠାରୁ ରକ୍ଷାକରନ୍ତୁ, ହୟଶୀର୍ଷ ମୂର୍ତ୍ତିଧାରୀ ଭଗବାନ୍ ମୋତେ ଦେବତାମାନଙ୍କ କ୍ରୋଧରୁ ଅର୍ଥାତ୍ ଦେବତାମାନଙ୍କୁ ନମସ୍କାର ନ କରି ପଥ ଚାଲିବା ଅପରାଧରୁ ରକ୍ଷା କରନ୍ତୁ ଏବଂ ଭଗବାନଙ୍କ ପୂଜାରେ ବ୍ୟତିକ୍ରମ ଘଟିଲେ ଦେବର୍ଷି ନାରଦ ସେହି ଅପରାଧରୁ ରକ୍ଷା କରନ୍ତୁ । କୂର୍ମମୂର୍ତ୍ତି ଭଗବାନ୍ ଅସଂଖ୍ୟ ନରକରୁ ମୋତେ ରକ୍ଷାକରନ୍ତୁ । ୧୭ ।

---

ବନ ସଂଗ୍ରାମ ସଙ୍କଟରୁ
ଦୁର୍ଗରୁ ମୋତେ ସେ ଉଦ୍ଧରୁ
ଅସୁର ଯୂଥର ଅରି
ନୃସିଂହ ମୋତେ ସେ ଉଦ୍ଧରି
ଯାହାର ଅଟ୍ଟହାସ ଶୁଣି
କମ୍ପିଲା ଏ ଜଗ ଧରଣୀ
ଖସି ପଡ଼ଇ ଗର୍ଭମାନେ
ଯାହାର ହାସ୍ୟର କମ୍ପନେ ।୧୪।

ପଥେ ରଖନ୍ତୁ ଯଜ୍ଞକଳ୍ପ
ଅଖିଳଧର ବିଶ୍ୱରୂପ
ସ୍ୱଦନ୍ତେ ଅବନୀ ଯେ କରି
ମୋତେ ସେ ବରାହ ଉଦ୍ଧରି
ଅଦ୍ରି କୂଟରେ ପର୍ଶୁରାମ
ପ୍ରବାସେ ରାମ ଯେ ଲକ୍ଷଣ
ଭରତ ଅଗ୍ରଜ ଯେଉଁ
ସେ ମୋ ରକ୍ଷକ ସଦା ହେଉ ।୧୫

ଅଖିଳ ନାନା ପ୍ରମାଦରୁ
ସେ ନାରାୟଣ ରକ୍ଷା କରୁ
ଆବର ନରରୂପୀ ହରି
ରଖନ୍ତୁ ଗର୍ବରୁ ଉଦ୍ଧରି
ଯୋଗଭ୍ରଷ୍ଟରୁ ଯୋଗନାଥେ
ରଖନ୍ତୁ ଦତ୍ତାତ୍ରେୟ ମୋତେ
କପିଳ ତ୍ରିଗୁଣ ଈଶ୍ୱର
କର୍ମ-ବନ୍ଧରୁ ରକ୍ଷାକର ।୧୬ ।

ଧନ୍ୱନ୍ତରିର୍ଭଗବାନ୍ ପାତ୍ୱପଥ୍ୟାଦ୍ ଦ୍ୱନ୍ଦ୍ୱାଦ୍ଭୟାଦୃଷଭୋ ନିର୍ଜିତାତ୍ମା ।
ଯଜ୍ଞଶ୍ଚ ଲୋକାଦବତାଜ୍ଜନାନ୍ତାଦ୍ବଲୋଗଣାତ୍ କ୍ରୋଧବଶାଦହୀନ୍ଦ୍ରଃ । ୧୮ ।
ଦ୍ୱୈପାୟନୋ ଭଗବାନପ୍ରବୋଧାଦ୍ବୁଦ୍ଧସ୍ତୁ ପାଷଣ୍ଡଗଣପ୍ରମାଦାତ୍ ।
କଳ୍କିଃ କଳେ କାଳମଳାତ୍ ପ୍ରପାତୁ ଧର୍ମାବନାୟୋରୁକୃତାବତାରଃ । ୧୯ ।
ମାଂ କେଶବୋ ଗଦୟା ପ୍ରାତରବ୍ୟାଦ୍ ଗୋବିନ୍ଦ ଆସଙ୍ଗବମାତ୍ତବେଣୁଃ ।
ନାରାୟଣଃ ପ୍ରାହ୍ଣ ଉଦାତ୍ତଶକ୍ତିର୍ମଧ୍ୟନ୍ଦିନେ ବିଷ୍ଣୁରରୀନ୍ଦ୍ରପାଣିଃ । ୨୦ ।

---

ଭଗବାନଙ୍କର ଧନ୍ୱନ୍ତରୀ ମୂର୍ତ୍ତି ଅପଥ୍ୟରୁ, ଜୟଚଉଉ ଭଗବାନ୍ ଋଷଭଦେବ ସୁଖ ଦୁଃଖାଦିରୁ ଉତ୍ପନ୍ନ ଦ୍ୱନ୍ଦ୍ୱଭବରୁ, ଯଜ୍ଞରୂପୀ ଭଗବାନ୍ ଲୋକାପବାଦରୁ, ବଳରାମ ଲୌକିକ ପୀଡ଼ନରୁ, ଅନନ୍ତନାଗ ସର୍ପକୂଳ ଭୟରୁ ମୋତେ ରକ୍ଷା କରନ୍ତୁ । ୧୮ ।

ଭଗବାନ୍ ବେଦବ୍ୟାସ ମୋତେ ଅଜ୍ଞାନଅନ୍ଧକାରରୁ, ବୁଦ୍ଧଦେବ ପାଷାଣ୍ଡ ଜନୋଚିତ ଅନବଧାନତାରୁ, କଳ୍କିଦେବ ଯେ ଧର୍ମରକ୍ଷା ନିମିତ୍ତ ଶ୍ରେଷ୍ଠଅବତାର ଗ୍ରହଣ କରିଥାନ୍ତି ସେ ଅତ୍ୟନ୍ତ ମଳିନ ସ୍ୱଭାବ କଳିକାଳରୁ ମୋତେ ରକ୍ଷା କରନ୍ତୁ । ୧୯ ।

ମଧୁସୂଦନ କେଶବ ମୋତେ ଗଦାଦ୍ୱାରା ପ୍ରାତଃକାଳରେ ଅର୍ଥାତ୍ ଦିବସର ୫ମ ଦଣ୍ଡ ପର୍ଯ୍ୟନ୍ତ ବୃନ୍ଦାବନାଧୀଶ୍ୱର ବଂଶୀଧାରୀ ଗୋବିନ୍ଦ ସଙ୍ଗବ କାଳରେ ଅର୍ଥାତ୍ ଦିବସର ଦଶଦଣ୍ଡ ପର୍ଯ୍ୟନ୍ତ, ଅସୀମ ଶକ୍ତିଶାଳୀ ନାରାୟଣ ପ୍ରାହ୍ଣରେ ଅର୍ଥାତ୍ ପଞ୍ଚଦଶଦଣ୍ଡ ପର୍ଯ୍ୟନ୍ତ, ଚକ୍ରପାଣୀ ବିଷ୍ଣୁ ମଧ୍ୟାହ୍ନରେ ଅର୍ଥାତ୍ ଷୋଳଦଣ୍ଡ ଠାରୁ କୋଡ଼ିଏ ଦଣ୍ଡ ପର୍ଯ୍ୟନ୍ତ ମୋତେ ରକ୍ଷାକରନ୍ତୁ । ୨୦ ।

---

ଅନଙ୍ଗ ପୀଡ଼ାରୁ ଜଗତେ
ସନତ୍କୁମାର ରଖୁ ମୋତେ
ଦେବତା ଅନାଦର ପଥୁଁ
ହୟଗ୍ରୀବ ମୋତେ ରଖନ୍ତୁ
ଦେବତା ଆରାଧନା ବିଘ୍ନୁ
ନାରଦ ରଖନ୍ତୁ ମୋ ତନୁ
କମଠ ରୂପୀ ଚକ୍ରଧର
ଅଶେଷ ପାପୁଁ ତ୍ରାହି କର ।୧୭।
ଅପଥ୍ୟ ଭୋଜନରୁ ମୋର
ଯେ ବ୍ୟାଧି ଜନ୍ମେ ଅତିଘୋର
ତାହା ନାଶିବେ ଧନ୍ୱନ୍ତରି
ଯେ ଦ୍ୱନ୍ଦ୍ୱ ଭୟଟ ମୋହର

ତହୁଁ ରଖିବେ ନାଭିସୁତ
ଋଷଭ ନାମ ଯେ ବିଦିତ
ଦୁର୍ବାଦ ଜନ ସମୂହରୁ
ଯଜ୍ଞ ମୂରତି ରକ୍ଷା କରୁ
ବଳବନ୍ତଙ୍କ ତହୁଁ ମୋତେ,
ରଖନ୍ତୁ ବଳଦେବ ନିତେ୍ୟ
ଯେ କ୍ରୋଧବଶ ବଳୀୟାର
ତହୁଁ ରଖିବେ ଅହୀଶ୍ୱର ।୧୮।
ମୋହର ମନ ବୁଦ୍ଧି ବେନି
ରଖନ୍ତୁ ବ୍ୟାସ ମହାମୁନି
ପାଷଣ୍ଡ ଲୋକର ପ୍ରମାଦ
ତହୁଁ ରଖିବେ ଦେବ ବୁଦ୍ଧ

ଧର୍ମ ପାଳନେ ଅବତାର
ଯେ ପ୍ରଭୁ କଳ୍କି ରୂପଧର
କଳିକାଳ ପାପରୁ ମୋତେ
ସେ ପ୍ରଭୁ ରଖିବେ ଯୁକତେ ।୧୯।
କେଶବ ଗଦା ଧରି କରେ
ମୋତେ ରଖନ୍ତୁ ପ୍ରଭାତରେ
ଗୋବିନ୍ଦ ବେଣୁ ଧରି କରେ
ରଖନ୍ତୁ ଦିବସ ଆଦ୍ୟରେ
ପୂର୍ବଦିବସେ ଶକ୍ତି ହସ୍ତେ
ରଖନ୍ତୁ ନାରାୟଣ ମୋତେ
ରଖନ୍ତୁ ବିଷ୍ଣୁ ଚକ୍ରଧର
ଦିବସ ମଧ୍ୟମ ଭାଗର । ୨୦ ।

ଦେବୋଽପରାହ୍ଣେ ମଧୁହୋଗ୍ରଧନ୍ୱା ସାୟଂ ତ୍ରିଧାମାବତୁ ମାଧବୋ ମାମ୍ ।
ଦୋଷେ ହୃଷୀକେଶ ଉତାର୍ଦ୍ଧରାତ୍ରେ ନିଶୀଥ ଏକୋଽବତୁ ପଦ୍ମନାଭଃ । ୨୧ ।
ଶ୍ରୀବତ୍ସଧାମା ପରରାତ୍ର ଈଶଃ ପ୍ରତ୍ୟୁଷ ଈଶୋଽସିଧରୋ ଜନାର୍ଦ୍ଦନଃ ।
ଦାମୋଦରୋଽବ୍ୟାଦନୁସନ୍ଧ୍ୟଂ ପ୍ରଭାତେ ବିଶ୍ୱେଶ୍ୱରୋ ଭଗବାନ୍ କାଳମୂର୍ତ୍ତିଃ ।୨୨।
ଚକ୍ରଂ ଯୁଗାନ୍ତାନଳତିଗ୍ମନେମି ଭ୍ରମତ୍ସମନ୍ତାଦ୍ ଭଗବତ୍ପ୍ରଯୁକ୍ତମ୍ ।
ଦନ୍ଦଗ୍ଧି ଦନ୍ଦଗ୍ଧ୍ୟରିସୈନ୍ୟମାଶୁ କକ୍ଷଂ ଯଥା ବାତସଖୋ ହୁତାଶଃ । ୨୩ ।
ଗଦେଽଶନିସ୍ପର୍ଶନବିସ୍ଫୁଲିଙ୍ଗେ ନିଷ୍ପିଣ୍ଢି ନିଷ୍ପିଣ୍ଢ୍ୟଜିତପ୍ରିୟାସି ।
କୁଷ୍ମାଣ୍ଡବୈନାୟକଯକ୍ଷରକ୍ଷୋଭୂତଗ୍ରହାଂଶ୍ଚୂର୍ଣ୍ଣୟ ଚୂର୍ଣ୍ଣୟାରୀନ୍ । ୨୪ ।

---

ସୁତୀକ୍ଷ୍ଣ ଧନୁର୍ଦ୍ଧାରୀ ମଧୁସୂଦନ ଅପରାହ୍ଣରେ ଏକୋଇଶ ଦଣ୍ଡଠାରୁ ଚଉଶ ଦଣ୍ଡ ପର୍ଯ୍ୟନ୍ତ ବ୍ରହ୍ମାଦି ତ୍ରିମୂର୍ତ୍ତି ସମ୍ପନ୍ନ ମାଧବ ସାୟଂକାଳରେ, ଛବିଶ ଦଣ୍ଡଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ରକ୍ଷା କରନ୍ତୁ । ରାତ୍ରିର ଚାରିଦଣ୍ଡ ପର୍ଯ୍ୟନ୍ତ ହୃଷୀକେଶ ଏବଂ ନିଶୀଥ କାଳରେ ଅର୍ଥାତ୍ ପନ୍ଦର ଓ ଷୋଳଦଣ୍ଡ ରାତ୍ରି ପର୍ଯ୍ୟନ୍ତ ପଦ୍ମନାଭ ମୋତେ ରକ୍ଷା କରନ୍ତୁ । ୨୧ ।

ଶେଷରାତ୍ରି ଅର୍ଥାତ୍ ସତରଦଣ୍ଡଠାରୁ ପ୍ରଭାତ ପର୍ଯ୍ୟନ୍ତ ଭଗବାନ୍ ଶ୍ରୀବତ୍ସଧାରୀ, ସୂର୍ଯ୍ୟ ଉଦୟ କାଳରେ ଅସିଧାରୀ ଭଗବାନ ଜନାର୍ଦ୍ଦନ, ପ୍ରାତଃ ଓ ସାୟଂକାଳରେ, ଦାମୋଦର ଓ ସୂର୍ଯ୍ୟ ଉଦୟ କାଳରେ କାଳମୂର୍ତ୍ତି ବିଶ୍ୱେଶ୍ୱର ମୋତେ ରକ୍ଷା କରନ୍ତୁ । ୨୨ ।

ହେ ଚତୁର୍ଦ୍ଦିଗ ଭ୍ରମଣଶୀଳ ଚକ୍ର ! ତୁମ୍ଭର ଧାର ପ୍ରଳୟ କାଳୀନ ଅଗ୍ନି ତୁଲ୍ୟ ତୀକ୍ଷ୍ଣ । ତୁମ୍ଭେ ଭଗବଦ୍ ପ୍ରେରିତ ହୋଇ ବାୟୁ ସଞ୍ଚାଳିତ ଅଗ୍ନି ତୁଲ୍ୟ ଶୁଷ୍କ ତୃଣ ଗୁଳ୍ମାଦିକୁ ଯେପରି ଅତିରେ ଦଗ୍ଧ କର ସେହିପରି ମୋର ଶତ୍ରୁ ସୈନ୍ୟମାନଙ୍କୁ ଦଗ୍ଧ କର । ୨୩ ।

ବଜ୍ରତୁଲ୍ୟ ତୀକ୍ଷ୍ଣସ୍ପର୍ଶଶାଳିନୀ ଗଦେ ! ତୁମ୍ଭେ ଭଗବାନଙ୍କର ଅତି ପ୍ରିୟ, କୁଷ୍ମାଣ୍ଡ, ବୈନାୟକ, ଯକ୍ଷ, ରାକ୍ଷସ, ଭୂତ, ଗୁହ୍ୟକାଦି ପ୍ରଭୃତି ଉପଦ୍ରବମାନଙ୍କୁ ନିଷ୍ପେଷଣ କର । ଆମ୍ଭମାନଙ୍କର ଶତ୍ରୁଗଣଙ୍କୁ ଚୂର୍ଣ୍ଣ କର । ୨୪ ।

---

ଅପରାହ୍ଣରେ ମଧୁହାରୀ
ରଖନ୍ତୁ କରେ ଧନୁ ଧରି
ରଖନ୍ତୁ ସାୟଂକାଳେ ମୋତେ
ତ୍ରିଧାମ ମାଧବ ତୁରତେ
ପ୍ରଦୋଷେ ମୋତେ ହୃଷୀକେଷ
ଅଶେଷ ବ୍ରହ୍ମାଣ୍ଡର ଈଶ
ଅର୍ଦ୍ଧ ରଜନୀ ବା ନିଶୀଥ
ରଖନ୍ତୁ ପଦ୍ମନାଭ ମୋତେ ।୨୧।
ଶ୍ରୀବତ୍ସଧାମା ପରରାତ୍ରେ
ଧୃତ ଆୟୁଧ ଧରି ହସ୍ତେ

ଅନୁସନ୍ଧ୍ୟାରେ ଦାମୋଦର
ରାତ୍ରି ପ୍ରଭାତେ ବିଶ୍ୱେଶ୍ୱର
କାଳମୂରତି ଭଗବାନ
ରଖନ୍ତୁ ପ୍ରଭାତେ ଜୀବନ ।୨୨।
ଯାହାର ତେଜ ଏ ସଂସାରେ
ପ୍ରଳୟାନଳ ତୁଚ୍ଛ କରେ
କୃଷ୍ଣରେ ପ୍ରଯୋଜିତ ହୋଇ
ନିର୍ଭୟେ ଜଗତ ଭ୍ରମଇ
ସେ ଚକ୍ରଧର ପାଦେ ମୋର
କୋଟିଏ କରଇ ନମସ୍କାର

ଦହନ୍ତୁ ମୋର ବୈରିସୈନ୍ୟ
ବହ୍ନି ଯେସନେ ଶୁଷ୍କତୃଣ ।୨୩।
ଗଦା ଅଶନି ପ୍ରାୟ ହୋଇ
ମୋର ବିପକ୍ଷ ଦେହେ ଯାଇ
ସ୍ଫୁଲିଙ୍ଗେ ଚୂର୍ଣ୍ଣ କର ହୟ
ତୁମ୍ଭେ ଅଖିଳନାଥ ପ୍ରିୟ
ମୁହିଁ ଅଟଇ ତାର ଦାସ
ମୋ ଶତ୍ରୁପକ୍ଷ କର ନାଶ
କୁଷ୍ମାଣ୍ଡ ବିନାୟକ ଯକ୍ଷ
ଗୁହ୍ୟକ ଭୂତ ଗ୍ରହ ରକ୍ଷ

ତ୍ୱଂ ଯାତୁଧାନପ୍ରମଥପ୍ରେତମାତୃପିଶାଚବିପ୍ରଗ୍ରହଘୋରଦୃଷ୍ଟୀନ୍ ।
ଦରେନ୍ଦ୍ର ବିଦ୍ରାବୟ କୃଷ୍ଣପୂରିତୋ ଭୀମସ୍ୱନୋଽରେର୍ହୃଦୟାନି କମ୍ପୟନ୍ ।୨୫।
ତ୍ୱଂ ତୀଗ୍ମଧାରାସି ବରାରିସୈନ୍ୟମୀଶପ୍ରଯୁକ୍ତୋ ମମ ଛିନ୍ଧି ଛିନ୍ଧି ।
ଚକ୍ଷୂଂଷି ଚର୍ମନ୍ ଶତଚନ୍ଦ୍ର ଛାଦୟ ଦ୍ୱିଷାମଘୋନାଂ ହର ପାପଚକ୍ଷୁଷାମ୍ ।୨୬।
ଯନ୍ନୋଭୟଂ ଗ୍ରହେଭ୍ୟୋଽଭୂତ୍ କେତୁଭ୍ୟୋ ନୃଭ୍ୟ ଏବ ଚ ।
ସରୀସୃପେଭ୍ୟୋ ଦଂଷ୍ଟ୍ରିଭ୍ୟୋ ଭୂତେଭ୍ୟୋଽଂହୋଭ୍ୟ ଏବ ଚ । ୨୭ ।
ସର୍ବାଣ୍ୟେତାନି ଭଗବନ୍ନାମରୂପାନୁକୀର୍ତ୍ତନାତ୍ ।
ପ୍ରୟାନ୍ତୁ ସଂକ୍ଷୟଂ ସଦ୍ୟୋ ଯେ ନଃ ଶ୍ରେୟଃ ପ୍ରତୀପକାଃ । ୨୮ ।
ଗରୁଡ଼ୋ ଭଗବାନ୍ ସ୍ତୋତ୍ରସ୍ତୋଭଶ୍ଛନ୍ଦୋମୟଃ ପ୍ରଭୁଃ ।
ରକ୍ଷତ୍ୱଶେଷକୃଚ୍ଛ୍ରେଭ୍ୟୋ ବିଷ୍ୱକ୍‌ସେନଃ ସ୍ୱନାମଭିଃ । ୨୯ ।

---

ହେ ଶଙ୍ଖ ଶ୍ରେଷ୍ଠ ପାଞ୍ଚଜନ୍ୟ ! ଶ୍ରୀକୃଷ୍ଣଙ୍କ ମୁଖବାୟୁରେ ପୂର୍ଣ୍ଣ ହୋଇ ତୁମ୍ଭେ ଭୟଙ୍କର ନିନାଦ ଦ୍ୱାରା ଶତ୍ରୁମାନଙ୍କର ହୃତ୍‌କମ୍ପ ଉତ୍ପାଦନ କରି ରାକ୍ଷସ, ପ୍ରମଥ, ପ୍ରେତ, ଡାକିନୀ, ପିଶାଚ, ବ୍ରହ୍ମଦୈତ୍ୟ, ଦୁଷ୍ଟଗ୍ରହ ଏବଂ ଅନ୍ୟାନ୍ୟ ଘୋର ମୂର୍ତ୍ତି ପ୍ରାଣୀମାନଙ୍କୁ ବିଦୁରିତ କର । ୨୫ ।

ହେ ତୀକ୍ଷ୍ଣଧାର ଖଡ୍‌ଗ ଶ୍ରେଷ୍ଠ ! ତୁମ୍ଭେ ଭଗବାନଙ୍କ କର୍ତ୍ତୃକ ଚାଳିତ ହୋଇ ମୋର ଶତ୍ରୁ ସୈନ୍ୟମାନଙ୍କୁ ଛେଦନ କର, ହେ ଚନ୍ଦ୍ର ତୁଲ୍ୟ ବହୁବିନ୍ଦୁ ଭୂଷିତ ଚର୍ମାସ୍ତ୍ର ! ତୁମ୍ଭେ ପାପିଷ୍ଠ ଶତ୍ରୁମାନଙ୍କର ନୟନକୁ ଆଚ୍ଛାଦନ କରି ଅନ୍ୟାନ୍ୟ ଉଗ୍ରଦୃଷ୍ଟି ସମ୍ପନ୍ନ ବ୍ୟକ୍ତିମାନଙ୍କର ଚକ୍ଷୁ ବିନାଶ କର । ୨୬ ।

ଗ୍ରହ, କେତୁ, ମନୁଷ୍ୟ, ସର୍ପ, ସରୀସୃପ, ହସ୍ତୀ, ଶୂକର ପ୍ରଭୃତି ଦନ୍ତାୟୁଧ, ଭୂତଗଣ ପାପ ଏବଂ ମଙ୍ଗଳ ବିରୋଧୀ ଜୀବଗଣ ଏମାନେ ସମସ୍ତେ ଭଗବାନଙ୍କର ନାମ, ରୂପ ଓ କୀର୍ତ୍ତନ ବଳରେ ଶୀଘ୍ର କ୍ଷୟ ପ୍ରାପ୍ତ ହୁଅନ୍ତୁ । ୨୭,୨୮ ।

ଯେ ବେଦ ମୂର୍ତ୍ତି ବୃହଦ୍ରଥାନ୍ତର ନାମକ ସାମବେଦ ଦ୍ୱାରା ସ୍ତୁତ ହୋଇଥାନ୍ତି, ଯେ ସ୍ୱୟଂ ନାରାୟଣ ବୋଲି କଥିତ ସେହି ଭଗବାନ୍ ଗରୁଡ଼ ସ୍ୱୀୟ ନାମ ଦ୍ୱାରା ଆମ୍ଭମାନଙ୍କୁ ଦୁଃଖରୁ ରକ୍ଷା କରନ୍ତୁ । ୨୯ ।

---

ପିଶାଚ ପ୍ରେତ ମାତୃଗଣ
ଶୀଘ୍ରେ କରନ୍ତୁ ପ୍ରମଥନ
ଯେ ପାଞ୍ଚଜନ୍ୟ ଶଙ୍ଖସାର
କୃଷ୍ଣେ ପୂରିତ ହୋଇ ମୋର
ଶତ୍ରୁର ହୃଦୟ କମ୍ପାଅ
ନିଃସ୍ୱନେ ମହାଭୟ ଦିଅ ।୨୪,୨୫
ତୁ ଯେ ଖଡ୍‌ଗ ତୀକ୍ଷ୍ଣଧାର
ଅଶେଷ ରିପୁ ନାଶକର
କୃଷ୍ଣରେ ହୋଇ ପ୍ରଯୋଜିତ
ସକଳ ରିପୁ କର ଗ୍ରସ୍ତ

ହେ ଶତଚନ୍ଦ୍ର ଚର୍ମ ଶୁଣ
ଯେତେ ଅଛନ୍ତି ରିପୁଗଣ
ଏହାଙ୍କ ଲୋଚନ ଆଚ୍ଛାଦ
ଯେତେଣେ ହୋଇବେ ଦୃଷ୍ଟିଭେଦ ।୨୬
ଯହିଁ ମୋ ଭୟ ଜାତ ହୋଇ
ଗ୍ରହ ମନୁଷ୍ୟ କେତୁ ଯେହି
ଯେ ସରୀସୃପ ଭୂତ ଆଦି
ହିଂସକ ପାପ ମନବାଧି
ଶ୍ରୀକୃଷ୍ଣ ରୂପ ଆଦେ ନାମ
ଯେଣୁ ମୁଁ କଲି ସଂକୀର୍ତ୍ତନ

ତାର ପ୍ରସାଦୁ ଯାଉ କ୍ଷୟ
ଏ ଯେତେ ସର୍ବେ ଦୁଷ୍ଟଭୟ
ଯେ ମୋର ଶ୍ରେୟ ଆଚରଣେ
ହିଂସା କରନ୍ତି ଦୁଷ୍ଟଗଣେ ।୨୭,୨୮
ଗରୁଡ଼ ଭଗବାନ ମୋତେ
ରକ୍ଷା କରିବେ ଅବିରତେ
ରଖିବେ ବିଷ୍ୱକସେନ ହରି
ଅଶେଷ କଷ୍ଟୁଁ ମୋତେ ତାରି ।୨୯

ସର୍ବାପଦ୍ଭ୍ୟୋ ହରେର୍ନାମରୂପଯାନାୟୁଧାନି ନଃ ।
ବୁଦ୍ଧୀନ୍ଦ୍ରିୟମନଃପ୍ରାଣାନ୍ ପାନ୍ତୁ ପାର୍ଷଦଭୂଷଣାଃ । ୩୦ ।
ଯଥା ହି ଭଗବାନେବ ବସ୍ତୁତଃ ସଦସଚ୍ଚ ଯତ୍ ।
ସତ୍ୟେନାନେନ ନଃ ସର୍ବେ ଯାନ୍ତୁ ନାଶମୁପଦ୍ରବାଃ । ୩୧ ।
ଯଥୈକାତ୍ମ୍ୟାନୁଭାବାନାଂ ବିକଳ୍ପରହିତଃ ସ୍ୱୟମ୍ ।
ଭୂଷଣାୟୁଧଲିଙ୍ଗାଖ୍ୟା ଧତ୍ତେ ଶକ୍ତୀଃ ସ୍ୱମାୟୟା । ୩୨ ।
ତେନୈବ ସତ୍ୟମାନେନ ସର୍ବଜ୍ଞୋ ଭଗବାନ୍ ହରିଃ ।
ପାତୁ ସର୍ବୈଃ ସ୍ୱରୂପୈର୍ନଃ ସଦା ସର୍ବତ୍ର ସର୍ବଗଃ । ୩୩ ।
ବିଦିକ୍ଷୁ ଦିକ୍ଷୂର୍ଦ୍ଧ୍ୱମଧଃ ସମନ୍ତାଦନ୍ତର୍ବହିର୍ଭଗବାନ୍ ନାରସିଂହଃ ।
ପ୍ରହାପୟଂଲ୍ଲୋକଭୟଂ ସ୍ୱନେନ ସ୍ୱତେଜସା ଗ୍ରସ୍ତସମସ୍ତତେଜାଃ ।୩୪।

---

ଭଗବାନଙ୍କର ନାମ, ରୂପ, ବାହନ ଓ ଅସ୍ତ୍ରମାନ ଓ ତାହାଙ୍କର ଶ୍ରେଷ୍ଠ ପାର୍ଷଦଗଣ ଆମ୍ଭମାନଙ୍କର ବୁଦ୍ଧି, ଇନ୍ଦ୍ରିୟ, ମନ ଓ ପ୍ରାଣଙ୍କୁ ରକ୍ଷା କରନ୍ତୁ । ୩୦ ।

ମୂର୍ତ୍ତ, ଅମୂର୍ତ୍ତ ନିଖିଳ ଜଗତ ଯେପରି ଏକଭଗବାନଙ୍କର ସ୍ୱରୂପ ସେହିପରି ଏହି ସତ୍ୟ ଧାରଣା ବଳରେ ଆମ୍ଭମାନଙ୍କର ସମସ୍ତ ବିଘ୍ନ ବିନଷ୍ଟ ହେଉ । ୩୧ ।

ଏକମାତ୍ର ବ୍ରହ୍ମଭିନ୍ନ ଅନ୍ୟ କିଛି ନାହିଁ ଏହି ଭାବରେ ସମସ୍ତ ବସ୍ତୁରେ ଭଗବାନଙ୍କର ଅଭିନ୍ନତା ବାଦୀମାନେ ସେମାନଙ୍କର ସିଦ୍ଧାନ୍ତ ଅନୁସାରେ ଭଗବାନ୍ ସମସ୍ତବସ୍ତୁରୁ ଅଭିନ୍ନ ହେଲେ ମଧ୍ୟ ତାହାଙ୍କର ମାୟାଶକ୍ତି ପ୍ରଭାବରେ ସେ କୌସ୍ତୁଭାଦି ଭୂଷଣ, ଚକ୍ରାଦି ଅସ୍ତ୍ର, ଚତୁର୍ଭୁଜ ପ୍ରଭୃତି ଚିହ୍ନ ଗୁଡ଼ିକୁ ବିଭିନ୍ନ ବ୍ୟକ୍ତିରୂପେ ଧାରଣ କରି ଅଛନ୍ତି, ଏହା ଯେପରି ସତ୍ୟ ସେହିପରି ଶଙ୍ଖଚକ୍ରାଦି ନାନାପ୍ରକାର ବୈଚିତ୍ର୍ୟ ଯାହା ପୂର୍ବେ ବର୍ଣ୍ଣିତ ହୋଇଅଛି; ସେହି ସମୁଦାୟ ମଧ୍ୟ ସତ୍ୟ ବୋଲି ପ୍ରମାଣିତ । ସର୍ବଜ୍ଞ, ସର୍ବବ୍ୟାପୀ ଭଗବାନ ଶ୍ରୀହରି ସେହି ଶକ୍ତିମାନ ପ୍ରକାଶ କରି ସର୍ବଦା ଓ ସର୍ବତ୍ର ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।୩୨,୩୩।

ଯାହାଙ୍କର ଶବ୍ଦରେ ଲୋକ ଭୟ ବିଦୂରିତ ହୁଏ, ଯାହାଙ୍କର ତେଜରେ ଅନ୍ୟ ସମସ୍ତ ତେଜ ପରାଭୂତ ସେହି ଭଗବାନ ନରସିଂହ, ଦିଗ ବିଦିଗ, ଊର୍ଦ୍ଧ୍ୱ, ଅଧଃ, ଅନ୍ତର, ବାହ୍ୟ ସର୍ବତ୍ର ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ୩୪ ।

---

ରୂପ ଆୟୁଧ କୃଷ୍ଣନାମ
ଆପଦ କରିବେ ମୋଚନ
ପ୍ରଭୁ କିଙ୍କରେ ଯେତେ ଗଣ
ଅପର ବାହନ ଭୂଷଣ
ବୁଦ୍ଧି ଇନ୍ଦ୍ରିୟ ମୋର ମନ
ସର୍ବେ ରଖନ୍ତୁ ମୋର ପ୍ରାଣ ।୩୦।
ଯେମନ୍ତେ ପ୍ରଭୁ ଭଗବାନ
ସଦ ଅସଦର କାରଣ

ଏହି ସତ୍ୟରୁ ମୋର ସର୍ବ
ନଷ୍ଟ ହେଉନ୍ତୁ ଉପଦ୍ରବ ।୩୧।
ଆମ୍ଭ ଅଶେଷ ପ୍ରାଣୀଙ୍କର
ସକଳ କାର୍ଯ୍ୟରୁ ବାହାର
ଭୂଷଣ ଆୟୁଧ ସ୍ୱନାମ
ଧରନ୍ତି ସ୍ୱମାୟାରେ ଭିନ୍ନ
ଏମନ୍ତ ପରମ ଈଶ୍ୱର
ରକ୍ଷା କରନ୍ତୁ ମୋ ଶରୀର ।୩୨।

ସର୍ବଜ୍ଞ ଭଗବାନ ହରି
ସର୍ବ ସ୍ୱରୂପ ରୂପ ଧରି
ସଦା ସର୍ବତ୍ର ସର୍ବଠାରୁ
ସତ୍ୟ ପ୍ରମାଣେ ରକ୍ଷା କରୁ
ଦିଗ ବିଦିଗ ଅଧଊର୍ଦ୍ଧ୍ୱ
ରଖନ୍ତୁ ନରସିଂହ ଦେବ
ଆମ୍ଭ ସ୍ୱନରେ ଲୋକ ତ୍ରାସେ
ସ୍ୱତେଜେସର୍ବତେଜନାଶେ ୩୩,୩୪

ମଘବନ୍ନିଦମାଖ୍ୟାତଂ ବର୍ମ୍ମ ନାରାୟଣାତ୍ମକମ୍ ।
ବିଜେଷ୍ୟସେଽଞ୍ଜସା ଯେନ ଦଂଶିତୋଽସୁରଯୂଥପାନ୍ । ୩୫ ।
ଏତଦ୍ଧାରୟମାଣସ୍ତୁ ଯଂ ଯଂ ପଶ୍ୟତି ଚକ୍ଷୁଷା ।
ପଦା ବା ସଂସ୍ପୃଶେତ୍ ସଦ୍ୟଃ ସାଧ୍ୱସାତ୍ ସ ବିମୁଚ୍ୟତେ । ୩୬ ।
ନ କୁତଶ୍ଚିଦ୍‌ଭୟଂ ତସ୍ୟ ବିଦ୍ୟାଂ ଧାରୟତୋ ଭବେତ୍ ।
ରାଜଦସ୍ୟୁଗ୍ରହାଦିଭ୍ୟୋ ବ୍ୟାଧ୍ୟାଦିଭ୍ୟଶ୍ଚ କର୍ହିଚିତ୍ । ୩୭ ।
ଇମାଂ ବିଦ୍ୟାଂ ପୁରା କଶ୍ଚିତ୍ କୌଶିକୋ ଧାରୟନ୍ ଦ୍ୱିଜଃ ।
ଯୋଗଧାରଣୟା ସ୍ୱାଙ୍ଗଂ ଜହୌ ସ ମରୁଧନ୍ୱନି । ୩୮ ।
ତସ୍ୟୋପରି ବିମାନେନ ଗନ୍ଧର୍ବପତିରେକଦା ।
ଯଯୌ ଚିତ୍ରରଥଃ ସ୍ତ୍ରୀଭିର୍ବୃତୋ ଯତ୍ର ଦ୍ୱିଜକ୍ଷୟଃ । ୩୯ ।

---

ହେ ଇନ୍ଦ୍ର ! ଆପଣଙ୍କ ନିକଟରେ ଏହି ନାରାୟଣ କବଚ କୀର୍ତ୍ତନ କଲି, ଆପଣ ଏହା ଦ୍ୱାରା ସୁରକ୍ଷିତ ହୋଇ, ଅନାୟାସରେ ଅସୁର ଦଳପତିମାନଙ୍କୁ ଜୟ କରିପାରିବେ । ୩୫ ।

ଯେଉଁ ବ୍ୟକ୍ତି ନାରାୟଣ କବଚ ଧାରଣ କରେ ସେହି ବ୍ୟକ୍ତି ଯାହାପ୍ରତି ଦୃଷ୍ଟିପାତ କରେ ବା ଚରଣ ଦ୍ୱାରା ଯାହାକୁ ସ୍ପର୍ଶ କରେ ସେ ବ୍ୟକ୍ତି ମଧ୍ୟ ତତ୍‌କ୍ଷଣାତ୍ ଭୟରୁ ମୁକ୍ତ ହୁଏ । ୩୬ ।

ଏହି କବଚଧାରଣ କାରୀର ରାଜା, ଦସ୍ୟୁ, ଗ୍ରହ, ବ୍ୟାଧି କାହାରିପାଇଁ ଭୟ ନ ଥାଏ । ୩୭ ।

ପୂର୍ବ କାଳରେ ଏହି କବଚଧାରଣ କରି କୌଶିକ ନାମକ ବ୍ରାହ୍ମଣ ମରୁଭୂମିରେ ଯୋଗ ଅବଲମ୍ବନ କରେ । ୩୮ ।

ଏକଦା ଗନ୍ଧର୍ବରାଜ, ଚିତ୍ରରଥ, ସ୍ତ୍ରୀଗଣ ପରିବୃତ ହୋଇ ଯେଉଁ ସ୍ଥାନରେ କୌଶିକ ଦେହତ୍ୟାଗ କରିଥିଲେ ସେହି ସ୍ଥାନ ଉପରେ ରଥରେ ଯାଉଥିଲେ । ୩୯ ।

---

ହେ ଇନ୍ଦ୍ର ! ଶୁଣ ମୋ ବଚନ
କହିଲି ବର୍ମ୍ମ ନାରାୟଣ
ଅସୁର ଯୂଥପତିମାନ
ଜିଣିବୁ କରିଲେ ଧାରଣ । ୩୫ ।
ଏ ବିଦ୍ୟା ଯାର ତହିଁ ଥାଇ
ସେ ଯାକୁ ଦୃଷ୍ଟିରେ ଦେଖଇ
ପାଦ ମାତ୍ରକେ ଯେବେ ଛୁଇଁ
ତାହାର ଆଉ ଭୟ ନାହିଁ । ୩୬ ।
ଏ ବିଦ୍ୟା ଯେଉଁ ଧରି ଥାଇ
ଛୁତ ତାହାର କାହିଁ ନାହିଁ
ରାଜା ତସ୍କର ଗ୍ରହ ଆଦି
ଯେ ଦୁଷ୍ଟଗଣ ନାନା ବ୍ୟାଧି । ୩୭ ।
ଏ ବିଦ୍ୟା ପୂର୍ବେ ଦ୍ୱିଜ ଏକ
ଧରିଣ ଥିଲି କଉଶିକ
ମରୁଧନ୍ୱନ ଦେଶେ ସେହି
ଯୋଗ ଧାରଣେ ନିଜ ଦେହି
ତେଜିଲି ତହିଁ ଦ୍ୱିଜବର
ପୁଣ କହିବା ସୁନାସୀର । ୩୮ ।
ଗନ୍ଧର୍ବ ପତି ଏକଦିନେ
ତାହାର ଉପରେ ବିମାନେ
ଯାଉଣ ଥିଲି ଚିତ୍ରରଥ
ଅମର କନ୍ୟାରେ ବେଷ୍ଟିତ
ଯହିଁ ବ୍ରାହ୍ମଣ ମରିଥିଲି
ତାହାର ଊର୍ଦ୍ଧ୍ୱେ ଯହୁଁ ଗଲି
ଗଗନୁ ପଡିଲି ତକ୍ଷଣେ
ବିମାନ ଗଲି ତାର କେଣେ
ପଡିଲି ଅଧୋମୁଖ ହୋଇ
ସଭୟେ ଚକିତେ ରହିଁଇ
ବାଳଖିଲ୍ୟାର ବାକ୍ୟ ଶୁଣି
ତକ୍ଷଣେ ବିପ୍ର ଅସ୍ଥି ଆଣି

ଗଗନାନ୍ନ୍ୟପତତ୍ ସଦ୍ୟଃ ସବିମାନୋ ହ୍ୟବାକ୍‌ଶିରାଃ ।
ସ ବାଲଖିଲ୍ୟବଚନାଦସ୍ଥୀନ୍ୟାଦାୟ ବିସ୍ମିତଃ ।
ପ୍ରାସ୍ୟ ପ୍ରାଚୀ ସରସ୍ୱତ୍ୟାଂ ସ୍ନାତ୍ୱାଂ ଧାମ ସ୍ୱମନଗାତ୍ । ୪୦ ।
ଶ୍ରୀଶୁକ ଉବାଚ ।
ଯ ଇଦଂ ଶୃଣୁୟାତ୍କାଲେ ଯୋ ଧାରୟତି ଶ୍ରଦ୍ଧୃତଃ ।
ତଂ ନମସ୍ୟନ୍ତି ଭୂତାନି ମୁଚ୍ୟତେ ସର୍ବତୋ ଭୟାତ୍ । ୪୧ ।
ଏତାଂ ବିଦ୍ୟାମଧିଗତୋ ବିଶ୍ୱରୂପାଚ୍ଛତକ୍ରତୁଃ ।
ତ୍ରୈଲୋକ୍ୟଲକ୍ଷ୍ମୀଂ ବୁଭୁଜେ ବିନିର୍ଜିତ୍ୟ ମୃଧେଽସୁରାନ୍ । ୪୨ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ନାରାୟଣବର୍ମୋପଦେଶୋ ନାମାଷ୍ଟମୋଽଧ୍ୟାୟଃ । ୮ ।

---

ଗନ୍ଧର୍ବପତି ଚିତ୍ରରଥ ହଠାତ୍ ରଥ ସହିତ ନମ୍ର ଦେଶରେ ଆକାଶମାର୍ଗରୁ ପତିତ ହେଲେ । ତହୁଁ ସେ ବିସ୍ମିତ ଭାବରେ ବାଳଖିଲ୍ୟ ଋଷିମାନଙ୍କଠାରୁ ଉପଦେଶ ଲାଭ କରି କୌଶିକଙ୍କର ଅସ୍ଥିକୁ ନେଇ ପୂର୍ବଦିଗରେ ସରସ୍ୱତୀ ନଦୀରେ ନିକ୍ଷେପ କରି ସ୍ୱଧାମକୁ ଗମନ କଲେ । ୪୦ ।

ଶ୍ରୀଶୁକଦେବ କହିଲେ :—

ଯେଉଁ ବ୍ୟକ୍ତି ଯଥା ସମୟରେ ଏହି କବଚ ଶ୍ରବଣ କରେ ଏବଂ ଆଦର ପୂର୍ବକ ଧାରଣ କରେ ପ୍ରାଣିମାନେ ତାହାକୁ ନମସ୍କାର କରନ୍ତି ଏବଂ ସେ ସର୍ବ ବିପଦରୁ ମୁକ୍ତ ହୁଏ । ୪୧ ।

ଇନ୍ଦ୍ର ବିଶ୍ୱରୂପଙ୍କଠାରୁ ଏହି କବଚ ପ୍ରାପ୍ତ ହୋଇ ଯୁଦ୍ଧରେ ଅସୁରମାନଙ୍କୁ ପରାଜିତ କରି ତ୍ରିଭୁବନ ସମ୍ପଦ ଭୋଗ କରିଥିଲେ । ୪୨ ।

---

ଶୀଘ୍ରେ ସେ କରି ପ୍ରାସନ
ସରସ୍ୱତୀରେ କଲି ସ୍ନାନ
ପୁଣି ବିମାନ ଆରୋହିଲା
ପୁଣି ସେ ନିଜପୁର ଗଲା ।୩୯,୪୦
ଯେ ଏହା ସମୟରେ ଶୁଣି
ଆଦର କରି ଧରେ ପ୍ରାଣୀ

ସେ ସର୍ବ ପାପରୁ ବାହାର
ସର୍ବେ କରନ୍ତି ନମସ୍କାର
ଇନ୍ଦ୍ର ବିଶ୍ୱରୂପର ତହୁଁ
ଏ ମହାବିଦ୍ୟା ଶିକ୍ଷା ପାଇ
ସଂଗ୍ରାମେ ଅସୁର ଜିଣିଲେ
ତ୍ରୈଲୋକ୍ୟ ଲକ୍ଷ୍ମୀ ଭୋଗ କଲେ
।୪୧,୪୨

ଦ୍ୱିଜ ଜଗନ୍ନାଥ ବୋଲଇ
ନାମରେ ସ୍ୱର୍ଗ ସିଦ୍ଧ ହୋଇ ।



**ବିଶେଷାର୍ଥ :—**

ଇନ୍ଦ୍ର ମଦମତ୍ତ ହୋଇ ପରିଣାମରେ ଆସୁରି ଶକ୍ତିଦ୍ୱାରା ପରାସ୍ତ ହୋଇଥିଲେ ଏବଂ ତାହାଙ୍କର ସମସ୍ତ ଐଶ୍ୱର୍ଯ୍ୟ ନଷ୍ଟ ହୋଇଥିଲା । ବିଶ୍ୱରୂପଙ୍କ ଶିଷ୍ୟତ୍ୱ ସ୍ୱୀକାର କରିବାରୁ ବିଶ୍ୱରୂପ ତାହାଙ୍କୁ ବୈଷ୍ଣବୀ ଶକ୍ତିରେ ଦୀକ୍ଷିତ କରିଥିଲେ । ଏହିପରି ମଦମତ୍ତ ମାନବ ଆସୁରି ସ୍ୱଭାପନ୍ନ ହୋଇ ନିଜର ଦେବତ୍ୱ ହରାଇ ଥିବାର ଉଦାହରଣ ଏ ସଂସାରରେ ନିତ୍ୟ ଦୃଷ୍ଟି ଗୋଚର ହୁଏ, ଦିବସରେ, ରାତ୍ରିରେ, ସାୟଂକାଳରେ ମଧ୍ୟାହ୍ନରେ, ଜଳରେ, ସ୍ଥଳରେ, ଆକାଶମାର୍ଗରେ ସର୍ବତ୍ର ମଦମତ୍ତ ମାନବର ବିପନ୍ନ ହେବାର ଆଶଙ୍କା ନିତ୍ୟ ବିଦ୍ୟମାନ ରହିଅଛି । ସେହି ବିପଦରୁ ଉତ୍ତୀର୍ଣ୍ଣ ହେବାପାଇଁ ଏକମାତ୍ର ସହାୟ ବିପନ୍ନ ବାନ୍ଧବ ମଧୁସୂଦନ ଭଗବାନ୍ ଶ୍ରୀହରି, ତାଙ୍କର ନାମକୁ କବଚରୂପେ ହୃଦୟରେ ଧାରଣ କଲେ ମାନବର ମଦଗର୍ବ ବିଦୂରିତ ହୁଏ, ହୃଦୟରେ ବିଷ୍ଣୁପ୍ରେମ, ହରିଭକ୍ତି ଜାଗ୍ରତ ହୁଏ ଏବଂ ତହିଁର ପରିଣାମରେ ମାନବ ବିପଦ ସାଗରରୁ ଉତ୍ତୀର୍ଣ୍ଣ ହୁଏ, ଏହାହିଁ ଏ ଅଧ୍ୟାୟର ଶିକ୍ଷଣୀୟ ବିଷୟ ।

ତାନ୍ତ୍ରିକ ମତରେ ଅଙ୍ଗନ୍ୟାସ, କରନ୍ୟାସ ଇତ୍ୟାଦି କ୍ରିୟା ସମାଧାନ କରି କିପରି ବିଷ୍ଣୁକବଚ ଧାରଣ କରିବାକୁ ହେବ ତାହା ଏ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।

ଏହି ଅଧ୍ୟାୟରେ ତିନପ୍ରକାର ବିଷ୍ଣୁମନ୍ତ୍ର ପ୍ରଧାନତଃ ଉଲ୍ଲେଖ କରାଯାଇଅଛି । ପ୍ରଥମତଃ ଅଷ୍ଟାକ୍ଷର ମନ୍ତ୍ର 'ଓଁ ନମୋ ନାରାୟଣାୟ', ଦ୍ୱିତୀୟତଃ ଦ୍ୱାଦଶାକ୍ଷର ମନ୍ତ୍ର ଯଥା :—ଓଁ ନମୋ ଭଗବତେ ବାସୁଦେବାୟ, ତୃତୀୟତଃ ଓଁ ବିଷ୍ଣବେ ନମଃ, ( ଓଁ ବି + ଷ + ଣ + ବେ + ନମଃ ) । ଏହି ମନ୍ତ୍ରମାନ ନ୍ୟାସ କରି ବିଷ୍ଣୁ କବଚ ଧାରଣ କରିବ ।



## ନ ବ ମ ଅ ଧ୍ୟା ୟ ।

ନବମେ ବିଶ୍ୱରୂପେ ତୁ ହତେ ଶକ୍ରେଣ କୋପତଃ ।
ତ୍ୱଷ୍ଟ୍ରା ସ୍ୱେତ୍‌ପାଦତେ ବୃତ୍ରେ ଭୀତୈର୍ଦେବୈର୍ହରେଃ ସ୍ତୁତଃ ।୦। (ଶ୍ରୀଧରସ୍ୱା· 1)

ଶ୍ରୀଶୁକ ଉବାଚ ।

ତସ୍ୟାସନ୍ ବିଶ୍ୱରୂପସ୍ୟ ଶିରାଂସି ତ୍ରୀଣି ଭାରତ ।
ସୋମପୀଥଂ ସୁରାପୀଥମନ୍ନାଦମିତି ଶୁଶ୍ରୁମ ।୧।
ସ ବୈ ବର୍ହିଷି ଦେବେଭ୍ୟୋ ଭାଗଂ ପ୍ରତ୍ୟକ୍ଷମୁଚ୍ଚକୈଃ ।
ଅଦଦ୍‌ଯସ୍ୟ ପିତରୋ ଦେବାଃ ସପ୍ରଶ୍ରୟଂ ନୃପ ।୨।
ସ ଏବ ହି ଦଦୌ ଭାଗଂ ପରୋକ୍ଷମସୁରାନ୍ ପ୍ରତି ।
ଯଜମାନୋଽବହଦ୍‌ଭାଗଂ ମାତୃସ୍ନେହବଶାନୁଗଃ ।୩।

---

### ବୃତ୍ରାସୁରର ଉତ୍ପତ୍ତି ଏବଂ ଭୀତ ଦେବଗଣଙ୍କର କର୍ତ୍ତୃକ ନାରାୟଣ ସ୍ତବ ।

**ନବମ ଅଧ୍ୟାୟରେ ଇନ୍ଦ୍ର କୋପକରି ବିଶ୍ୱରୂପଙ୍କୁ ବଧ କରନ୍ତେ ତ୍ୱଷ୍ଟା କ୍ରୋଧରେ ବୃତ୍ରାସୁରଙ୍କୁ ଜନ୍ମ କରାନ୍ତେ ଦେବତାମାନେ ଭୀତ ହୋଇ ଶ୍ରୀହରିଙ୍କୁ ସ୍ତୁତିକରିବା ବର୍ଣ୍ଣିତ ହୋଇଅଛି । ୦ ।**

ଶ୍ରୀଶୁକଦେବ କହିଲେ :—

ହେ ଭାରତ ! ସେହି ବିଶ୍ୱରୂପଙ୍କର ତିନୋଟି ମସ୍ତକ ଥିଲା, ସେ ଗୋଟିକରେ ସୋମରସ ପାନକରନ୍ତି ଅନ୍ୟଟିରେ ସୁରାପାନକରନ୍ତି ଓ ଅନ୍ୟଟିରେ ଅନ୍ନାଦି ଭକ୍ଷଣ କରନ୍ତି । ଏହିପରି ଆମ୍ଭେମାନେ ଶୁଣୁ ଅଛୁ ।୧।

ହେ ନୃପ ! ଦେବଗଣ ଯାହାଙ୍କର ପିତୃସ୍ଥାନୀୟ, ସେହି ବିଶ୍ୱରୂପ ଯଜ୍ଞକାଳରେ ଦେବତା ମାନଙ୍କୁ ଯଜ୍ଞଭାଗ ଦେଉଥିଲେ । ଏବଂ ସେ ସମୟରେ ସର୍ବଲୋକ ସମକ୍ଷରେ ଉଚ୍ଚସ୍ୱରରେ ବିନୀତ ଭାବରେ ସେମାନଙ୍କର ନାମ ଉଲ୍ଲେଖ କରୁଥିଲେ ।୨।

ବିଶ୍ୱରୂପ ଯଜ୍ଞ କଲାବେଳେ ଦେବତାମାନଙ୍କର ଅସାକ୍ଷାତରେ ଅସୁରମାନଙ୍କୁ ମଧ୍ୟ ଯଜ୍ଞଭାଗ ପ୍ରଦାନ କରୁଥିଲେ, ମାତାମହ ବଂଶପ୍ରତି ଅନୁରାଗ ବଶତଃ ସ୍ୱୟଂ ବହନ କରି ନେଇ ଅସୁରମାନଙ୍କୁ ଏହି ଯଜ୍ଞ ଭାଗ ଦେଉଥିଲେ ।୩।

---

**ନବମେ ଇନ୍ଦ୍ର ବିଶ୍ୱରୂପ, ମୁଣ୍ଡକାଟନ୍ତେ କରିକୋପ । ତା ପିତା ଜନ୍ମାଇଲା ପୁତ୍ର, ଯାହାର ନାମ ହେଲା ବୃତ୍ର ॥**

ଶ୍ରୀ ବାଦରାୟଣିରୁବାଚ—

ଶୁଣ ପରୀକ୍ଷ ନୃପବର
ବିଶ୍ୱରୂପର ତିନିଶିର
ଏକ ମୁଖରେ ସୋମପାନ
କରଇ ସେହୁ ପ୍ରତିଦିନ
ଦ୍ୱିତୀୟେ ସୁରା ପାନ କରେ
ଅନ୍ନ ଭକ୍ଷଣ ତୃତୀୟରେ ।୧।
ଦେବମାନଙ୍କ ତହୁଁ ଆଣି
ଯଜ୍ଞର ଭାଗ ନୃପମଣି ।
ଦେଲା ଅସୁରମାନଙ୍କରେ
ଗୁପତେ ଆହୁତି ଅଗ୍ନିରେ
ଯଦ୍ୟପି ଦେବେ ପିତା ତାର
ତାହାଙ୍କୁ କରି ଅନାଦର
ଦେଲା ଅସୁରମାନଙ୍କରେ
ଭାଗକୁ ଆଣି ପରୋକ୍ଷରେ
ମାତୃପକ୍ଷରେ ସ୍ନେହକରି
ଏମନ୍ତ କର୍ମ ସେ ଆଚରି ।୨,୩।

ତଦ୍ଦେବହେଳନଂ ତସ୍ୟ ଧର୍ମ୍ମାଲୀକଂ ସୁରେଶ୍ୱରଃ ।
ଆଲକ୍ଷ୍ୟ ତରସା ଭୀତସ୍ତଚ୍ଛୀର୍ଷାଣ୍ୟଚ୍ଛିନଦ୍‌ରୁଷା । ୪ ।
ସୋମପୀଥନ୍ତୁ ଯତ୍ତସ୍ୟ ଶିର ଆସୀତ୍ କପିଞ୍ଜଳଃ ।
କଲବିଙ୍କଃ ସୁରାପୀଥମନ୍ନାଦଂ ଯତ୍ ସ ତିତ୍ତିରିଃ । ୫ ।
ବ୍ରହ୍ମହତ୍ୟାମଞ୍ଜଲିନା ଜଗ୍ରାହ ଯଦପୀଶ୍ୱରଃ ।
ସମ୍ବତ୍ସରାନ୍ତେ ତଦଘଂ ଭୂତାନାଂ ସ ବିଶୁଦ୍ଧୟେ । ୬ ।
ଭୂମ୍ୟମ୍ବୁଦ୍ରୁମଯୋଷିଦ୍‌ଭ୍ୟଶ୍ଚତୁର୍ଦ୍ଧା ବ୍ୟଭଜଦ୍ଧରିଃ ।
ଭୂମିସ୍ତୁରୀୟଂ ଜଗ୍ରାହ ଖାତପୂରବରେଣ ବୈ । ୭ ।

ବିଶ୍ୱରୂପ ଦେବତାମାନଙ୍କ ପ୍ରତି ଏହିପରି କପଟାଚରଣକରି ଅବଜ୍ଞା କରୁଥିବାର ଜାଣିପାରି ଦେବରାଜ ଇନ୍ଦ୍ର ଭୀତ ଓ କ୍ରୁଦ୍ଧ ହୋଇ ତାହାଙ୍କର ମସ୍ତକ ତ୍ରୟ ଛେଦନ କରିଥିଲେ । ୪ ।


ଇନ୍ଦ୍ରଙ୍କ କର୍ତ୍ତୃକ ବିଶ୍ୱରୂପ ବଧ ।

ଇନ୍ଦ୍ରଙ୍କର କର୍ତ୍ତୃକ ମସ୍ତକ ଛିନ୍ନ ହୋଇ ସୋମରସ ପାନକାରୀ ମସ୍ତକଟି କପିଞ୍ଜଳ ପକ୍ଷୀହେଲା, ସୁରାପାୟୀ ମସ୍ତକଟି କଲବିଙ୍କ ପକ୍ଷୀ ହେଲା ଏବଂ ଅନ୍ନ ଭକ୍ଷଣ କାରୀ ମସ୍ତକଟି ତିତ୍ତିରି ପକ୍ଷୀ ହେଲା । ୫ ।

ଇନ୍ଦ୍ର ବ୍ରହ୍ମହତ୍ୟା ଜନିତ ପାପ ନିବାରଣ କରିବାକୁ ସମର୍ଥ ଥିଲେ ମଧ୍ୟ ସେ ଅଞ୍ଜଳି ପାତି ତାହା ଗ୍ରହଣ କରିଥିଲେ । ଏପରି ବର୍ଷକ ଉତ୍ତାରୁ ଲୋକ ସମାଜରେ ବ୍ରହ୍ମହତ୍ୟା ପାପ ଜନିତ ଅପବାଦ ପରିହାର ନିମିତ୍ତ, ସେହି ପାପକୁ ଚାରି ଭାଗରେ ବିଭାଗ କରି ଭୂମି, ଜଳ, ବୃକ୍ଷ ଓ ନାରୀମାନଙ୍କୁ ଅର୍ପଣ କରିଥିଲେ, ସେମାନଙ୍କ ମଧ୍ୟରୁ ଭୂମି, ଏହିପରି ବରଲାଭ କରିଥିଲେ ଯେ ଭୂମିର ଖାତ ଗୁଡ଼ିକ ନିଜେ ନିଜେ ପୂର୍ଣ୍ଣ ହୋଇଯିବ । ୬,୭ ।

ଏମନ୍ତ ଦେବଙ୍କ ହେଳନ
ଦେଖି ତାହାର ମଘବାନ
ସଭୟେ ହୋଇ ଖରତର
ବେଗେ ଛେଦିଲା ତାର ଶିର ।୪।
ଯେ ମୁଣ୍ଡେ କରେ ସୋମପାନ
ତାହାକୁ କରନ୍ତେ ଛେଦନ
ଜନ୍ମିଲା ହୋଇ ପକ୍ଷୀ ଏକ
ନାମ ତା ହୋଇଲା ଚାତକ

ସୁରାପାୟୀ ଯେଉଁ ମସ୍ତକ
ଛେଦନ୍ତେ ସେ ହେଲା ଚଟକ
ଅନ୍ନଭୋଜୀ ମସ୍ତକ ତାର
ହୋଇଲା ତିତ୍ତିର ଆକାର ।୫।
ଏମନ୍ତେ ସେ ବିଶ୍ୱରୂପର
ଇନ୍ଦ୍ର ଛେଦିଲେ ଯହୁଁ ଶିର
କରି ଅଞ୍ଜଳି ପ୍ରସାରଣ
ବ୍ରହ୍ମ ହତ୍ୟା କଲେ ଗ୍ରହଣ

ଆତ୍ମାର ବିଶୁଦ୍ଧି ନିମନ୍ତେ
ବିଭାଗ କରି ଏହିମତେ
ସ୍ତ୍ରୀ, ଭୂ, ଜଳ, ଦ୍ରୁମଠାରେ
ଅର୍ପିଲେ ଏମନ୍ତ ପ୍ରକାରେ
ଭୂମି ଘେନିଲେ ଭାଗଟିଏ
ଖାତ ପୂରଣ ବରେ କରି
ବ୍ରହ୍ମହତ୍ୟା ତେଣୁ ଉଷରେ
ଅଦ୍ୟାପି ଦିଶଇ ଭୂମିରେ ।୬,୭।

ଈରିଣଂ ବ୍ରହ୍ମହତ୍ୟାୟା ରୂପଂ ଭୂମୌ ପ୍ରଦୃଶ୍ୟତେ ।
ତୁର୍ଯ୍ୟଂ ଛେଦବିରୋହେଣ ବରେଣ ଜଗୃହୁର୍ଦ୍ରୁମାଃ । ୮ ।
ତେଷାଂ ନିର୍ଯ୍ୟାସରୂପେଣ ବ୍ରହ୍ମହତ୍ୟା ପ୍ରଦୃଶ୍ୟତେ ।
ଶଶ୍ୱତ୍ କାମବରେଣାଂହସ୍ତୁରୀୟଂ ଜଗୃହୁଃ ସ୍ତ୍ରିୟଃ । ୯ ।
ରଜୋରୂପେଣ ତାସ୍ୱଂହୋ ମାସି ମାସି ପ୍ରଦୃଶ୍ୟତେ ।
ଦ୍ରବ୍ୟଭୂୟୋ ବରେଣାପସ୍ତୁରୀୟଂ ଜଗୃହୁର୍ମଲମ୍ । ୧୦ ।
ତାସୁ ବୁଦ୍‌ବୁଦଫେନାଭ୍ୟାଂ ଦୃଷ୍ଟଂ ତଦ୍ଧରତି କ୍ଷିପନ୍ ।
ହତପୁତ୍ରସ୍ତତସ୍ତ୍ୱଷ୍ଟା ଜୁହାବେନ୍ଦ୍ରାୟ ଶତ୍ରବେ । ୧୧ ।

---

ଭୂମିରେ ଯେଉଁ ବ୍ରହ୍ମହତ୍ୟା ପାପର ଚିହ୍ନ ସ୍ୱରୂପ ଊଷରକ୍ଷେତ୍ର ଭୂମିରେ ଦୃଷ୍ଟ ହୋଇଥାଏ । ( ଊଷର କ୍ଷେତ୍ରରେ ଅଧ୍ୟୟନାଦି ନିଷିଦ୍ଧ ); ଶାଖାଦି ଛେଦନ କଲେ ମଧ୍ୟ ତାହା ପୁନର୍ବାର ଜନ୍ମିବ ଏହି ବରପ୍ରାପ୍ତ ହୋଇ ବୃକ୍ଷାଦି ଏକ ଚତୁର୍ଥାଂଶ ପାପ ଗ୍ରହଣ କଲେ । ଏଣୁ ବ୍ରହ୍ମହତ୍ୟା ଚିହ୍ନ ସ୍ୱରୂପ ବୃକ୍ଷମାନଙ୍କର ନିର୍ଯ୍ୟାସ (ଅଠା) ଦୃଷ୍ଟ ହୁଏ, ସର୍ବଦା ସମ୍ଭୋଗ ଶକ୍ତି ଥିବ ଏହି ବର ଗ୍ରହଣ କରି ସ୍ତ୍ରୀମାନେ ପାପର ଏକ ଚତୁର୍ଥାଂଶ ଗ୍ରହଣ କରିଥିଲେ । ୮, ୯ ।

ସ୍ତ୍ରୀ ମାନଙ୍କର ପ୍ରତି ମାସରେ ଋତୁ ସ୍ରାବ ହୁଏ । ତାହାହିଁ ଏହି ପାପର ଚିହ୍ନ ସ୍ୱରୂପ ଲକ୍ଷିତ ହୋଇଥାଏ, ଜଳ ଯେଉଁ ବସ୍ତୁ ସହିତ ମିଶ୍ରିତ ହେବ ତାହାର ବୃଦ୍ଧି ସମ୍ପାଦନ କରିବ ଏହି ବର ପ୍ରାପ୍ତ ହୋଇ ଜଳ ସେହି ପାପର ଅବଶିଷ୍ଟ ଚତୁର୍ଥାଂଶ ଗ୍ରହଣ କରିଥିଲେ । ଜଳ ବୁଦ୍‌ବୁଦ ଓ ଫେଣ ପ୍ରଭୃତି ଯାହା ଜଳ ମଧ୍ୟରେ ଦୃଷ୍ଟ ହୁଏ ତାହା ଏହି ପାପର ଚିହ୍ନ ସ୍ୱରୂପ, ଯେଉଁବ୍ୟକ୍ତି ଫେଣ ଓ ପାଣିଫୋଟକା ଦୂରକରେ ସେ ଏହିପାପ ଦୂର କରିପାରେ ପୁତ୍ରହୀନ ତ୍ୱଷ୍ଟା ଇନ୍ଦ୍ରଙ୍କ ଶତ୍ରୁ ସୃଷ୍ଟିପାଇଁ ଯଜ୍ଞକରିଥିଲେ ।୧୦,୧୧

---

ଦ୍ରୁମେ ଯେ ସ୍ୱର୍ଭଗ ନେଲେ
ଛେଦନେ ବଢିବାର ବରେ
ନିର୍ଯ୍ୟାସ ରୂପେ ଏହାଙ୍କର
ପାପ ଦିଶଇ ନୃପବର
କାମ ବଶରେ ସ୍ତ୍ରୀସ୍ୱଜନ
ସମ୍ଭୋଗ ହେବ ପ୍ରତିଦିନ
ନାରୀଏ ଏ ବର ପାଇଣ
ସ୍ୱର୍ଭଗ କଲେ ଗ୍ରହଣ
ରଜ ରୂପରେ ପ୍ରତିମାସ
ଏଙ୍କଦେହେଁ ପାପ ହୋଏ ଦୃଶ୍ୟ ।୮।୯
ମିଶି ବଢିବା ବରେ ଜଳ
ଘେନିଲା ସ୍ୱର୍ଭଗ ମଳ
ସେ ପାପ ବୁଦ୍‌ବୁଦ୍ ଫେନରେ
ଅଦ୍ୟାପି ଦିଶଇ ସଂସାରେ
ସେହି ଫେନକୁ ପକାଇଲେ
ଜଳର ପାପ ନାଶେ ଭଲେ
ଏମନ୍ତ ପ୍ରକାରେ ହେ ନୃପ
ହରି କଳିତ ହେଲା ପାପ ।୧୦।
ଏ ଅନନ୍ତରେ ସେ ତ୍ୱଷ୍ଟାର
ଯେଣୁ ହତ ହେଲା କୁମର
ପୁତ୍ର ଶୋକରେ ଦୁଃଖୀ ହୋଇ
ଇନ୍ଦ୍ରର ଶତ୍ରୁ ବୃଦ୍ଧିପାଇ
ହୋମ ଆରମ୍ଭିଲୁ ବିପ୍ର
ବୋଲନ୍ତି ଅତି କ୍ରୋଧକରି ।୧୧।

ଇନ୍ଦ୍ରଶତ୍ରୋ ବିବର୍ଦ୍ଧସ୍ୱ ମା ଚିରଂ ଜହି ବିଦ୍ୱିଷମ୍ ।
ଅଥାନ୍ୱାହାର୍ଯ୍ୟପଚନାଦୁତ୍‌ଥିତୋ ଘୋରଦର୍ଶନଃ ।୧୨।
କୃତାନ୍ତ ଇବ ଲୋକାନାଂ ଯୁଗାନ୍ତସମୟେ ଯଥା ।
ବିଷ୍ୱଗ୍‌ବିବର୍ଦ୍ଧମାନଂ ତମିଷୁମାତ୍ରଂ ଦିନେ ଦିନେ ।୧୩।
ଦଗ୍ଧଶୈଳ ପ୍ରତୀକାଶଂ ସନ୍ଧ୍ୟାଭ୍ରାନୀକବର୍ଚ୍ଚସମ୍ ।
ତପ୍ତତାମ୍ରଶିଖାଶ୍ମଶ୍ରୁଂ ମଧ୍ୟାହ୍ନାର୍କୋଗ୍ରଲୋଚନମ୍ ।୧୪।
ଦେଦୀପ୍ୟମାନେ ତ୍ରିଶିଖେ ଶୂଳ ଆରୋପ୍ୟ ରୋଦସୀ ।
ନୃତ୍ୟନ୍ତମୁନ୍ନଦନ୍ତଞ୍ଚ ଚାଳୟନ୍ତଂ ପଦା ମହୀମ୍ ।୧୫।

---

ତ୍ୱଷ୍ଟା ପୁତ୍ରହୀନ ହୋଇ ଇନ୍ଦ୍ରଙ୍କୁ ବଧ କରିବା ଲାଗି ତାହାଙ୍କର ଶତ୍ରୁ ସୃଷ୍ଟି ଉଦ୍ଦେଶ୍ୟରେ ପ୍ରାର୍ଥନା କରି ଏହି ମନ୍ତ୍ରରେ ଅଗ୍ନିରେ ଆହୁତି ପ୍ରଦାନ କରିଥିଲେ—ହେ ଇନ୍ଦ୍ରଶତ୍ରୁ ! ତୁମ୍ଭେ ବର୍ଦ୍ଧିତ ହୋଇ ଶୀଘ୍ର ଶତ୍ରୁ ବିନାଶ କର । ତଦନନ୍ତର ପ୍ରଳୟକାଳୀନ ଯମ ତୁଲ୍ୟ ଭୀତିପ୍ରଦ ମୂର୍ତ୍ତି ଧାରଣକରି ଦକ୍ଷିଣାଗ୍ନିରୁ ଗୋଟିଏ ପୁରୁଷ ଆବିର୍ଭୂତ ହୋଇଥିଲା । ୧୨ ।

ତାହାର ଦେହ ପ୍ରତିଦିନ ବାଣ ନିକ୍ଷେପ କଲେ ଯେତେଦୂର ସ୍ଥାନ ପର୍ଯ୍ୟନ୍ତ ଯାଏ ସେପରିମାଣରେ ସେହିପରି ଦୀର୍ଘ ଭାବରେ ବର୍ଦ୍ଧିତ ହେଲା । ତାହାଙ୍କର ଦଗ୍ଧ ପର୍ବତ ସଦୃଶ ଘୋର କୃଷ୍ଣବର୍ଣ୍ଣ ମୂର୍ତ୍ତି ଏବଂ ସନ୍ଧ୍ୟା କାଳୀନ ମେଘ ତୁଲ୍ୟ ଭୀତିପ୍ରଦ । ତାହାଙ୍କୁ ଦେଖି ଲୋକେ ଭୟରେ ପଳାୟନ କରୁଥିଲେ ତାହାଙ୍କର ଶିଖା ଓ ଶ୍ମଶ୍ରୁ ତପ୍ତ ତାମ୍ର ତୁଲ୍ୟ ପିଙ୍ଗଳ ବର୍ଣ୍ଣ, ନୟନ ଦ୍ୱୟ ମଧ୍ୟାହ୍ନ ସୂର୍ଯ୍ୟ ତୁଲ୍ୟ ଉଗ୍ର ।। ୧୩,୧୪ ।

ସେ ଅତ୍ୟନ୍ତ ଦୀପ୍ତିସମ୍ପନ୍ନ ତ୍ରିଶୂଳାଗ୍ରରେ ସ୍ୱର୍ଗ ଓ ମର୍ତ୍ତ୍ୟକୁ ସ୍ଥାପନ କରି ଉଦ୍ଦାମ ନୃତ୍ୟ ଓ ଭୀମ ଗର୍ଜ୍ଜନ କରନ୍ତେ ତାହାଙ୍କର ପଦଭରରେ ପୃଥିବୀ କମ୍ପିତ ହେଲା । ୧୫ ।

---

ଇନ୍ଦ୍ରର ଶତ୍ରୁ ହୋଇ ଜାତ
ବେଗେ ଇନ୍ଦ୍ରକୁ କର ହତ
ଏମନ୍ତ ବୋଲୁ ସେ ବଚନ
କେତେ ଆହୁତି କଲା ଦାନ
ପୁରୁଷେ ବହିଁରୁ ବାହାର
ରୂପ ତା ଅତି ଭୟଙ୍କର
ଯୁଗାନ୍ତ କାଳହିଁ ଯେମନ୍ତ
ପ୍ରାଣିଙ୍କି ଯେସନେ କୃତାନ୍ତ

ଦିନକୁ ଦିନ ଅତି ଘୋର
ବଢ଼ଇ ବିଶ୍ୱରୂପ ତାର ।୧୨,୧୩।
ଦଗଧ ଗିରି ପ୍ରାୟ ହୋଇ
ତାହାର ଶରୀର ଦିଶଇ
କାନ୍ତି ତାହାର ବିରାଜଇ
କଲ୍ପାନ୍ତ-ମେଘ ପ୍ରାୟ ହୋଇ
ତପତ ତମ୍ବା ଶିଖା ଯେହ୍ନେ
କେଶ ତା ଦିଶଇ ତେସନେ

ମଧ୍ୟାହ୍ନରବି ପ୍ରାୟ ହୋଇ
ବେନି ଲୋଚନ ବିରାଜଇ ।୧୪।
ଅନଳ ତେଜପ୍ରାୟେ ତାର
ଏମନ୍ତ ଶୂଳ ଧରି କର
ବୁଲଇ ଅତି ଖରତର
ଶବଦ କରେ ମହାଘୋର
ନୃତ୍ୟ କରଇ ମତ୍ତ ହୋଇ
ପାଦେ କମ୍ପଇ ମହାମହୀ ।୧୫।

ଦରୀଗମ୍ଭୀରବକ୍ତ୍ରେଣ ପିବତା ଚ ନଭସ୍ତଳମ୍ ।
ଲିହତା ଜିହ୍ୱୟର୍କ୍ଷାଣି ଗ୍ରସତା ଭୁବନତ୍ରୟମ୍ । ୧୬ ।
ମହତା ରୌଦ୍ରଦଂଷ୍ଟ୍ରେଣ ଜୃମ୍ଭମାଣଂ ମୁହୁର୍ମୁହୁଃ ।
ବିତ୍ରସ୍ତା ଦୁଦ୍ରୁବୁର୍ଲୋକା ବୀକ୍ଷ୍ୟ ସର୍ବେ ଦିଶୋ ଦଶ । ୧୭ ।
ଯେନାବୃତା ଇମେ ଲୋକାସ୍ତପସା ତ୍ୱାଷ୍ଟ୍ରମୂର୍ତ୍ତିନା ।
ସ ବୈ ବୃତ୍ର ଇତି ପ୍ରୋକ୍ତଃ ପାପଃ ପରମଦାରୁଣଃ । ୧୮ ।
ତଂ ନିଜଘ୍ନୁରଭିଦ୍ରୁତ୍ୟ ସଗଣା ବିବୁଧର୍ଷଭାଃ ।
ସ୍ୱୈଃ ସ୍ୱୈର୍ଦିବ୍ୟାସ୍ତ୍ରଶସ୍ତ୍ରୌଘୈଃ ସୋଽଗ୍ରସତ୍ ତାନି କୃତ୍ସ୍ନଶଃ ।୧୯।
ତତସ୍ତେ ବିସ୍ମିତାଃ ସର୍ବେ ବିଷଣ୍ଣା ଗ୍ରସ୍ତତେଜସଃ ।
ପ୍ରତ୍ୟଞ୍ଚମାଦିପୁରୁଷମୁପତସ୍ଥୁଃ ସମାହିତାଃ । ୨୦ ।

---

ତାହାଙ୍କର ମୁଖ ଅତି ବିଶାଳ, ପର୍ବତ ଗୁହା ତୁଲ୍ୟ ଅତ୍ୟନ୍ତ ଗମ୍ଭୀର । ତନ୍ମଧ୍ୟରେ ଅତିଭୟଙ୍କର ଦନ୍ତ ଶ୍ରେଣୀ ମୁଖ ମଧ୍ୟରେ ସେ ଯେପରି ଗଗନ ତଳକୁ ପାନ କରୁଅଛି ଓ ତ୍ରିଭୁବନକୁ ଗ୍ରାସ କରୁଅଛି ଏବଂ ବାରଂବାର ହାଇ ମାରୁଅଛି, ସେହି ଭୀମ ମୂର୍ତ୍ତି ଅସୁରକୁ ଦେଖି ସମଗ୍ର ଲୋକ ଭୟରେ ଦଶ ଦିଗକୁ ପଳାୟନ କଲେ । ୧୬,୧୭ ।

ଏହି ଅସୁର ତ୍ୱଷ୍ଟାଙ୍କର ସ୍ୱଭାବ ଅନୁସାରେ ତପୋବଳ ଲାଭକରି ତଦ୍ୱାରା ତ୍ରିଲୋକକୁ ଆବୃତ କରିଥିଲା । ତେଣୁ ସେହି ଦାରୁଣ ପାପିଷ୍ଠ ବୃତ୍ର ନାମରେ ଆଖ୍ୟାତ ହେଲା । ୧୮ ।

ଦେବତାମାନେ ସଦଳବଳରେ ତାହାଙ୍କୁ ଆକ୍ରମଣ କରି ନିଜ ନିଜର ଦିବ୍ୟ ଅସ୍ତ୍ର ଦ୍ୱାରା ପ୍ରହାର କରନ୍ତେ ସେ ସେ ଅସ୍ତ୍ରମାନଙ୍କୁ ଗ୍ରାସ କରି ପକାଇଲା । ୧୯ ।

ତଦନ୍ତର ଦେବତାମାନେ ଅତ୍ୟନ୍ତ ବିସ୍ମିତ ଓ ବିଷର୍ଣ୍ଣ ହୋଇଥିଲେ । ସେମାନଙ୍କର ପ୍ରଭାବ ଅସ୍ତମିତ ହେଲା । ସେମାନେ ଏକାଗ୍ର ଚିତ୍ତରେ ସର୍ବାନ୍ତର୍ଯ୍ୟାମୀ ଭଗବାନଙ୍କୁ ସ୍ତବ କରିବାକୁ ଲାଗିଲେ ।୨୦।

---

ଗିରି ଗୁହା ପ୍ରାୟ ବଦନ
ତେଣେ କି ପିଉଛି ଗଗନ
ଜିହ୍ୱା ବୁଲଉଛି ଏସନ
ଗିଳିବ ଯେସନେ ତ୍ରିଭୁବନ
ଦନ୍ତ ଅତି ରୌଦ୍ର ଦିଶଇ
ପୁଣିହିଁ ପୁଣିହିଁ ହସଇ
ଭୀତ ହୋଇଣ ସର୍ବଜନ
ପଳାନ୍ତି ଘେନିଣ ଜୀବନ ।୧୬-୧୭।

ତ୍ୱଷ୍ଟାର ପୁତ୍ର ଏ ଯେ ପାପ
ଲୋକେ ପାଇଲେ ବହୁ ତାପ
ଦାରୁଣ ଏ ବୃତ୍ର ଅସୁର
ଏରୂପେ ଜନ୍ମଟି ତାହାର ।୧୮।
ଇନ୍ଦ୍ର ଦେବଗଣ ସହିତେ
ମିଳିଲେ ତାହାର ଅଗ୍ରତେ
ଯେ ଯାହା ଶସ୍ତ୍ର ଧରି କରେ
ପିଟିଲେ ବୃତ୍ରର ଉପରେ

ଶସ୍ତ୍ର ଯେତେକ ଦେବଙ୍କର
ସବୁ ଗିଳିଲା ସେ ଅସୁର ।୧୯।
ଏ ଅନନ୍ତରେ ଦେବଗଣ
ବିସ୍ମୟ ହୋଇ ହତଜ୍ଞାନ
କଷ୍ଟରେ ମନ ସ୍ଥିର କଲେ
ମହାପୁରୁଷ ଆରାଧିଲେ ।୨୦।

ଶ୍ରୀଦେବା ଊଚୁଃ ।

ବାୟ୍ୱମ୍ବରାଗ୍ନ୍ୟପ୍କ୍ଷିତୟସ୍ତ୍ରିଲୋକା ବ୍ରହ୍ମାଦୟୋ ଯେ ବୟମୁଦ୍ୱିଜନ୍ତଃ ।
ହରାମ ଯସ୍ମୈ ବଲିମନ୍ତକୋଽସୌ ବିଭେତି ଯସ୍ମାଦରଣଂ ତତୋଽସ୍ତୁ ନଃ ।୨୧।
ଅବିସ୍ମିତଂ ତଂ ପରିପୂର୍ଣ୍ଣକାମଂ ସ୍ୱେନୈବ ଲାଭେନ ସମଂ ପ୍ରଶାନ୍ତମ୍ ।
ବିନୋପସର୍ପତ୍ୟପରଂ ହି ବାଲିଶଃ ଶ୍ୱଲାଙ୍ଗୁଲେନାତିତିତର୍ତ୍ତି ସିନ୍ଧୁମ୍ । ୨୨ ।
ଯସ୍ୟୋରୁଶୃଙ୍ଗେ ଜଗତୀଂ ସ୍ୱନାବଂ ମନୁର୍ଯଥାବଧ୍ୟ ତତାର ଦୁର୍ଗମ୍ ।
ସ ଏବ ନସ୍ତ୍ୱାଷ୍ଟ୍ରଭୟାଦ୍ଦୁରନ୍ତାତ୍ ତ୍ରାତାଶ୍ରିତାନ୍ ବାରିଚରୋଽପି ନୂନମ୍ । ୨୩ ।

---

ଦେବତାମାନେ କହିଲେ :—କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ ଏହି ପଞ୍ଚଭୂତରେ ନିର୍ମିତ ତ୍ରିଭୁବନ ତାହାର ଅଧିପତି ଗଣ ଏବଂ ତତ୍ପରବର୍ତ୍ତୀ ଆମ୍ଭେମାନେ ଅର୍ଥାତ୍ ବ୍ରହ୍ମାଦି ଦେବଗଣ ଓ ସମସ୍ତେ ଭୀତହୋଇ ଯେଉଁ ଯମରାଜାଙ୍କୁ ଉପହାର ଦିଅନ୍ତି ଓ ପୂଜା କରନ୍ତି, ସେହି ଯମ ରାଜା ମଧ୍ୟ ଯାହାଙ୍କଠାରୁ ଭୀତ ପ୍ରାପ୍ତ, ସେହି ଭଗବାନ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ୨୧ ।

ଯେ ସମ ଅର୍ଥାତ୍ ନିରୁପାଧି ଓ ଅପରିଚ୍ଛିନ୍ନ ଏବଂ ଯେ ଆତ୍ମରୂପରେ ପରମତୃପ୍ତ, ସୁତରାଂ କୌଣସି ବସ୍ତୁପ୍ରତି ଯାହାଙ୍କର ରାଗ ଦ୍ୱେଷ ନାହିଁ, ତେଣୁ ଯେ କୌତୁହଳାତୀତ ସେହି ଭଗବାନଙ୍କ ଭିନ୍ନ ଅନ୍ୟ କାହାରି ନିକଟରେ ଯେଉଁ ମୂର୍ଖ ଶରଣାପନ୍ନ ହୁଏ ତାହାର ଅବସ୍ଥା କୁକୁର ଲାଙ୍ଗୁଡ ଧରି ସମୁଦ୍ର ପାରି ହେଲା ପରି । ସେ ବିପଦରୁ ପରିତ୍ରାଣ ପାଇବା ଏକାନ୍ତ ଅସମ୍ଭବ । ୨୨ ।

ମନୁ ଯେପରି ପ୍ରଳୟ କାଳରେ ମତ୍ସ୍ୟରୂପୀ ଭଗବାନଙ୍କର ବିଶାଳ ମସ୍ତକକୁ ନୌକାରୂପେ ଗ୍ରହଣ କରି ପ୍ରଳୟ ସଙ୍କଟରୁ ପାରି ହୋଇଥିଲେ ସେହିପରି ଆମ୍ଭେମାନେ ଶରଣାଗତ ହେଲେ ସେହି ଭଗବାନ ଏହି ବିଷମ ବୃତ୍ର ଭୟରୁ ଆମ୍ଭେମାନଙ୍କୁ ନିଶ୍ଚୟ ରକ୍ଷା କରିବେ । ୨୩ ।

---

ଦେବା ଊଚୁଃ—

ପବନ ଆକାଶ ଯେ ଅଗ୍ନି
ଜଳରି ସହିତେ ଅବନୀ
ବ୍ରହ୍ମା ସହିତେ ଆମ୍ଭେମାନେ
ଉଦ୍‌ବେଗ ପାଉଅଛୁ ମନେ
ଯାହାକୁ ବଳି ଆମ୍ଭେମାନେ
ଦେଇଣ ସେବୁଁ ଅନୁକ୍ଷଣେ
ଯେ କାଳ ଅନ୍ତକ ଅଟଇ
ସେ ଯାହାଠାରୁ ଭୟପାଇ
ସେ ପ୍ରଭୁ ଆମ୍ଭର ଶରଣ
ହୁଅନ୍ତୁ ଅଖିଳ କାରଣ । ୨୧ ।
ଅବିସ୍ମିତ ଯେ ପୂର୍ଣ୍ଣକାମ
ପ୍ରଶାନ୍ତ ସର୍ବଭୂତେ ସମ
ଏମନ୍ତ ଯେ ପରମେଶ୍ୱର
ତା ବିନୁ ଶଙ୍କଟରୁ ପାର
ଯେ ଜନ ଇଚ୍ଛଇ ଭ୍ରମରେ
ବାଳକ ବୁଦ୍ଧି ବୋଲି ତାରେ
ଶ୍ୱାନ ପୁଚ୍ଛକୁ ଧରି କରେ
ଅଜ୍ଞାନୀ ଯେସନେ ସିନ୍ଧୁ ତରେ । ୨୨
ନଉକା ରୂପେଣ ସଂସାର
ଶୃଙ୍ଗରେ ବାନ୍ଧିଣ ତାହାର
ମନୁ ଯେମନ୍ତ ଦୁର୍ଗ ତରି
ଯାହାର ପ୍ରସାଦରୁ କରି
ଏମନ୍ତ ଯେହୁ ମହାବାହୁ
ତାରିବେ ବୃତ୍ରାସୁର ଡହୁଁ । ୨୩।

ପୁରା ସ୍ୱୟମ୍ଭୂରପି ସଂଯମାମ୍ଭସ୍ୟୁଦୀର୍ଣ୍ଣବାତୋର୍ମିରବୈଃ କରାଳେ ।
ଏକୋରବିନ୍ଦାତ୍ ପତିତସ୍ତତାର ତସ୍ମାଦ୍‌ଭୟାଦ୍ ଯେନ ସ ନୋଽସ୍ତୁ ପାରଃ ।୨୪।
ଯ ଏକ ଈଶୋ ନିଜମାୟୟା ନଃ ସସର୍ଜ ଯେନାନୁସୃଜାମ ବିଶ୍ୱମ୍ ।
ବୟଂ ନ ଯସ୍ୟାପି ପୁରଃ ସମୀହତଃ ପଶ୍ୟାମ ଲିଙ୍ଗଂ ପୃଥଗୀଶମାନିନଃ । ୨୫ ।
ଯୋ ନଃ ସପତ୍ନୈର୍ଭୃଶମର୍ଦ୍ଦ୍ୟମାନାନ୍ ଦେବର୍ଷିତିର୍ଯ୍ୟଙ୍‌ନୃଷୁ ନିତ୍ୟ ଏବ ।
କୃତାବତାରସ୍ତନୁଭିଃ ସ୍ୱମାୟୟା କୃତାତ୍ମସାତ୍ ପାତି ଯୁଗେ ଯୁଗେ ଚ । ୨୬ ।
ତମେବ ଦେବଂ ବୟମାତ୍ମଦୈବତଂ ପରଂ ପ୍ରଧାନଂ ପୁରୁଷଂ ବିଶ୍ୱମନ୍ୟମ୍ ।
ବ୍ରଜାମ ସର୍ବେ ଶରଣଂ ଶରଣ୍ୟଂ ସ୍ୱାନାଂ ସ ନୋ ଧାସ୍ୟତି ଶଂ ମହାତ୍ମା । ୨୭ ।

---

ସୃଷ୍ଟିର ଆଦ୍ୟରେ ବ୍ରହ୍ମା ଏକାକୀ ଉତ୍ତାଳବାୟୁରାଶି ଦ୍ୱାରା ଉତ୍ପାଦିତ ତରଙ୍ଗରବରେ ଅତ୍ୟନ୍ତ ଭୟପ୍ରଦ ପ୍ରଳୟ ସମୁଦ୍ରରେ ଯେପରି ଭଗବାନଙ୍କ ନାଭିପଦ୍ମରୁ ପତନୋନ୍ମୁଖ ହୋଇଥିଲେ, ସେତେବେଳେ ତାହାଙ୍କର କରୁଣାରେ ତହିଁରୁ ଉଦ୍ଧାର ପାଇଥିଲେ, ସେହି ଭଗବାନ୍ ଆମ୍ଭମାନଙ୍କୁ ବିପଦସାଗରରୁ ପାରକରନ୍ତୁ।୨୪

ଯେଉଁ ଭଗବାନ ଏକାକୀ ନିଜ ମାୟାରୁ ସ୍ୱରୂପ ଶକ୍ତି ପ୍ରଭାବରେ ଆମ୍ଭମାନଙ୍କୁ ସୃଷ୍ଟି କରିଅଛନ୍ତି ଏବଂ ଆମ୍ଭେମାନେ ମଧ୍ୟ ଯାହାଙ୍କ ଶକ୍ତିରେ ଏହି ବିଶ୍ୱ ସୃଷ୍ଟି କରୁଅଛୁ ଯେ ଆମ୍ଭମାନଙ୍କ ସମ୍ମୁଖରେ ନାନାପ୍ରକାର ଲୀଳା ପ୍ରକାଶ କରୁଥିଲେ ମଧ୍ୟ ଆମ୍ଭେମାନେ ଈଶ୍ୱର ପୃଥକ୍ ପୃଥକ୍ ଏହି ମିଥ୍ୟା ଅଭିମାନରେ ମୁଗ୍ଧ ହୋଇ ତାହାଙ୍କର ସ୍ୱରୂପ ଦର୍ଶନକରି ପାରୁନାହୁଁ । ୨୫ ।

ଯେଉଁ ଭଗବାନ୍ ନିତ୍ୟ ହେଲେ ମଧ୍ୟ ସ୍ୱୀୟ ମାୟା ପ୍ରଭାବରେ ଦେବତା ଋଷି, ପଶୁ, ପକ୍ଷୀ ପ୍ରଭୃତି ତିର୍ଯ୍ୟକ୍‌ଜାତି ଓ ମନୁଷ୍ୟମାନଙ୍କ ମଧ୍ୟରେ ବିବିଧମୂର୍ତ୍ତିରେ ଅବତାର ଗ୍ରହଣ କରି ସମସ୍ତଙ୍କୁ ନିଜର ଆତ୍ମୀୟ କରନ୍ତି ଶତ୍ରୁ ପୀଡ଼ିତ ଆମ୍ଭମାନଙ୍କୁ ରକ୍ଷା କରିଥାନ୍ତି । ୨୬ ।

ଆମ୍ଭେମାନେ ସମସ୍ତେ ଯେଉଁ ପରମାତ୍ମରୂପୀ ଭଗବାନଙ୍କର ଶରଣାପନ୍ନ ସେ ମାୟା ବଶରେ ବିଶ୍ୱମୂର୍ତ୍ତି ହେଲେ ମଧ୍ୟ ସ୍ୱରୂପତଃ ବିଶ୍ୱଠାରୁ ଭିନ୍ନ, ଯେ ପ୍ରକୃତି, ଯେ ପୁରୁଷ, ଯେ ଶରଣାଗତ ପାଳକ, ତାହାଙ୍କର ଶରଣାଗତ ହେଲେ ମଧ୍ୟ ସେ ଆମ୍ଭମାନଙ୍କର ଅବଶ୍ୟ ମଙ୍ଗଳ ବିଧାନ କରିବେ । ୨୭ ।

---

ପୂର୍ବେ ସ୍ୱୟମ୍ଭୂ ପଦ୍ମ ଜଳେ
ବାତେ ଉଚ୍ଛଳନ୍ତି ଉର୍ମିମାଳେ
ତେଣେ ଶବଦ ମହାଘୋରେ
ରଖିଲା ଯେ ନାଭି କମଳେ
ସେ ଏକ, ସଙ୍ଗେ ନାହିଁ କେହି
ସେ ଭୟୁ ରଖିଲାକ ଯେହି
ଦୁରନ୍ତ ପାପ ଯେ ଦାରୁଣ
ତହୁଁ ରଖନ୍ତୁ ନାରାୟଣ ।୨୪।
ଯେ ଏକ ଈଶ୍ୱର ଅଟଇ
ମାୟାରେ ଆମ୍ଭଙ୍କୁ ସର୍ଜ୍ଜଇ
ଯାର ପ୍ରସାଦୁ ଆମ୍ଭେମାନେ
କରୁଛୁଁ ଜଗତ ପାଳନେ

ଯାହାର ମହିମା ପ୍ରସିଦ୍ଧି
ଆମ୍ଭେ ନ ଜାଣୁ ମନ୍ଦବୁଦ୍ଧି
ଆମ୍ଭେ ଈଶ୍ୱର ବୋଲି ମାନି
ମୋହରେ ଯେସନେ ଅଜ୍ଞାନୀ ।୨୫
ଶତ୍ରୁର ଠାରେ ଆମ୍ଭେମାନେ
ଦୁଃଖ ପାଇଲେ ଅନୁକ୍ଷଣେ
ଋଷି ମନୁଷ୍ୟ ପଶୁ ଆଦି
ସଂସାରେ ଯେତେକ ପ୍ରସିଦ୍ଧି
ଯେ ପ୍ରଭୁ ଧରି ଅବତାର
ଖଣ୍ଡନ୍ତି ଦୁଃଖକୁ ଆମ୍ଭର

ଆମ୍ଭେ ତ ସର୍ବେ ଅରକ୍ଷିତ
ରଖନ୍ତୁ ସେ ପ୍ରଭୁ ଅଚ୍ୟୁତ
ସେ ଯୁଗେ ଯୁଗେ ରକ୍ଷାକରୁ
ଯାର ମହିମା ମହାମେରୁ । ୨୬ ।
ପରମ ପ୍ରଧାନ ପୁରୁଷ
ଅଖିଳ ସଂସାରର ଈଶ
ଅଖିଳ ଜନଙ୍କ ଶରଣ
ଏମନ୍ତ ଯେଉଁ ନାରାୟଣ
ଆମ୍ଭେ ତାହାଙ୍କର ଶରଣ
ଆମ୍ଭଙ୍କୁ କରନ୍ତୁ କଲ୍ୟାଣ । ୨୭ ।

ଶ୍ରୀଶୁକ ଉବାଚ ।
ଇତି ତେଷାଂ ମହାରାଜ ସୁରାଣାମୁପତିଷ୍ଠତାମ୍ ।
ପ୍ରତୀଚ୍ୟାଂ ଦିଶ୍ୟଭୂଦାବିଃ ଶଙ୍ଖଚକ୍ରଗଦାଧରଃ । ୨୮ ।
ଆତ୍ମତୁଲ୍ୟୈଃ ଷୋଡ଼ଶଭିର୍ବିନା ଶ୍ରୀବତ୍ସକୌସ୍ତୁଭୌ ।
ପର୍ଯ୍ୟୁପାସିତମୁନ୍ନିଦ୍ରଶରଦମ୍ବୁରୁହେକ୍ଷଣମ୍ । ୨୯ ।
ଦୃଷ୍ଟ୍ୱା ତମବନୌ ସର୍ବେ ଈକ୍ଷଣାହ୍ଲାଦ ବିକ୍ଲବାଃ ।
ଦଣ୍ଡବତ୍ ପତିତା ରାଜନ୍ ଶନୈରୁତ୍ଥାୟ ତୁଷ୍ଟୁବୁଃ । ୩୦ ।
ଶ୍ରୀଦେବା ଊଚୁଃ ।
ନମସ୍ତେ ଯଜ୍ଞବୀର୍ଯ୍ୟାୟ ବୟସେ ଉତ ତେ ନମଃ ।
ନମସ୍ତେ ହ୍ୟସ୍ତଚକ୍ରାୟ ନମଃ ସୁପୁରୁହୂତୟେ । ୩୧ ।

---

ଶ୍ରୀଶୁକଦେବ କହିଲେ :—ହେ ମହାରାଜ ! ଦେବତାମାନେ ଏହିପରି ସ୍ତବକରନ୍ତେ ପଶ୍ଚିମ ଦିଗରେ ଶଙ୍ଖ, ଚକ୍ର ଗଦାଧାରୀ ଭଗବାନ୍ ଶ୍ରୀହରି ଆବିର୍ଭୂତ ହେଲେ । ୨୮ ।

ଭଗବାନଙ୍କର ଚତୁର୍ଦ୍ଦିଗରେ ଷୋଳଜଣ ପ୍ରହରୀ ଦଣ୍ଡାୟମାନ ହୋଇ ତାହାଙ୍କୁ ସ୍ତବ କରୁଥିଲେ ଏହି ଅନୁଚରବର୍ଗ ଭଗବାନଙ୍କର ତୁଲ୍ୟ ମୂର୍ତ୍ତି ସମ୍ପନ୍ନ, କେବଳ ଭଗବାନଙ୍କଠାରେ ଶ୍ରୀବତ୍ସ ଚିହ୍ନ ଓ କୌସ୍ତୁଭ ମଣି ବିଦ୍ୟମାନ ଥିଲା । ଭଗବାନଙ୍କର ନୟନ ଦ୍ୱୟ ଶରତ୍‌କାଳୀନ ପଦ୍ମ ତୁଲ୍ୟ, ସେ ଭୂତଳରେ ଅବତୀର୍ଣ୍ଣ ହୋଇଅଛନ୍ତି ଦେଖି ଆନନ୍ଦରେ ଦେବତାମାନେ ତାହାଙ୍କୁ ଭୂମିଷ୍ଠ ପ୍ରଣାମ କରିଥିଲେ ଏବଂ ଧୀରେ ଧୀରେ ଉଠି ସ୍ତବ କରିଥିଲେ । ୨୯,୩୦ ।

ଶ୍ରୀଦେବତାମାନେ କହିଲେ :—

ହେ ଭଗବନ୍ ! ଯାହାଙ୍କର ଯଜ୍ଞାଦିରେ ଫଳ ଜନ୍ମାଇବାର ଶକ୍ତି ଅଛି ତାହା ତୁମ୍ଭର ସ୍ୱରୂପ ଏବଂ ସେହି ସ୍ୱର୍ଗାଦି ଫଳର ସୀମା ନିର୍ଦ୍ଦେଶକାରୀ କାଳ ପଦାର୍ଥ ମଧ୍ୟ ତୁମ୍ଭର ସ୍ୱରୂପ । ତୁମ୍ଭେ ଅସୁର ମାନଙ୍କ ପ୍ରତି ଚକ୍ର ନିକ୍ଷେପ କରିଥାଅ ତେଣୁ ତୁମ୍ଭର ବହୁ ଉତ୍ତମ ନାମ ଅଛି । ଆମ୍ଭେମାନେ ତୁମ୍ଭଙ୍କୁ ନମସ୍କାର କରୁଅଛୁ । ୩୧ ।

---

ଶ୍ରୀଶୁକ ଉବାଚ—
ଦେବଙ୍କ ସ୍ତୁତି ଏ ବଚନ
ଶୁଣି ସନ୍ତୋଷ ଭଗବାନ
ପୂର୍ବ ଦିଗରେ ହେ ରାଜନ
ହୋଇଲେ ଆସି ସେ ପ୍ରସନ୍ନ
ଶଙ୍ଖ ଚକ୍ର ଗଦା କମଳ
ଧରିଣ ପ୍ରଭୁ ଆଦିମୂଳ । ୨୮ ।
ଆତ୍ମାର ତୁଲ୍ୟେ ଷୋଳ ଜଣ
ସେବୁ ଅଛନ୍ତି ଅନୁକ୍ଷଣ

ଶ୍ରୀବତ୍ସ କଉସ୍ତୁଭ ବିନେ
ପୂର୍ଣ୍ଣ ହୋଇଣ ସର୍ବ ଗୁଣେ
ଶରଦ କମଳ ଲୋଚନ
ଦେବେ ଦେଖିଣ ହୃଷ୍ଟମନ । ୨୯
ଇନ୍ଦ୍ରାଦି ଯେତେ ଦିଗପାଳେ
ପ୍ରଭୁଙ୍କୁ ନମିଲେ ସକଳେ
ଦଣ୍ଡବତ ପ୍ରାୟେ ରାଜନ
ସ୍ତୁତି କରନ୍ତି ଏ ବଚନ । ୩୦

ଦେବାଊଚୁଃ—
ତୁମ୍ଭେ ବୀର୍ଯ୍ୟ ସର୍ବ ଯଜ୍ଞର
ତୁମ୍ଭଙ୍କୁ କରୁ ନମସ୍କାର
ସକଳ ବୟୋଧିକ ତୁମ୍ଭେ
ତୁମ୍ଭ ଚରଣେ ନମୁଁ ଆମ୍ଭେ
ଅଖିଳ ଈଶ୍ୱର ଯେ ତୁହି
ନମସ୍ତେ ପ୍ରଭୁ ଭବତ୍ରାହି
ତୁ ପୁରୁହୂତ ଶ୍ରେଷ୍ଠ ପର
ନମସ୍ତେ ପ୍ରଭୁ ଚକ୍ରଧର । ୩୧ ।

ଯାତ୍ରେ ଗତୀନାଂ ତ୍ରିଗୁଣାମୀଶିତୁଃ ପରମଂ ପଦମ୍ ।
ନାର୍ବାଚୀନୋ ବିସର୍ଗସ୍ୟ ଧାତର୍ବେଦିତୁମର୍ହତି । ୩୨ ।

ଓଁ ନମସ୍ତେଽସ୍ତୁ ଭଗବନ୍ନାରାୟଣ ବାସୁଦେବାଦିପୁରୁଷ ମହାପୁରୁଷ ମହାନୁଭାବ ପରମମଙ୍ଗଳ ପରମକଲ୍ୟାଣ ପରମକାରୁଣିକ କେବଳଜଗଦାଧାର ଲୋକୈକନାଥ ସର୍ବେଶ୍ୱର ଲକ୍ଷ୍ମୀନାଥ ପରମହଂସପରିବ୍ରାଜକୈଃ ପରମେଣାତ୍ମଯୋଗସମାଧିନା ପରିଭାବିତପରିସ୍ଫୁଟପାରମହଂସ୍ୟଧର୍ମେଣୋଦ୍ଘାଟିତତମଃକବାଟଦ୍ୱାରେ ଚିତ୍ତେଽପାବୃତ ଆତ୍ମଲୋକେ ସ୍ୱୟମୁପଲବ୍ଧନିଜସୁଖାନୁଭବୋ ଭବାନ୍ । ୩୩ ।

ଦୁରବବୋଧ ଇବ ତବାୟଂ ବିହାରଯୋଗୋ ଯଦଶରଣୋଽଶରୀର ଇଦମନବେକ୍ଷିତାସ୍ମତ୍ସମବାୟ ଆତ୍ମନୈବାବିକ୍ରିୟମାଣେନ ସଗୁଣମଗୁଣଃ ସୃଜସି ପାସି ହରସି ।୩୪

---

ହେ ବିଧାତା ! ତୁମ୍ଭେ ସାତ୍ତ୍ୱିକ, ରାଜସିକ, ତାମସିକ ଏହି ତ୍ରିବିଧ ଗୁଣର ନିୟାମକ । ତୁମ୍ଭର ଗୁଣାଗତ ପରମ ସ୍ୱରୂପ ଆଧୁନିକ ସୃଷ୍ଟି ଅର୍ବାଚୀନ ଆମ୍ଭମାନଙ୍କ ପକ୍ଷରେ ବୁଝିବା ଅସମ୍ଭବ । ୩୨ ।

ହେ ଭଗବନ୍ ! ହେ ନାରାୟଣ ! ହେ ବାସୁଦେବ ! ହେ ଆଦି ପୁରୁଷ ! ହେ ମହାପୁରୁଷ ! ହେ ମହା ପ୍ରଭାବଶାଳୀ ! ହେ ପରମମଙ୍ଗଳମୟ ; ହେ ଅପାର୍ଥିବ ସୁଖ ଦାୟକ ! ହେ ଅସୀମ ଦୟାସାଗର ! ହେ ଉପାଧି ଶୂନ୍ୟ ! ହେ ଆଶା ସ୍ୱରୂପ ! ହେ ତ୍ରିଭୁବନାଧିପତି ! ହେ ସର୍ବଜନ ପାଳକ ! ହେ ଲକ୍ଷ୍ମୀନାଥ ! ଆତ୍ମଜ୍ଞାନୀ ସନ୍ନ୍ୟାସୀମାନେ ଚିତ୍ତର ଅତ୍ୟନ୍ତ ଏକାଗ୍ରତା ସହକାରେ ସମ୍ୟକ୍ ପ୍ରକାରେ ଭଗବାନଙ୍କର ଆରାଧନା ବ୍ରତରେ ବଶ ହେଲେ ସେମାନଙ୍କର ହୃଦୟର ମୋହ କବାଟ ଫିଟିଯାଏ । ସେ ଉନ୍ମୁକ୍ତ ଅନ୍ତରରେ ଆତ୍ମସୁଖ ଅନୁଭୂତ କରିଥାନ୍ତି, ତୁମ୍ଭେ ସେହି ଅନୁଭୂତ ସ୍ୱରୂପ ଏବଂ ତୁମ୍ଭେ ଓଁକାର ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରାତ୍ମକ, ତୁମ୍ଭଙ୍କୁ ଆମ୍ଭମାନଙ୍କର ନମସ୍କାର । ୩୩ ।

ତୁମ୍ଭର ଆଶ୍ରୟ ନାହିଁ, ଦେହ ନାହିଁ । ତୁମ୍ଭେ ନିର୍ଗୁଣ ଏବଂ ଆମ୍ଭମାନଙ୍କର କୌଣସି ପ୍ରକାର ସାହାଯ୍ୟ ତୁମ୍ଭେ ଅପେକ୍ଷାକର ନାହିଁ, ଏ ଅବସ୍ଥାରେ ତୁମେ ଏହି ଗୁଣମୟ ବିଶ୍ୱ ସୃଷ୍ଟି କରିଅଛ, ରକ୍ଷା କରୁଅଛ ଏବଂ ଧ୍ୱଂସ କରୁଅଛ, ତୁମ୍ଭର ଲୀଳା ଆମ୍ଭମାନଙ୍କ ନିକଟରେ ଅତ୍ୟନ୍ତ ଦୁର୍ବୋଧ୍ୟ । ୩୪ ।

---

ନିୟନ୍ତା ତୁହି ତ୍ରିଗୁଣର
ତୋହି ଗତି କ୍ରୀଡ଼ା ବିହାର
ଏହା ବ୍ୟାଖ୍ୟା କରିବା ପାଇଁ
ବିଧାତା ସମର୍ଥ ନୁହଇ । ୩୨ ।
ହେ ଭଗବାନ ବାସୁଦେବ
ନାରାୟଣ ମହାନୁଭବ
ଆଦି ପୁରୁଷ ସର୍ବେଶ୍ୱର
କେବଳ ଜଗତ ଆଧାର
ପରମ ହଂସ ଲକ୍ଷ୍ମୀନାଥ
ଜଗଜ୍ଜୀବନ ଜଗନ୍ନାଥ

ହେ ନାଥ ପରମ ମଙ୍ଗଳ
ପରମ କଲ୍ୟାଣର ମୂଳ
ତୁ ସର୍ବ ପରମ କାରଣ
ଅଖିଳ ଭୂତଙ୍କ ଜୀବନ
ପରମ ଯୋଗ ସମାଧିରେ
ଭଜନ ବିବିଧ ପ୍ରକାରେ
ପରମ ହଂସ ମୁନିଗଣେ
ସେବନ୍ତି ଯାହାର ଚରଣେ
ପରମ ହଂସ ଧର୍ମ କରି
ଅଜ୍ଞାନ ଦୂରେ ପରିହରି

ଏମନ୍ତ ଲୋକଙ୍କ ଆତ୍ମାରେ
ପ୍ରଭବ ଯାହାର ବିହରେ
ଏମନ୍ତ ପ୍ରଭୁ ତୁ ଈଶ୍ୱର
ନମସ୍ତେ ବ୍ରହ୍ମାଣ୍ଡ ଠାକୁର ।୩୩।
ତୋହର ମହିମା ବିହାର
ବ୍ରହ୍ମାରେ ନୁହଇ ଗୋଚର
ଏ ମାୟା ଅଖିଳ ସଂସାର
ହେ ପ୍ରଭୁ ଭିଆଣ ତୋହର
ତ୍ରିଗୁଣ ଘେନି ପ୍ରଭୁ ତୁହି
ସୃଜୁ ପାଳୁ ସଂହାରୁ ମହି ।୩୪।

**ଅଥ ତତ୍ର ଭବାନ୍ କିଂ ଦେବଦତ୍ତବଦିହ ଗୁଣବିସର୍ଗପତିତଃ ପାରତନ୍ତ୍ର୍ୟେଣ ସ୍ୱକୃତକୁଶଲାକୁଶଲଫଲମୁପାଦଦାତି । ଆହୋସ୍ୱିଦାତ୍ମାରାମ ଉପଶମଶୀଲଃ ସମଞ୍ଜସ-ଦର୍ଶନ ଉଦାସ୍ତ ଇତି ହ ବାବ ନ ବିଦାମଃ । ୩୫ ।**

**ନହି ବିରୋଧ ଉଭୟଂ ଭଗବତ୍ୟପରିମିତଗୁଣଗଣ ଈଶ୍ୱରେଽନବଗାହ୍ୟମାହାତ୍ମ୍ୟେଽର୍ବାଚୀନବିକଳ୍ପବିତର୍କବିଚାରପ୍ରମାଣାଭାସକୁତର୍କଶାସ୍ତ୍ରକଲିଲାନ୍ତଃକରଣାଶୟଦୁରବଗ୍ରହବାଦିନାଂ ବିବାଦାନବସର ଉପରତସମସ୍ତମାୟାମୟେ କେବଳଏବାତ୍ମମାୟାମନ୍ତର୍ଦ୍ଧାୟ କୋ ନ୍ୱର୍ଥୋ ଦୁର୍ଘଟଇବ ଭବତି ସ୍ୱରୂପ ଦ୍ୱୟାଭାବାତ୍ । ୩୬ ।**

---

ଦେବଦତ୍ତ ପ୍ରଭୃତି ସାଧାରଣ ବ୍ୟକ୍ତି ତୁଲ୍ୟ ତୁମ୍ଭେ କଣ ଏହି ସଂସାରରେ ସତ୍ତ୍ୱାଦି ତ୍ରିଗୁଣ ଜନିତ ଜୀବ ଦେହ ପରିଗ୍ରହ କରି କର୍ମାନୁଯାୟୀ ଶୁଭାଶୁଭ ଫଳ ଭୋଗ କରିଥାଅ ? ଅଥବା ଆତ୍ମତୃପ୍ତ ରାଗ ଦ୍ୱେଷ ଶୂନ୍ୟ ଅବସ୍ଥାରେ ରହି ଅବିଲୁପ୍ତ ଚୈତନ୍ୟ ଶକ୍ତି ବଳରେ ସମୁଦାୟ ବିଷୟ ପ୍ରତି ଉଦାସୀନ ଭାବରେ ଅବସ୍ଥାନ କରି ? ଏହା ଆମ୍ଭେମାନେ ବୁଝିବାକୁ ଅକ୍ଷମ । ୩୫ ।

ସାଧାରଣ ଲୋକପରି ଶୁଭାଶୁଭ କର୍ମଫଳ ଭୋଗ ଏବଂ ଉଦାସୀନ ଭାବରେ ଅବସ୍ଥିତ ଏହି ଦୁଇଟି ବିରୁଦ୍ଧଧର୍ମ ବୋଲି ପୂର୍ବେ ଉକ୍ତ ହୋଇଅଛି । ବସ୍ତୁତଃ ଏହି ଦୁଇଟି ଧର୍ମ ବିରୁଦ୍ଧ ନୁହେଁ କାରଣ ତୁମ୍ଭେ ଭଗବାନ ସ୍ୱାଧୀନ, ତୁମ୍ଭଠାରେ ଅପରିମିତ ଗୁଣରାଶି ବିଦ୍ୟମାନ, ତୁମ୍ଭର ମହାତ୍ମ୍ୟ ଅଚିନ୍ତ୍ୟନୀୟ । ଯେଉଁ ଶାସ୍ତ୍ର ନାନାପ୍ରକାର ସନ୍ଦେହ ଓ କଷ୍ଟମୟ ଅକଷ୍ଟମୟ ମଧ୍ୟରେ ବିରୁଦ୍ଧବାଦୀ, ଦୁଷ୍ଟ ପ୍ରମାଣ ଓ ତହିଁର ଅନୁକୂଳ କୁତର୍କ ପ୍ରଭୃତି ଦ୍ୱାରା ପୂର୍ଣ୍ଣ ସେହି ଶାସ୍ତ୍ରଦ୍ୱାରା ବ୍ୟାକୁଳିତ ହୃଦୟରେ ଯେଉଁ ଅସତ୍ ଆଗ୍ରହ ଜନ୍ମେ, ତହିଁର ଉଦ୍ଦୀପନାରେ ଯେଉଁମାନେ ନାନାପ୍ରକାର ବିବାଦର ଅବତାରଣା କରିଥାନ୍ତି, ତୁମ୍ଭେ ସେମାନଙ୍କର ବିବାଦର ଅଗୋଚର, ତୁମ୍ଭେ ମାୟାତୀତ । ମାୟାଧୀନ କୌଣସ କାର୍ଯ୍ୟ ତୁମ୍ଭଠାରେ ଅବସ୍ଥାନ କରି ନ ପାରେ । ଏପରି ହେଲେ ମଧ୍ୟ ମାୟା ପ୍ରଭାବରେ କୌଣସି ବିଷୟ ତୁମ୍ଭଠାରେ ସମ୍ଭବ ନୁହେଁ । ତୁମ୍ଭର ଯଥାର୍ଥ ସ୍ୱଭାବ ଏକ । ସୁତରାଂ ମାୟା ଭିନ୍ନ ଅନ୍ୟ ପ୍ରକାରେ ସେହି ଉଭୟ ଧର୍ମ ଏକାଧାରରେ ରହିବା ସମ୍ଭବ ନ ହେଲେ ମଧ୍ୟ ମାୟା ବଶରେ ସମସ୍ତ ସମ୍ଭବ ହୋଇପାରେ । ୩୬ ।

---

ଭୋ ଦେବ ଏ ମାୟା ସଂସାରେ
ତ୍ରିଗୁଣେ ଜଡ ଯେଉଁ ନରେ
ପରତନ୍ତ୍ରରେ ବଶ ହୋଇ
ଶୁଭାଶୁଭ କର୍ମ କରଇ
ତାହାର ଶୁଭାଶୁଭ ଫଳ
ତୁମ୍ଭର ତହିଁ ଆଦିମୂଳ
ଭୋ ସ୍ୱାମି ! ତୁମ୍ଭେ ଆତ୍ମାରାମ
ସକଳ କାର୍ଯ୍ୟେ ଉପଶମ
ତୁ ସର୍ବ ବସ୍ତୁରୁ ବାହାର
ଏମନ୍ତ ମଣୁ ଚକ୍ରଧର । ୩୫ ।
ତୋର ବିରୋଧ ନାହିଁ ପୁଣ
ଅପରିଚ୍ଛିନ୍ନ ତୋର ଗୁଣ
ସଂଖ୍ୟା ନୁହଇ ତୋ ମହିମା
ତୋତେ ବା କେ କରିବ ସୀମା
ବିତର୍କ ବିକଳ୍ପ ବିଚାର
ପ୍ରମାଣ ନ କରେ ଯାହାର
ନାନା ବିଚାର ଶାସ୍ତ୍ର ଆଦି
ସଂସାରେ ଯେତେକ ପ୍ରସିଦ୍ଧି
ଏହା ବିଚାର ସାଧୁଜନେ
ତୋତେ ଚିନ୍ତନ୍ତି ଦିବ୍ୟଜ୍ଞାନେ
କ୍ଷଣକେ ମତି ତାହାଙ୍କର
ଭ୍ରମ କରାଉ ଚକ୍ରଧର
ସକଳ ମାୟାମୟ ହୋଇ
କଟରି ପ୍ରାୟେ ତୁ ଦେଖାଉ ।୩୬।

ସମବିଷମମତୀନାଂ ମତମନୁସରସି ଯଥା ରଜ୍ଜୁଖଣ୍ଡଃ ସର୍ପାଦିଧିୟାମ୍ । ୩୭ ।

ସ ଏବ ହି ପୁନଃ ସର୍ବବସ୍ତୁନି ବସ୍ତୁସ୍ୱରୂପଃ ସର୍ବେଶ୍ୱରଃ ସକଳଜଗତ୍କାରଣକାରଣଭୂତଃ ସର୍ବପ୍ରତ୍ୟଗାତ୍ମତ୍ୱାତ୍ ସର୍ବଗୁଣାଭାସୋପଲକ୍ଷିତ ଏକ ଏବ ପର୍ଯ୍ୟବଶେଷିତଃ ।୩୮।

ଅଥ ହ ବାବ ତବ ମହିମାମୃତରସସମୁଦ୍ରବିପ୍ରୁଷା ସକୃଦବଲୀଢ଼ୟା ସ୍ୱମନସି ନିଷ୍ୟନ୍ଦମାନାନବରତସୁଖେନ ବିସ୍ମାରିତଦୃଷ୍ଟଶ୍ରୁତବିଷୟସୁଖଲେଶାଭାସାଃ ପରମଭାଗବତା ଏକାନ୍ତିନୋ ଭଗବତି ସର୍ବଭୂତପ୍ରିୟସୁହୃଦି ସର୍ବାତ୍ମନି ନିତରାଂ ନିରନ୍ତରଂ ନିର୍ବୃତମନସଃ କଥମୁ ହ ବା ଏତେ ମଧୁମଥନ ପୁନଃ ସ୍ୱାର୍ଥକୁଶଳା ହ୍ୟାତ୍ମପ୍ରିୟସୁହୃଦଃ ସାଧବସ୍ତ୍ୱଚ୍ଚରଣାମ୍ବୁଜାନୁସେବାଂ ବିସୃଜନ୍ତି ନ ଯତ୍ର ପୁନରୟଂ ସଂସାରପର୍ଯ୍ୟାବର୍ତ୍ତଃ । ୩୯ ।

---

ରଜ୍ଜୁଖଣ୍ଡକୁ ଯେଉଁ ବ୍ୟକ୍ତି ସର୍ପାଦିରୂପେ ଜ୍ଞାନ କରିପାରେ ତୁମ୍ଭପ୍ରତି ତାହାର ମଧ୍ୟ ସେହିପରି ଧାରଣା, ତୁମ୍ଭେ ତଦନୁସାରେ ତାହାର ଜ୍ଞାନଗୋଚର ହୋଇଥାଅ । ୩୭ ।

ଯେ ନାନାରୂପରେ ଅନୁଭୂତ ହୋଇଥାନ୍ତି ସେହି ବସ୍ତୁମାନଙ୍କ ମଧ୍ୟରେ ସତ୍‌ରୂପେ ବିଦ୍ୟମାନ ଏବଂ ସର୍ବ ନିୟନ୍ତା ସମଗ୍ର ବିଶ୍ୱର କାରଣ ସ୍ୱରୂପ ବ୍ରହ୍ମା ପ୍ରଭୃତିଙ୍କର ମଧ୍ୟ ଯେ କାରଣ ସ୍ୱରୂପ, ଯେ ସର୍ବ ଜୀବରେ ଅନ୍ତର୍ଯ୍ୟାମୀ ସ୍ୱରୂପ ବିଦ୍ୟମାନ ଥିବାରୁ ସର୍ବପ୍ରକାର ବିଷୟ ପ୍ରକାଶ ପାଉଅଛି ଏକମାତ୍ର ସେହି ଭଗବାନ୍ ଯଥାର୍ଥରେ ବସ୍ତୁ ବୋଲି ସିଦ୍ଧାନ୍ତ ହୋଇ ଅଛନ୍ତି । ୩୮ ।

ହେ ମଧୁସୂଦନ ! ଯେଉଁମାନେ ତୁମ୍ଭର ମହାତ୍ମ୍ୟ ସ୍ୱରୂପ ଅମୃତମୟ ରସସମୁଦ୍ରର ବିନ୍ଦୁମାତ୍ର ଥରେ ହେଲେ ଆସ୍ୱାଦନ କରି ଅଛନ୍ତି ବୋଲି ନିଜର ମନ ମଧ୍ୟରେ ସୁଖ ଲାଭ କରୁଅଛନ୍ତି ତେଣୁ ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟ ଜନିତ ତୁଚ୍ଛ ସୁଖ ଅନାୟାସରେ ଭୁଲି ପାରି ଅଛନ୍ତି, ସର୍ବ ଜୀବର ପ୍ରିୟ ବନ୍ଧୁ ସର୍ବାନ୍ତର୍ଯ୍ୟାମୀ ଭଗବାନଙ୍କ ପ୍ରତି ଐକାନ୍ତିକ ଅନୁରାଗ ବଶତଃ ସର୍ବଦା ଯେଉଁମାନଙ୍କର ମନ ଅତ୍ୟନ୍ତ ଶାନ୍ତିମୟ, ଯେଉଁମାନେ ନିପୁଣଭାବରେ ପ୍ରକୃତ ପୁରୁଷାର୍ଥ ବୁଝିପାରି ଅଛନ୍ତି ଏକମାତ୍ର ତୁମ୍ଭଙ୍କୁ ପ୍ରିୟ ସୁହୃଦ୍ ବୋଲି ଆଶ୍ରୟ କରି ଅଛନ୍ତି ସେହି ପରମଭକ୍ତ ସାଧୁ ପୁରୁଷଗଣ ତୁମ୍ଭର ଶ୍ରୀଚରଣପଦ୍ମ ସେବା ହେତୁ ଆଉ ଏ ସଂସାରକୁ ଫେରି ଆସନ୍ତି ନାହିଁ, ତାହିଁକି କଦାପି ପରିତ୍ୟାଗ କରିପାରନ୍ତି ? । ୩୯ ।

---

ଯଦ୍ୟପି ଏକ ରୂପ ତୁଅ
ନାନାରୂପକୁ ତୁମ୍ଭେ ବହ
ସମ-ବିଷମ-ବୁଦ୍ଧିଙ୍କର
ପ୍ରବେଶ ହେଉ ତୁ ମନର
ରଜ୍ଜୁରେ ସର୍ପ ବୁଦ୍ଧି ଯେହ୍ନେ
ଏକ ତୁ ଦିଶୁ ଭଲେ ଭଲେ ।୩୭।
ବିଶ୍ୱରେ ଏକ ବସ୍ତୁ ତୁହି
ସର୍ବ ଈଶ୍ୱର ତୁ ଗୋସାଇଁ
ସକଳ ଜଗତ କାରଣ
ଶୋଭା ପାଉଛ ସର୍ବଗୁଣ
ପ୍ରତ୍ୟେକେ ନାମ ରୂପ ଧରି
ଲକ୍ଷିତ ହେଉ ନରହରି

ଏକ ତୁ ପରମ ପୁରୁଷ
ସକଳ ଠାରୁ ଅବଶେଷ ।୩୮।
ହେ ନାଥ ! ମହିମା ତୁମ୍ଭର
ଅମୃତ ରସର ସାଗର
ତାହା ଆସ୍ୱାଦ କରି ମନେ
ଏକାନ୍ତ ଭକ୍ତ ଯେଉଁ ଜନେ
ବିଷୟ ସୁଖ ଲେଶ ଛାଡ଼ି
ନିତ୍ୟେ ତୋ ରସେ ଥାନ୍ତି ବୁଡ଼ି
ସର୍ବାତ୍ମା ସର୍ବଭୂତ ପ୍ରିୟ
ଭଗବାନ ସ୍ୱରୂପ ତୁଅ
ଏ ସର୍ବଗୁଣେ ପୂର୍ଣ୍ଣ ହୋଇ
କେ କ୍ଷୋଭେ ଜାଣୁ ଭବଶାୟୀ ।

ଅନବରତେ ସ୍ଥିର ମନ
ତୁମ୍ଭରେ କରି ନିବେଦନ
ହେ ମଧୁମଥନ ଈଶ୍ୱର
ଆତ୍ମାକୁଶଳ ସାଧୁଙ୍କର
କମଳଚରଣେ ତୁମ୍ଭର
ସେବୁ ଅଛନ୍ତି ନିରନ୍ତର
ଯେ ପାଦ ପଙ୍କଜର ଧ୍ୟାନ
ସଂସାରେ ଗତାଗତ ଜନ
ନୁହଇ ଯାହାର ପ୍ରସାଦେ
ଗତି ଲଭଇ ଅପ୍ରମାଦେ ।୩୯।

**ତ୍ରିଭୁବନାତ୍ମଭବନ ତ୍ରିବିକ୍ରମ ତ୍ରିନୟନ ତ୍ରିଲୋକମନୋହରାନୁଭାବ ତବୈବ ବିଭୂତୟୋ ଦୈତ୍ୟଦାନବାଦୟଃ ସ୍ତଥାପି ତେଷାମୁପକ୍ରମସମୟୋଽୟମିତି ସ୍ୱାତ୍ମମାୟୟା ସୁରନରମୃଗମିଶ୍ରିତଜଳଚରାକୃତିଭିର୍ଯଥାପରାଧଂ ଦଣ୍ଡଂ ଦଣ୍ଡଧରଃ ଦଧର୍ଥ ଏବମେନମପି ଭଗବନ୍ ଜହି ତ୍ୱାଷ୍ଟ୍ରମୁତ ଯଦି ମନ୍ୟସେ । ୪୦ ।**

**ଅସ୍ମାକଂ ତାବକାନାଂ ତତତତ ନତାନାଂ ହରେ ତବ ଚରଣନଳିନଯୁଗଳଧ୍ୟାନାନୁବଦ୍ଧହୃଦୟନିଗଡାନାଂ ସ୍ୱଲିଙ୍ଗବିବରଣେନାତ୍ମସାତ୍କୃତାନାମନୁକମ୍ପାନୁରଞ୍ଜିତବିଶଦରୁଚିରଶିଶିରସ୍ମିତାବଲୋକେନ ବିଗଳିତମଧୁରମୁଖରସାମୃତକଳୟା ଚାନ୍ତସ୍ତାପମନଘାର୍ହସି ଶମୟିତୁମ୍ । ୪୧ ।**

---

ହେ ଭଗବନ୍ ! ଏହି ତ୍ରିଭୁବନ ତୁମ୍ଭର ସ୍ୱରୂପ ଏବଂ ଅଧିଷ୍ଠାନର ସ୍ଥାନ । ତୁମ୍ଭେ ବାମନ ମୂର୍ତ୍ତିରେ ତିନିବାର ଅଦ୍ଭୁତ ଭାବରେ ପଦକ୍ଷେପ କରିଥିଲ ତୁମ୍ଭେ ସମସ୍ତ ବସ୍ତୁକୁ ସୃଷ୍ଟି, ସ୍ଥିତି, ବିନାଶରୂପେ ପ୍ରାପ୍ତ ହୋଇ ଥାଅ । ତୁମ୍ଭର ପ୍ରଭାବରେ ତ୍ରିଲୋକ ମୁଗ୍ଧ । ଦୈତ୍ୟ ଦାନବଗଣ ତୁମ୍ଭର ବିଭୂତି । ତଥାପି ହେ ଦଣ୍ଡଧର ! ତୁମ୍ଭେ ସେମାନଙ୍କର ଉଦ୍ୟମକାଳ ବିବେଚନା କରି ନିଜର ମାୟା ପ୍ରଭାବରେ ଦେବତା ରୂପେ, ମନୁଷ୍ୟରୂପେ, ପଶୁରୂପେ, ନର ଓ ପଶୁ ଉଭୟରୂପେ ଏବଂ ଜଳଚର ମୂର୍ତ୍ତିରେ ସେମାନଙ୍କ ପ୍ରତି ଯେପରି ଅପରାଧ ଅନୁରୂପ ଦଣ୍ଡ ବିଧାନ କରିଅଛ; ବର୍ତ୍ତମାନ ତୁମ୍ଭେ ଉପଯୁକ୍ତ ମନେକଲେ ଏହି ବୃତ୍ରାସୁରକୁ ବଧକର । ୪୦ ।

ହେ ପାପନାଶନ ଶ୍ରୀହରି ! ତୁମ୍ଭେ ଆମ୍ଭମାନଙ୍କର ପିତୃ ପୁରୁଷଙ୍କର ପିତା, ଆମ୍ଭେମାନେ ନତ ମସ୍ତକରେ ତୁମ୍ଭର ଶ୍ରୀପାଦପଦ୍ମରେ ଧ୍ୟାନ କରୁ କରୁ, ଆମ୍ଭମାନଙ୍କର ଚିତ୍ତ ତୁମ୍ଭର ପାଦପଦ୍ମରେ ଆବଦ୍ଧ ହୋଇଅଛି । ତୁମ୍ଭର ସ୍ୱୀୟ ମୂର୍ତ୍ତି ପ୍ରକାଶ କରି ତୁମ୍ଭେ ଆମ୍ଭମାନଙ୍କୁ ନିଜର ପରିଜନ କରି ନେଇଅଛ । ସୁତରାଂ ଆମ୍ଭେମାନେ ତୁମ୍ଭର, ସୁତରାଂ ଆମ୍ଭମାନଙ୍କୁ କୃପାବିଜଡିତ ନିର୍ମଳ ମନୋଜ୍ଞ, ସ୍ନିଗ୍ଧ ମୃଦୁହାସ୍ୟ ସହକାରେ ଦୃଷ୍ଟି ନିକ୍ଷେପକରି, ଅମୃତବିନ୍ଦୁ ତୁଲ୍ୟ ମଧୁର ପ୍ରିୟବାକ୍ୟ ଉଚ୍ଚାରଣ କରି ଆମ୍ଭମାନଙ୍କର ମନସ୍ତାପ ପ୍ରଶମିତ କର । ୪୧ ।

---

ତ୍ରୈଲୋକ୍ୟ ପ୍ରଭୁ ଭଗବାନ
ହେ ତ୍ରିବିକ୍ରମ ତ୍ରିନୟନ
ତିନି ଲୋକର ମନୋହର
ଅନୁଭବ ରୂପ ଯାହାର
ତୁମ୍ଭ ପ୍ରକୃତିରୁ ଉଦିତ
ଏମନ୍ତ ଯେତେକ ଦଇତ
ଏହାର କର୍ମ୍ମ ଭାଗ୍ୟ ବେଳ
ଶାନ୍ତିକ କରି ଆଦମୂଳ
ଆତ୍ମମାୟାରେ ସୁର ନର
ମୃଗ ସହିତେ ଜଳଚର

ଏ ଆଦି ଯେତେକ ଅପର
ଯଥା ଅପ୍ରାଧେ ଦଣ୍ଡ କର
ଏମନ୍ତ ତୁମ୍ଭେ ଯେ ଈଶ୍ୱର
ବୃତ୍ରକୁ ହେ ନାଥ ସଂହର
କହିଲୁ ପ୍ରଭୁ ଭାବଗ୍ରାହି
ଯେବା ତୁମ୍ଭର ଇଚ୍ଛା ହୋଇ ।୪୦।
ତୋର ତନୟ ଆମ୍ଭେ ହୋଇ
ହେ ନାଥ ଆମ୍ଭ ପିତା ତୁହି
ତୋହର ଚରଣ ନଳିନ
ବନ୍ଧି ହୋଇଛି ଆମ୍ଭ ମନ

ଆପଣା କରି ଆମ୍ଭମାନ
ରଖିଣ ଅଛୁ ଭଗବାନ
ଆମ୍ଭଙ୍କୁ ଅନୁକମ୍ପା କରି
ଏହା ଦେଖାଅ ନରହରି !
ବିଷଦ ହାସ ମନୋହର
ବଦନ ଈକ୍ଷଣ ତୁମ୍ଭର
ସ୍ରବୁ ଯେ ଅଛି ମଧୁ ରସ
ଅମୃତ ସମ ପୀତବାସ
ଆମ୍ଭର ତ୍ରାସ ଦୂର କର
ହେ ନାଥ ! ଶରଣ ତୋହର ।୪୧।

ଅଥ ଭଗବଂସ୍ତବାସ୍ମାଭିରଖିଳଜଗଦୁତ୍ପତ୍ତିସ୍ଥିତିଲୟନିମିତ୍ତାୟମାନଦିବ୍ୟମାୟାବି-
ନୋଦସ୍ୟ ସକଳଜୀବନିକାୟାନାମନ୍ତର୍ହୃଦୟେଷୁ ବହିରପି ଚ ବ୍ରହ୍ମପ୍ରତ୍ୟଗାତ୍ମସ୍ୱରୂପେଣ
ପ୍ରଧାନରୂପେଣ ଚ ଯଥା ଦେଶକାଳଦେହାବସ୍ଥାନବିଶେଷଂ ତଦୁପାଦାନୋପଲମ୍ଭକ-
ତୟାନୁଭବତଃ ସର୍ବପ୍ରତ୍ୟୟସାକ୍ଷିଣ ଆକାଶଶରୀରସ୍ୟ ସାକ୍ଷାତ୍ ପରବ୍ରହ୍ମଣଃ ପରମା-
ତ୍ମନଃ କିୟାନିହ ବାର୍ଥବିଶେଷୋ ବିଜ୍ଞାପନୀୟଃ ସ୍ୟାଦ୍‌ବିସ୍ଫୁଲିଙ୍ଗାଦିଭିରିବ ହିରଣ୍ୟ-
ରେତସଃ । ୪୨ ।

ଅତଏବ ସ୍ୱୟଂ ତଦୁପକଳ୍ପୟାସ୍ମାକଂ ଭଗବତଃ ପରମଗୁରୋସ୍ତବ ଚରଣଶତ-
ପଲାଶଚ୍ଛାୟାଂ ବିବିଧବୃଜିନସଂସାରପରିଶ୍ରମୋପଶମନୀମୁପସୃତାନାଂ ବୟଂ ଯତ୍କାମେ-
ନୋପସାଦିତାଃ । ୪୩ ।

ଅଥୋ ଈଶ ଜହି ତ୍ୱାଷ୍ଟ୍ରଂ ଗ୍ରସନ୍ତଂ ଭୁବନତ୍ରୟମ୍ ।
ଗ୍ରସ୍ତାନି ଯେନ ନଃ କୃଷ୍ଣ ତେଜାଂସ୍ୟସ୍ତ୍ରାୟୁଧାନି ଚ । ୪୪ ।

---

ହେ ପରମେଶ୍ୱର ! ସମଗ୍ର ବିଶ୍ୱର ସୃଷ୍ଟି ସ୍ଥିତି ପ୍ରଳୟର କାରଣ ସ୍ୱରୂପା ଯେଉଁ ଅପୂର୍ବମାୟାଶକ୍ତିକୁ ନେଇ ତୁମ୍ଭେ ଲୀଳା ଖେଳା କରୁଅଛ, ସମସ୍ତ ପ୍ରାଣିଙ୍କ ହୃଦୟ ମଧ୍ୟରେ ତୁମ୍ଭେ ବ୍ରହ୍ମରୂପେ ଏବଂ ଅନ୍ତର୍ଯ୍ୟାମୀରୂପେ ଏବଂ ବାହ୍ୟ ଜଗତରେ ପ୍ରକୃତିରୂପେ ଦେଶ, କାଳ, ପାତ୍ର ଅନୁସାରେ ସମସ୍ତର କାରଣ ଓ ପ୍ରକାଶକରୂପେ ସମସ୍ତ ଉପଲବ୍ଧି କରିଥାଅ, ସୁତରାଂ ତୁମ୍ଭେ ବୁଦ୍ଧି ପ୍ରଭୃତି ସମସ୍ତ ପ୍ରତୀତିର ସାକ୍ଷୀ, ତୁମ୍ଭେ ଆକାଶ ତୁଲ୍ୟ ନିର୍ଲିପ୍ତ ସ୍ୱଭାବ ସାକ୍ଷାତ୍ ପରମବ୍ରହ୍ମ, ଓ ପରମାତ୍ମା ସ୍ୱରୂପ ନିକର ପ୍ରାର୍ଥନୀୟ ବିଷୟ ପ୍ରକାଶ କରିବାକୁ ଅକ୍ଷମ, ସୁତରାଂ ଆମ୍ଭମାନଙ୍କର କିଣ କର୍ତ୍ତବ୍ୟ ଥାଇପାରେ ? । ୪୨ ।

ଯେହେତୁ ତୁମ୍ଭେ ସମସ୍ତ ଜାଣୁଅଛ, ଆମ୍ଭେମାନେ ଯେଉଁ କାମନାରେ ତୁମ୍ଭ ନିକଟରେ ଉପସ୍ଥିତ ତୁମ୍ଭେ ସ୍ୱୟଂ ତାହା ସମ୍ପାଦନ କର । ତୁମ୍ଭେ ପରମ ପୂଜ୍ୟ ଭଗବାନ୍, ତୁମ୍ଭ ପାଦପଦ୍ମ ଛାୟା ନାନାପ୍ରକାର ପାପ ଜନିତ ସଂସାରତାପ ନିବାରଣ କରିଥାଏ । ଆମ୍ଭେମାନେ ସେହି ଛାୟାର ଆଶ୍ରୟ ଗ୍ରହଣ କରୁଅଛୁଁ ।୪୩।

ହେ ଜଗଦୀଶ୍ୱର ! ଅତଃପର ଶୀଘ୍ର ସେହି ତ୍ରିଭୁବନ ଗ୍ରାସୋଦ୍ୟତ ତ୍ୱଷ୍ଟାନନ୍ଦନ ବୃତ୍ରାସୁରକୁ ବିନାଶ କର ! ସେ ଆମ୍ଭମାନଙ୍କର ତେଜ, ଅସ୍ତ୍ର ଶସ୍ତ୍ର ସମସ୍ତ ଗ୍ରାସ କରିଅଛି । ୪୪ ।

---

ଉତ୍ପତ୍ତି ସ୍ଥିତି ଯେ ପ୍ରଳୟ
ଏହା କାରଣ ତୁମ୍ଭେ ହୁଅ
ତୁହି ସକଳ ଜୀବଠାରେ
ଥାଉ ଯେ ଅନ୍ତର ବାହାରେ
ତୁ ସର୍ବ ମାୟାମୟ ରୂପ
ଅଶେଷ ପ୍ରଧାନ ସ୍ୱରୂପ
ତୁ ଦେଶ କାଳ ପାତ୍ର ହୋଇ
ସକଳଠାରେ ଅଛୁ ତୁହି
ସକଳ ସାକ୍ଷୀ ଚକ୍ରଧର
ଆକାଶ ଶରୀର ତୁମ୍ଭର

ପରମ ବ୍ରହ୍ମ ରୂପ ତୁହି
ଥାଉ ତୁ ଆତ୍ମା ରୂପ ହୋଇ
ଆମ୍ଭେ ଅଗ୍ନିର କଣା ପ୍ରାୟେ
କିସ କହିବୁ ଦେବରାୟେ ।୪୨।
ଆମ୍ଭ ପରମ ଗୁରୁ ତୁହି
ତୋ ପାଦ ଶତଦଳ ଦୁଇ
ବିବିଧ ପାପକର୍ମ ମୋହେ
ସଂସାରେ ଯେବା ଶ୍ରମ ହୋଏ
ଛେଦଇ ଯେ ଦଳ କମଳ
ଛାୟାରେ ଆମ୍ଭେ ତାର ମୂଳ

ଆଶ୍ରୟ କରି ଆମ୍ଭ ମନ
ଅଛୁ ଯେ ପ୍ରଭୁ ଭଗବାନ
ଆମ୍ଭର କାର୍ଯ୍ୟ ଆଦ୍ୟମୂଳ
ହେ ନାଥ ! କର ତୁ ସଫଳ ।୪୩।
ଗ୍ରାସୁଛି ବୃତ୍ର ତ୍ରିଭୁବନ
ଏହା ସଂହର ଭଗବାନ
ତେଜ ଆୟୁଧ ଯେ ଆମ୍ଭର
ନାଶୁଛି ପାପୀ ବୃତ୍ରାସୁର ।୪୪।

ହଂସାୟ ଦହ୍ରନିଲୟାୟ ନିରୀକ୍ଷକାୟ କୃଷ୍ଣାୟ ମୃଷ୍ଟଯଶସେ ନିରୁପକ୍ରମାୟ ।
ସତ୍‌ସଂଗ୍ରହାୟ ଭବପାନ୍ଥନିଜାଶ୍ରମାପ୍ତାବନ୍ତେ ପରୀଷ୍ଟଗତୟେ ହରୟେ ନମସ୍ତେ । ୪୫ ।

ଶ୍ରୀଶୁକଉବାଚ । ଅଥୈବ ମୀଡ଼ିତୋ ରାଜନ୍ ସାଦରଂ ତ୍ରିଦଶୈର୍ହରିଃ ।
ସମୁପସ୍ଥାନମାକର୍ଣ୍ଣ୍ୟ ପ୍ରାହ ତାନଭିନନ୍ଦିତଃ । ୪୬ ।

ଶ୍ରୀଭଗବାନୁବାଚ ।

ପ୍ରୀତୋଽହଂ ବଃ ସୁରଶ୍ରେଷ୍ଠା ମଦୁପସ୍ଥାନବିଦ୍ୟୟା ।
ଆତ୍ମୈଶ୍ୱର୍ଯ୍ୟସ୍ମୃତିଃ ପୁଂସାଂ ଭକ୍ତିଶ୍ଚୈବ ଯୟା ମୟି । ୪୭ ।
କିଂ ଦୁରାପଂ ମୟି ପ୍ରୀତେ ତଥାପି ବିବୁଧର୍ଷଭାଃ ।
ମୟ୍ୟେକାନ୍ତମତିର୍ନାନ୍ୟନ୍ମତ୍ତୋ ବାଞ୍ଛତି ତତ୍ତ୍ୱବିତ୍ । ୪୮ ।

---

ଯେ ସଂସାରର ସାର ଗ୍ରାହୀ ଏବଂ ଭକ୍ତଗଣଙ୍କ ହୃଦୟାକାଶରେ ବାସ କରନ୍ତି ଏବଂ ଯେ ସମସ୍ତ ବୃତ୍ତାନ୍ତ ଉପଲବ୍ଧି କରନ୍ତି, ଯାହାଙ୍କର ନିର୍ମଳକୀର୍ତ୍ତି, ଯେ ଅନାଦି ଏକମାତ୍ର ସାଧୁପୁରୁଷଗଣ ଯାହାଙ୍କର ସେବା କରି ପାରନ୍ତି, ସଂସାର ପଥର ପଥିକମାନେ ତାହାଙ୍କର ଶରଣାଗତ ହୁଅନ୍ତି, ସେମାନଙ୍କର ଅନ୍ତକାଳରେ ଯେ ଉତ୍ତମ ଗତିବିଧାନ କରିଥାନ୍ତି, ସେହି ସର୍ବଦୁଃଖହାରୀ ଭଗବାନଙ୍କୁ ଆମ୍ଭମାନଙ୍କର ନମସ୍କାର । ୪୫ ।

ଶ୍ରୀଶୁକଦେବ କହିଲେ :—

"ହେ ମହାରାଜ ପରୀକ୍ଷିତ ! ଦେବତାମାନେ ଏହିପରି ସ୍ତବ କରନ୍ତେ ଭଗବାନ୍ ଶ୍ରୀହରି ସେହି ସ୍ତୁତିବାକ୍ୟ ଶ୍ରବଣ କରି ଅତ୍ୟନ୍ତ ପରିତୁଷ୍ଟ ଚିତ୍ତରେ ସାଦରରେ ଦେବଗଣଙ୍କୁ କହିଲେ" । ୪୬ ।

ଶ୍ରୀଭଗବାନ୍ କହିଲେ :—

ହେ ଦେବଶ୍ରେଷ୍ଠ ଗଣ ! ମୋର ଏହି ସ୍ତୁତି ବାକ୍ୟ ଦ୍ୱାରା ତୁମ୍ଭମାନଙ୍କର ଜ୍ଞାନର ଯେଉଁ ପରିଚୟ ପାଇଲି, ଏଥିରେ ମୁଁ ତୁମ୍ଭମାନଙ୍କ ପ୍ରତି ଅତ୍ୟନ୍ତ ପ୍ରୀତ ହେଲି, ଏହିପରି ଜ୍ଞାନ ବଳରେ ଲୋକେ ମୋର ଐଶ୍ୱର୍ଯ୍ୟ ସ୍ମରଣ କରିବାକୁ ସମର୍ଥ ହୁଅନ୍ତି ଏବଂ ମୋ ପ୍ରତି ଭକ୍ତିମାନ୍ ହୁଅନ୍ତି । ୪୭ ।

ହେ ସୁରଶ୍ରେଷ୍ଠଗଣ ! ମୁଁ ପ୍ରୀତହେଲେ ଲୋକର ଦୁଷ୍ପ୍ରାପ୍ୟ କିଛି ରହେ ନାହିଁ । ତଥାପି ଯେଉଁମାନେ ଏକାଗ୍ରଚିତ୍ତରେ ମୋର ତତ୍ତ୍ୱଜ୍ଞାନ ଲାଭ କରି ଅଛନ୍ତି, ସେମାନେ ମୋ ନିକଟରେ ଭକ୍ତିଭିନ୍ନ ଅନ୍ୟ କିଛି କାମନା କରନ୍ତି ନାହିଁ । ୪୮ ।

---

ନମସ୍ତେ ପ୍ରଭୁ ଶୁଦ୍ଧହଂସ
ବିହାର ହୃଦୟ ଆକାଶ
ନମସ୍ତେ ପ୍ରଭୁ କୃଷ୍ଣ ତୁହି
ବ୍ରହ୍ମାଣ୍ଡେ ଯଶ ଯାର ଶୋହି
ଭବସାଗର ପଥଶ୍ରମ
ତୁ ନାଥ ନାଶୁ ଭଗବାନ
ପରମ ଗତି ଶ୍ରେଷ୍ଠତର
ନମସ୍ତେ ଜଗତ ଈଶ୍ୱର । ୪୫ ।

ଶ୍ରୀ ଶୁକଉବାଚ—

ଏଅନନ୍ତରେ ହେ ରାଜନ
ସ୍ତୁତି କରନ୍ତେ ଦେବଗଣ
ସାଦରେ ସ୍ତୁତି ଶୁଣି ହରି
ସନ୍ତୋଷ ହେଲେ ଦଇତ୍ୟାରି
ଆନନ୍ଦ ହୋଇ ଭଗବାନ
ଦେବଙ୍କୁ ବୋଲନ୍ତି ବଚନ । ୪୬ ।

ଶ୍ରୀଭଗବାନୁବାଚ—

ତୁମ୍ଭର ସୁବିଦ୍ୟା ସ୍ତୁତିରେ
ସନ୍ତୋଷ ହେଲୁ ବେଦବରେ
ଯେଉଁ ସ୍ତୁତିର ପରସାଦେ
ସ୍ମୃତି ଭକତି ମୋର ପାଦେ । ୪୭
ତତ୍ତ୍ୱଜ୍ଞ ଏକାନ୍ତ ଯେ ମତି
ମୋ ଠାରୁ ଅନ୍ୟ ନ ବାଞ୍ଛନ୍ତି
ମୁହିଁ ପ୍ରସନ୍ନ ହୋଏ ଯାରେ
କି ଅବା ଦୁର୍ଲଭ ତାହାରେ । ୪୮

ନ ବେଦ କୃପଣଃ ଶ୍ରେୟ ଆତ୍ମନୋ ଗୁଣବସ୍ତୁଦୃକ୍ ।
ତସ୍ୟ ତାନିଚ୍ଛତୋ ଯଚ୍ଛେଦ୍ ଯଦି ସୋଽପି ତଥାବିଧଃ । ୪୯ ।
ସ୍ୱୟଂ ନିଃଶ୍ରେୟସଂ ବିଦ୍ୱାନ୍ ନ ବକ୍ତ୍ୟଜ୍ଞାୟ କର୍ମ ହି ।
ନ ରାତି ରୋଗିଣୋଽପଥ୍ୟଂ ବାଞ୍ଛତୋଽପି ଭିଷକ୍ତମଃ । ୫୦ ।
ମଘବନ୍ ଯାତ ଭଦ୍ରଂ ବୋ ଦଧ୍ୟଞ୍ଚମୃଷିସତ୍ତମମ୍ ।
ବିଦ୍ୟାବ୍ରତତପଃସାରଂ ଗାତ୍ରଂ ଯାଚତ ମା ଚିରମ୍ । ୫୧ ।
ସ ବା ଅଧିଗତୋ ଦଧ୍ୟଙ୍ଙଶ୍ୱିଭ୍ୟାଂ ବ୍ରହ୍ମ ନିଷ୍କଳମ୍ ।
ଯଦ୍ୱା ଅଶ୍ୱଶିରୋ ନାମ ତୟୋରମରତାଂ ବ୍ୟଧାତ୍ । ୫୨ ।
ଦଧ୍ୟଙ୍ଙାଥର୍ବଣସ୍ତ୍ୱଷ୍ଟ୍ରେ ବର୍ମାଭେଦ୍ୟଂ ମଦାତ୍ମକମ୍ ।
ବିଶ୍ୱରୂପାୟ ଯତ୍ ପ୍ରାଦାତ୍ ତ୍ୱଷ୍ଟା ଯତ୍ ତ୍ୱମଧାସ୍ତତଃ । ୫୩ ।

---

ଯେଉଁବ୍ୟକ୍ତି ସମସ୍ତ ବିଷୟକୁ ପରମାର୍ଥ ବୋଲି ମନେ କରେ ସେପରି ଅଜ୍ଞବ୍ୟକ୍ତି ନିଜର ମଙ୍ଗଳ ବୁଝିବାକୁ ଅକ୍ଷମ, ସୁତରାଂ ବିଷୟ ସମୂହ ଆକାଙ୍କ୍ଷା କରିଥାଏ । କିନ୍ତୁ ଦାତା ମଧ୍ୟ ଯଦି ସେହିପରି ଅଜ୍ଞ ହୁଏ, ତେବେ ତାହାକୁ ବିଷୟ ପ୍ରଦାନ କରିଥାନ୍ତି । ୪୯ ।

ଯେଉଁବ୍ୟକ୍ତି ସ୍ୱୟଂ ପରମପୁରୁଷାର୍ଥ ବିଷୟ ଅବଗତ ଥାଏ, ସେହି ଅଜ୍ଞପାର୍ଥୀକୁ କଦାପି ପ୍ରବୃତ୍ତିମାର୍ଗର ଉପଦେଶ ଦେବା ଉଚିତ ନୁହେଁ, ଯେପରି ଉତ୍ତମ ଚିକିତ୍ସକ, ରୋଗୀ ଇଚ୍ଛାକଲେ ମଧ୍ୟ ଅପଥ୍ୟ ଭୋଜନ କରିବାକୁ ତାହାକୁ ଦିଏ ନାହିଁ, ସେହିପରି । ୫୦ ।

ହେ ଇନ୍ଦ୍ର ! ତୁମ୍ଭେମାନେ ଯାଅ, ଶୀଘ୍ର ମୁନିବର ଦଧୀଚିଙ୍କୁ ତାହାଙ୍କର ଦେହ ପ୍ରାର୍ଥନା କର । ତାହାଙ୍କର ଦେହ ଜ୍ଞାନ, ବ୍ରତ ଓ ତପସ୍ୟା ପ୍ରଭାବରେ ଅତ୍ୟନ୍ତ ଦୃଢ ହୋଇଅଛି, ତଦ୍ୱାରା ତୁମ୍ଭମାନଙ୍କର ମଙ୍ଗଳ ହେବ । ୫୧ ।

ସେହି ଦଧୀଚି ମୁନି ବିଶୁଦ୍ଧ ବ୍ରହ୍ମଜ୍ଞାନ ଲାଭ କରିଅଛନ୍ତି, ସେ ତାହା ପରେ ଅଶ୍ୱିନୀକୁମାର ଦ୍ୱୟଙ୍କୁ ଦାନ କରିଥିଲେ । ସେ ବ୍ରହ୍ମବିଦ୍ୟା ଅଶ୍ୱଶିର ନାମରେ ପ୍ରସିଦ୍ଧ, ସେହି ଅଶ୍ୱିନୀକୁମାର ଦ୍ୱୟ ବ୍ରହ୍ମବିଦ୍ୟା ଦ୍ୱାରା ଜୀବନ ମୁକ୍ତି ସମ୍ପାଦନ କରିଥିଲେ । ୫୨ ।

ଅଥର୍ବା ନାମକ ମୁନିଙ୍କର ପୁତ୍ର ଦଧୀଚି ନାରାୟଣ କବଚ ପ୍ରାପ୍ତ ହୋଇଥିଲେ, ସେ ତ୍ୱଷ୍ଟାଙ୍କୁ ଏବଂ ତ୍ୱଷ୍ଟା ବିଶ୍ୱରୂପଙ୍କୁ ତାହା ପ୍ରଦାନ କରିଥିଲେ, ତାହା ତୁମ୍ଭେ ବିଶ୍ୱରୂପଙ୍କଠାରୁ ଗ୍ରହଣ କରିଅଛ । ୫୩ ।

---

ଗୁଣରେ ବସ୍ତୁ ଯେ ଦେଖନ୍ତି
ଏମନ୍ତ କୃପଣ ଯେ’ ଛନ୍ତି
ସେ ଆତ୍ମା-ଶ୍ରେୟ ନ ଜାଣନ୍ତି
ଅଜ୍ଞର ପ୍ରାୟେ ତା ଭୁଞ୍ଜନ୍ତି
ଯେ ବିଦ୍ୟାବନ୍ତ ଏ ଜଗତେ
ସେଶ୍ରେୟଦେନ୍ତିମୋକ୍ଷପଥେ୪୯,୫୦
ଇନ୍ଦ୍ର ଶୁଣହେ ଯାଅ ବହନ
ତୁମ୍ଭର ହେଉ ଯେ କଲ୍ୟାଣ

ଅଥର୍ବଣ ଯେ ଋଷିବର
ମାଗ ତାହାଙ୍କର ଶରୀର
ବିଦ୍ୟା ତପ ବ୍ରତେ ଯାହାର
ପବିତ୍ର ହୋଇଛି ଶରୀର
ଯାଚନ୍ତା ତୁମ୍ଭେମାନେ କଲେ
ଧର୍ମଜ୍ଞ ଅଙ୍ଗ ଦେବେ ଭଲେ
ଅସ୍ଥି ତାହାଙ୍କର ଆଣିବ
ଆୟୁଧ ମାନ ଗଢାଇବ

ବିଶ୍ୱକର୍ମା ନିର୍ମିତ କରି
ବଜ୍ରକୁ ଧରି ବଜ୍ରଧାରୀ
ଯେ ବଜ୍ରେ କରି ବୃତ୍ରାସୁର
ଛେଦିବ ଶୁଣ ପୁରନ୍ଦର
ମୋହର ତେଜେ ଯୁକ୍ତ ହୋଇ
ଶତ୍ରୁ ନାଶିବ ବେଗସାଇଁ
ସେ ହତ ହେଲେ ତୁମ୍ଭେମାନେ
ସ୍ୱର୍ଗ ଲଭିବ ଦେବଗଣେ

ଯୁଷ୍ମଭ୍ୟଂ ଯାଚତୋଽଶ୍ୱିଭ୍ୟାଂ ଧର୍ମଜ୍ଞୋଽଙ୍ଗାନି ଦାସ୍ୟତି ।
ତତସ୍ତୈରାୟୁଧଶ୍ରେଷ୍ଠୋ ବିଶ୍ୱକର୍ମବିନିର୍ମିତଃ ।
ଯେନ ବୃତ୍ରଶିରୋ ହର୍ତ୍ତା ମତ୍ତେଜ ଉପବୃଂହିତଃ । ୫୪ ।
ତସ୍ମିନ୍ ବିନିହତେ ଯୂୟଂ ତେଜୋଽସ୍ତ୍ରାୟୁଧସମ୍ପଦଃ ।
ଭୂୟଃ ପ୍ରାପ୍ସ୍ୟଥ ଭଦ୍ରଂ ବୋ ନ ହିଂସନ୍ତି ଚ ମତ୍ପରାନ୍ । ୫୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଭଗବଦୁପଦେଶୋ ନାମ ନବମୋଽଧ୍ୟାୟଃ । ୯ ।

---

ସେହି ଧାର୍ମିକ ମୁନି ଦଧୀଚିଙ୍କୁ ଅଶ୍ୱିନୀକୁମାର ଦ୍ୱୟ ପ୍ରାର୍ଥନା କଲେ, ସେ ତୁମ୍ଭମାନଙ୍କୁ ତାହାଙ୍କର ଅସ୍ଥି ପ୍ରଦାନ କରିବେ, ତଦ୍ୱାରା ବିଶ୍ୱକର୍ମା ବଜ୍ରପ୍ରସ୍ତୁତ କରିବେ । ତୁମ୍ଭେ ସେହି ତେଜରେ ପ୍ରଭାବିତ ହୋଇ ତଦ୍ୱାରା ବୃତ୍ରାସୁରଙ୍କର ମସ୍ତକ ଛେଦନ କରିବ । ୫୪ ।

ବୃତ୍ରାସୁର ନିହତ ହେଲେ ତୁମ୍ଭେମାନେ ପୁଣି ଆପଣା୨ ତେଜ ଅସ୍ତ୍ର ଶସ୍ତ୍ର ଫେରି ପାଇବ, ମୋ ପ୍ରତି ଭକ୍ତି ପରାୟଣ ବ୍ୟକ୍ତିମାନଙ୍କୁ କେହି ହିଂସା କରି ନ ପାରେ, ତୁମ୍ଭମାନଙ୍କର ମଙ୍ଗଳ ହେଉ ।୫୫।

---

| | | |
|---|---|---|
| ଯେ ତେଜ ଅସ୍ତ୍ର ଯେ ଆୟୁଧ | ମୋର ଭକତ ଲୋକଙ୍କର | ବୋଲଇ ଦାସ ଜଗନ୍ନାଥ |
| ପୁଣିହିଁ ଲଭିବ ସମ୍ପଦ | ହିଂସା ନୋହିବ ପୁନର୍ବାର ।୫୧-୫୫ | ଇନ୍ଦ୍ରକୁ କୃଷ୍ଣ କୃପାଦୃଷ୍ଟି । |

ବିଶଦାର୍ଥ—

ଇନ୍ଦ୍ର ମଦମତ୍ତ ହୋଇ ଦେବଗୁରୁ ବୃହସ୍ପତିଙ୍କର ଅବମାନନା କରିଥିବାରୁ ଅସୁର ଆସୁରା ପ୍ରଭାବରେ ନିଜର ଶକ୍ତି ହରାଇଥିଲେ । ବ୍ରହ୍ମାଙ୍କର ଉପଦେଶରେ ତ୍ୱଷ୍ଟାଙ୍କ ପୁତ୍ର ବିଶ୍ୱରୂପଙ୍କୁ ଗୁରୁପଦରେ ବରଣ କରିଥିଲେ । ପୁଣି ସେହି ବିଶ୍ୱରୂପଙ୍କ ପ୍ରତି ଅନ୍ୟାୟ ଆଚରଣ କରି ତାହାଙ୍କର ଶିରଛେଦନ କରିଥିଲେ । ଇନ୍ଦ୍ରଙ୍କୁ ଶାସ୍ତି ଦେବା ନିମନ୍ତେ ପୁତ୍ରଶୋକାତୁର ତ୍ୱଷ୍ଟା ଇନ୍ଦ୍ର ଶତ୍ରୁ ସୃଷ୍ଟି ନିମନ୍ତେ ବୃତ୍ରାସୁର ନାମକ ଅସୁରକୁ ଯଜ୍ଞାନଳରୁ ଉତ୍ପାଦନ କରିଥିଲେ । ସେହି ବୃତ୍ରାସୁର ଦେବତାମାନଙ୍କର ଓ ଇନ୍ଦ୍ରଙ୍କର ତେଜ, ଅସ୍ତ୍ର, ଶସ୍ତ୍ର ସମସ୍ତ ଗ୍ରହଣ କରନ୍ତେ, ଦେବତାମାନେ ବିଷ୍ଣୁଙ୍କୁ ପ୍ରାର୍ଥନା କରିଥିଲେ । ବିଷ୍ଣୁ ସେମାନଙ୍କର ଅନୁତାପ ଓ ପ୍ରାର୍ଥନାରେ ପ୍ରୀତହୋଇ ସେମାନଙ୍କୁ ଉପଦେଶ ଦେଇଥିଲେ ଯେ ଦଧୀଚି ମୁନିଙ୍କ ଅସ୍ଥି ପ୍ରାପ୍ତ ହୋଇ ତହିଁରେ ବଜ୍ର ନିର୍ମାଣ କରି ବୃତ୍ରାସୁରକୁ ବଧ କର ।

ଏହି ଅଧ୍ୟାୟରେ ଯେଉଁ ତତ୍ତ୍ୱମାନ ବର୍ଣ୍ଣିତ ହୋଇଅଛି, ତାହା ଭଗବତ୍ ଶକ୍ତିର ଓ ସତ୍ତ୍ୱ, ରଜ, ତମଃ ଗୁଣାତୀତ ବିଷ୍ଣୁଙ୍କର ଯଥାର୍ଥ ପରିଚୟ, ମାନବ ମୋହାନ୍ଧ ହେଲେ ନିଜର ଶକ୍ତି ତେଜ ସମସ୍ତ ହରାଇଥାଏ । ବିଷ୍ଣୁ ଉପାସନା ଦ୍ୱାରା ତାହା ପୁନର୍ବାର ଲଭ କରେ, ଦେବତାମାନଙ୍କର ସେହି ଅବସ୍ଥା ଘଟିଥିଲା । ଦଧୀଚି ଜ୍ଞାନୀ, ତପସ୍ୱୀ ଓ ଭକ୍ତିମାନ, ଏହି ଗୁଣଦ୍ୱାରା ତାହାଙ୍କର ଶରୀର ଦୃଢ଼ୀଭୂତ ହୋଇଥିଲା । ଭଗବାନ୍ ଦେବତାମାନଙ୍କୁ ଯେ ଦଧୀଚିଙ୍କ ନିକଟରୁ ପ୍ରେରଣ କରିଥିଲେ ତହିଁର ଉଦ୍ଦେଶ୍ୟ ଦେବତାମାନେ ଯଥାର୍ଥରେ ଦଧୀଚିଙ୍କଠାରୁ ମୋହାନ୍ଧକାର ଦୂର କରିବା ନିମନ୍ତେ ଜ୍ଞାନ ଉପଦେଶ ଲଭ କରିବେ, ବ୍ରହ୍ମ ତେଜରେ ତେଜୀୟାନ୍ ହେବେ ଏବଂ ସେମାନେ ଯଥାର୍ଥରେ ଭକ୍ତିମାର୍ଗ ଅବଲମ୍ବନ କରି ପୂର୍ବ ଶକ୍ତି ଫେରି ପାଇବେ, ଏହାହିଁ ଏହି ଉପାଖ୍ୟାନର ବିଶେଷତ୍ୱ ।

## ଦ ଶ ମ ଅ ଧ୍ୟା ୟ ।

ଦଶମେ କେଶବାଦଷ୍ଟଦଧ୍ୟସ୍ଥିଜବଜ୍ରଧୃକ୍ ।
ଇନ୍ଦ୍ରୋଽଯୁଧ୍ୟତ ବୃତ୍ରେଣ ସାସୁରେଣ ସନିର୍ଜରଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀବାଦରାୟଣିରୁବାଚ ।

ଇନ୍ଦ୍ରମେବଂ ସମାଦିଶ୍ୟ ଭଗବାନ୍ ବିଶ୍ୱଭାବନଃ ।
ପଶ୍ୟତାମନିମେଷାଣାଂ ତତ୍ରୈବାନ୍ତର୍ଦ୍ଦଧେ ହରିଃ । ୧ ।
ତଥାଭିଯାଚତୋ ଦେବୈର୍ଋଷିରାଥର୍ବଣୋ ମହାନ୍ ।
ମୋଦମାନ ଉବାଚେଦଂ ପ୍ରହସନ୍ନିବ ଭାରତ । ୨ ।
ଅପି ବୃନ୍ଦାରକା ଯୂୟଂ ନ ଜାନୀଥ ଶରୀରିଣାମ୍ ।
ସଂସ୍ଥାୟାଂ ଯସ୍ତ୍ୱଭିଦ୍ରୋହୋ ଦୁଃସହଶ୍ଚେତନାପହଃ । ୩ ।

---

## ଇନ୍ଦ୍ର ଓ ବୃତ୍ରାସୁର ଯୁଦ୍ଧ ।

ଦଶମ ଅଧ୍ୟାୟରେ ଶ୍ରୀହରିଙ୍କ ଆଦେଶରେ ଇନ୍ଦ୍ର ଦଧୀଚ ଋଷିଙ୍କର ଅସ୍ଥିଦ୍ୱାରା ବୃତ୍ରାସୁର ସହିତ ଯୁଦ୍ଧ କରିବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ—

ଜଗତ୍‌କର୍ତ୍ତା ଭଗବାନ୍ ଶ୍ରୀହରି ଇନ୍ଦ୍ରଙ୍କୁ ଏହିପରି ଉପଦେଶ ପ୍ରଦାନ କରି ଦେବତାମାନଙ୍କ ସମକ୍ଷରେ ଅନ୍ତର୍ହିତ ହେଲେ । ୧ ।

ହେ ଭାରତ ! ତଦନନ୍ତର ବିଷ୍ଣୁଙ୍କର ଉପଦେଶାନୁସାରେ ଦେବତାମାନେ ପ୍ରାର୍ଥନା କରନ୍ତେ ଅଥର୍ବବେଦଜ୍ଞ ଦଧୀଚମୁନି ଆନନ୍ଦିତ ହୋଇ ହାସ୍ୟକରି କହିଲେ । ୨ ।

ହେ ଦେବଗଣ ! ଦେହଧାରୀ ଜୀବମାନଙ୍କର ଦେହତ୍ୟାଗରେ ଯେଉଁ ଚୈତନ୍ୟ ଲୋପକାରୀ ଅଶେଷ ଦୁଃଖ ଜନ୍ମେ, ତାହା କି ଆପଣମାନେ ଜାଣନ୍ତି ନାହିଁ । ୩ ।

---

ହରି ଆଦେଶେ ବଜ୍ରପାଣି, ଦଧୀଚି ଋଷି ଅସ୍ଥି ଘେନି । ବଜ୍ର ଗଢାଇ ବୃତ୍ରସଙ୍ଗ, ଯୁଝିବା ଦଶମ ପ୍ରସଙ୍ଗ ॥

ଶ୍ରୀବାଦରାୟଣିରୁବାଚ—

ଏରୂପେ ଇନ୍ଦ୍ରକୁ କହିଣ
ବିଶ୍ୱଭାବନ ଭଗବାନ
ଦେବତାମାନେ ଦେଖୁଥିଲେ
ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ।୧।

ଶ୍ରୀକୃଷ୍ଣ ଆଜ୍ଞା ପରମାଣେ
ମାଗିଲେ ଯାଇଁ ଦେବଗଣେ
ମହତ ଋଷି ଆଥର୍ବଣ
ଯା ତହୁଁ ଇନ୍ଦ୍ର ପରିତ୍ରାଣ ।୨।
ହରଷେ ଋଷି ଆଥର୍ବଣ
ବୋଇଲେ ଦେବଗଣେ ଶୁଣ

ଜନ୍ତୁଙ୍କ ପ୍ରାଣ ପରିତ୍ୟାଗ
ଦୁଃସହ ଦୁଃଖ ଏତ ଭୋଗ
ତୁମ୍ଭେ ସ୍ୱଭାବେ ଦେବଗଣ
ମରଣ ଦୁଃଖକୁ ନ ଜାଣ ।୩।

ଜିଜୀବିଷୂଣାଂ ଜୀବାନାମାତ୍ମା ପ୍ରେଷ୍ଠ ଇହେପ୍ସିତଃ ।
କ ଉତ୍‌ସହେତ ତଂ ଦାତୁଂ ଭିକ୍ଷମାଣାୟ ବିଷ୍ଣବେ । ୪ ।
ଶ୍ରୀଦେବା ଊଚୁଃ । କିଂ ନୁ ତଦ୍ଦୁସ୍ତ୍ୟଜଂ ବ୍ରହ୍ମନ୍ ପୁଂସାଂ ଭୂତାନୁକମ୍ପିନାମ୍ ।
ଭବଦ୍‌ବିଧାନାଂ ମହତାଂ ପୁଣ୍ୟଶ୍ଳୋକେଡ୍ୟକର୍ମଣାମ୍ । ୫ ।
ନୂନଂ ସ୍ୱାର୍ଥପରୋ ଲୋକୋ ନ ବେଦ ପରସଙ୍କଟମ୍ ।
ଯଦି ବେଦ ନ ଯାଚେତ ନେତି ନାହ ଯଦୀଶ୍ୱରଃ । ୬ ।
ଶ୍ରୀଋଷିରୁବାଚ । ଧର୍ମଂ ବଃ ଶ୍ରୋତୁକାମେନ ଯୂୟଂ ମେ ପ୍ରତ୍ୟୁଦାହୃତାଃ ।
ଏଷ ବଃ ପ୍ରିୟମାତ୍ମାନଂ ତ୍ୟଜନ୍ତଂ ସନ୍ତ୍ୟଜାମ୍ୟହମ୍ । ୭ ।

---

ଏହି ସଂସାରରେ ପ୍ରାଣୀମାନେ ଜୀବିତ ରହିବାକୁ ଇଚ୍ଛା କରନ୍ତି, ସେମାନଙ୍କର ଦେହ ଅତ୍ୟନ୍ତ ପ୍ରିୟ ଏବଂ ବାଞ୍ଛନୀୟ ବସ୍ତୁ, ସ୍ୱୟଂ ଭଗବାନ ପ୍ରାର୍ଥନା କଲେ ମଧ୍ୟ ସେହି ଦେହ ଦାନ କରିବାକୁ କିଏ ଇଚ୍ଛା କରିପାରେ ? । ୪ ।

ଦେବତାମାନେ କହିଲେ :—

ହେ ମୁନିବର ! ଯେଉଁମାନେ ସର୍ବଜୀବରେ ଦୟାପରାୟଣ, ପୁଣ୍ୟକୀର୍ତ୍ତି ଯେଉଁମାନଙ୍କର କାର୍ଯ୍ୟ କଳାପକୁ ପ୍ରଶଂସା କରିଥାଆନ୍ତି ଆପଣଙ୍କତୁଲ୍ୟ ମହାପୁରୁଷମାନଙ୍କ ପକ୍ଷରେ ଅପରିତ୍ୟାଜ୍ୟ ବସ୍ତୁ କଣ ଅଛି ? । ୫ ।

ସ୍ୱାର୍ଥପର ଲୋକ ଅନ୍ୟର ବିପଦ ବୁଝିପାରେ ନାହିଁ, ଯାଚକ ଯଦି ଦାତାର ସଂକଟ ବୁଝନ୍ତେ ତେବେ ସେ ଯାଚଞ୍ଚା କରି ପାରେ ନାହିଁ । ସମର୍ଥ ଦାତା ଯେବେ ଯାଚକର ସଂକଟ ବୁଝନ୍ତେ ତେବେ ସେ "ଦେଇ ପାରିବି ନାହିଁ" ଏହା କହି ଯାଚକକୁ ପ୍ରତ୍ୟାଖ୍ୟାନ କରି ନ ପାରେ । ୬ ।

ଦଧୀଚି ମୁନି କହିଲେ :—

ମୁଁ ଆପଣମାନଙ୍କ ନିକଟରୁ ଧର୍ମକଥା ଶୁଣିବି ବୋଲି ଏପରି ପ୍ରତ୍ୟାଖ୍ୟାନ ବାକ୍ୟ ପ୍ରକାଶ କରିଥିଲି, କିନ୍ତୁ, ଦେହ ଯେତେ ପ୍ରିୟ ହେଉ ପଛକେ, ସେ ମୋତେ ଦିନେ ତ୍ୟାଗ କରିଯିବ, ସୁତରାଂ ମୁଁ ଆପଣ ମାନଙ୍କ ପାଇଁ ଅବଲମ୍ବେ ଦେହ ଦାନ କରୁଅଛି । ୭ ।

---

ଜୀବନ ପାଇଁ ପ୍ରାଣିଙ୍କର
ମୂତ କଳନ୍ତି ଏ ସଂସାର
ଏମନ୍ତ ପ୍ରାଣୀ ଅଛି କାହିଁ
ଜୀବନ ମାଗିଲେ ଦିଅଇ
ଯେବେ ମାଗିବେ ନାରାୟଣ
ତେବେ ବା କେ ଦେବ ଜୀବନ । ୪

ଦେବାଊଚୁଃ—

ଯେ ପ୍ରାଣୀ ସର୍ବ ଭୂତଠାରେ
ଆତ୍ମାର ପ୍ରାୟେ ଦୟାକରେ
ଈଷିତମାନେ ଦେଇ ପ୍ରାଣ
କରଇ ପ୍ରାଣି ପରିତ୍ରାଣ
ତୋହର ପ୍ରାୟେ ପୁଣ୍ୟଶ୍ଳୋକ
ଯେ ଅବା ପୁଣ୍ୟବନ୍ତ ଲୋକ
ତାହାର ଏମନ୍ତ ବିଷ୍ଟର
ସେ କି ଜାଣଇ ପରାପର
ଅଜ୍ଞାନୀ ପ୍ରାଣୀ ଯେଉଁମାନେ
ପର ସଙ୍କଟ ସେ ନ ଘେନେ
ଯାଚନ୍ତା ଶ୍ରେଷ୍ଠଲୋକଙ୍କର
କେବେହେଁ ନୋହେ ହିତାଦର ।୫,୬

ଋଷିରୁବାଚ—

ହେ ଦେବରାଜ ଦେବବୃନ୍ଦେ
ଧର୍ମ କହିଲି ମୋ ସନ୍ନିଧେ
ତୁମ୍ଭରେ ମୋର ନିଜ ଦେହ
ଛାଡ଼ିବି ନ କର ସନ୍ଦେହ । ୭ ।

ଯୋଽଧ୍ରୁବେଣାତ୍ମନା ନାଥା ନ ଧର୍ମ୍ମଂ ନ ଯଶଃ ପୁମାନ୍ ।
ଈହେତ ଭୂତଦୟୟା ସ ଶୋଚ୍ୟଃ ସ୍ଥାବରୈରପି ! ୮ ।
ଏତାବାନବ୍ୟୟୋ ଧର୍ମ୍ମଃ ପୁଣ୍ୟଶ୍ଳୋକୈରୁପାସିତଃ ।
ଯୋ ଭୂତଶୋକହର୍ଷାଭ୍ୟାମାତ୍ମା ଶୋଚତି ହୃଷ୍ୟତି । ୯ ।
ଅହୋ ଦୈନ୍ୟମହୋ କଷ୍ଟଂ ପାରକ୍ୟୈଃ କ୍ଷଣଭଙ୍ଗୁରୈଃ ।
ଯନ୍ନୋପକୁର୍ଯ୍ୟାଦସ୍ୱାର୍ଥୈର୍ମର୍ତ୍ତ୍ୟଃ ସ୍ୱଜ୍ଞାତିବିଗ୍ରହୈଃ । ୧୦ ।

ଶ୍ରୀବାଦରାୟଣିରୁବାଚ ।

ଏବଂ କୃତବ୍ୟବସିତୋଃ ଦଧ୍ୟଙ୍ଙାଥର୍ବଣସ୍ତନୁମ୍ ।
ପରେ଼ଭଗବତି ବ୍ରହ୍ମଣ୍ୟାତ୍ମନଂ ସନ୍ନୟନ୍ ଜହୌ । ୧୧ ।

---

ହେ ଦେବଗଣ ! ଯେଉଁ ବ୍ୟକ୍ତି ନଶ୍ୱର ଦେହଦ୍ୱାରା ଭୂତମାନଙ୍କ ପ୍ରତି ଦୟା ପ୍ରକାଶକରି ଧର୍ମ ଓ ଯଶଃ ସଞ୍ଚୟ କରିବାକୁ ଅଭିଳାଷ ନ କରେ, ସ୍ଥାବରମାନେ ସୁଦ୍ଧା ତାହାର ଦଶା ଦେଖି ଶୋକ ପ୍ରକାଶ କରିଥାଆନ୍ତି । ୮ ।

ଯେଉଁ ବ୍ୟକ୍ତି ସ୍ୱୟଂ ପ୍ରାଣୀମାନଙ୍କ ଶୋକରେ ଶୋକ, ଆନନ୍ଦରେ ଆନନ୍ଦ ଅନୁଭବ କରିଥାଏ, ତାହାର ସେହି ସମବେଦନା ଅକ୍ଷୟ ଧର୍ମ, ତେଣୁ ପୁଣ୍ୟଶ୍ଳୋକ ବ୍ୟକ୍ତିମାନେ ସେହି ଧର୍ମର ସେବା କରିଥାଆନ୍ତି ।୯।

ଧନ ପୁତ୍ର, ଜ୍ଞାତି ଦେହ ଏ ସମସ୍ତ କିଛିହିଁ ସ୍ୱାର୍ଥ ସିଦ୍ଧିର ଉପଯୋଗୀ ନୁହେଁ । ସମସ୍ତହିଁ ନଶ୍ୱର ଏବଂ ଶୃଗାଳ କୁକୁରାଦିର ଭୋଗ୍ୟ ବସ୍ତୁ, ମାନବ ଏ ସମସ୍ତ ବସ୍ତୁଦ୍ୱାରା ପରୋପକାର ନ କରେ ତେବେ ତାହା ଦୁଃଖ ଓ ପରିତାପର ବିଷୟ । ୧୦ ।

ଶ୍ରୀଶୁକଦେବ କହିଲେ :—

ଅଥର୍ବ ପୁତ୍ର ଦଧୀଚି ଏହିପରି କୃତ ନିଶ୍ଚୟ ହୋଇ ପରମବ୍ରହ୍ମ ସ୍ୱରୂପ ଭଗବାନଙ୍କ ସହିତ ଜୀବାତ୍ମାକୁ ମିଳାଇ ଦେହ ତ୍ୟାଗ କରିଥିଲେ । ୧୧ ।

---

ଦେହକୁ ଧରି ଯେଉଁ ଜନ
ନ କରେ ଯଶ ପୁଣ୍ୟକର୍ମ
ତାହାକୁ ଆତ୍ମଘାତୀ କହି
ସ୍ଥାବରୁ ଅଧମଟି ସେହି । ୮ ।
ଯେ ପ୍ରାଣୀ ପରଦୁଃଖେ ଦୁଃଖୀ
ପରସୁଖରେ ଅତିସୁଖୀ

ଅବ୍ୟୟ ଅକ୍ଷୟ ଏ ଧର୍ମ
କହନ୍ତି ପୁଣ୍ୟ-ଶ୍ଳୋକଜନ । ୯ ।
ଏ ବଡ଼ ଆଶ୍ଚର୍ଯ୍ୟ ଲୋକରେ
କ୍ଷଣ ଭଙ୍ଗୁର ଦେହେ ନରେ
କରନ୍ତି ଆତ୍ମା ସ୍ୱାର୍ଥ ଭେଦ
ଇହ ଲୋକରେ ଅପବାଦ ।୧୦।

ଶ୍ରୀବାଦରାୟଣିରୁବାଚ—
ଏମନ୍ତ କହି ଅଥର୍ବଣ
ନିଶ୍ଚଳ କରି ଆତ୍ମାମନ
ପରମବ୍ରହ୍ମେ ଲୀନେଇଲେ
ସଂଯମେ ଶରୀର ଛାଡ଼ିଲେ ।୧୧।

ଯତ କ୍ଷାସୁମନୋବୁଦ୍ଧିସ୍ତତ୍ତ୍ୱଦୃଗ୍‌ଧ୍ୱସ୍ତବନ୍ଧନଃ ।
ଆସ୍ଥିତଃ ପରମଂ ଯୋଗଂ ନ ଦେହଂ ବୁବୁଧେ ଗତମ୍ । ୧୨ ।
ଅଥେନ୍ଦ୍ରୋ ବଜ୍ରମୁଦ୍ୟମ୍ୟ ନିର୍ମ୍ମିତଂ ବିଶ୍ୱକର୍ମ୍ମଣା ।
ମୁନେଃ ଶକ୍ତିଭିରୁତ୍‌ସିକ୍ତୋ ଭଗବତ୍ତେଜସାନ୍ୱିତଃ । ୧୩ ।
ବୃତୋ ଦେବଗଣୈଃ ସର୍ବୈର୍ଗଜେନ୍ଦ୍ରୋପର୍ଯ୍ୟଶୋଭତ ।
ସ୍ତୂୟମାନୋ ମୁନିଗଣୈସ୍ତ୍ରୈଲୋକ୍ୟଂ ହର୍ଷୟନ୍ନିବ । ୧୪ ।
ବୃତ୍ରମଭ୍ୟଦ୍ରବଚ୍ଛତ୍ରୁମସୁରାନୀକଯୂଥପୈଃ ।
ପର୍ଯ୍ୟସ୍ତମୋଜସା ରାଜନ୍ କ୍ରୁଦ୍ଧୋ ରୁଦ୍ର ଇବାନ୍ତକମ୍ । ୧୫ ।
ତତଃ ସୁରାଣାମସୁରୈଃ ରଣଃ ପରମଦାରୁଣଃ ।
ତ୍ରେତାମୁଖେ ନର୍ମ୍ମଦାୟାମଭବତ୍ପ୍ରଥମେ ଯୁଗେ । ୧୬ ।

---

ତାହାଙ୍କର ଇନ୍ଦ୍ରିୟ, ପ୍ରାଣ, ମନ ଓ ବୁଦ୍ଧି ସଂଯତ ଥିଲା, ସେ ତତ୍ତ୍ୱଦର୍ଶୀ ଥିଲେ, ତାହାଙ୍କର ଅଦୃଷ୍ଟ ରୂପବନ୍ଧନ ନଷ୍ଟ ହୋଇ ଯାଇଥିଲା, ସୁତରାଂ ସେ ପରମ ସମାଧି ପ୍ରାପ୍ତ ହୋଇଥିଲେ । ଦେହତ୍ୟାଗ କରିଅଛନ୍ତି, ଏହା ସେ ଜାଣି ପାରିଲେ ନାହିଁ । ୧୨ ।

ତଦନନ୍ତର ମୁନିଙ୍କର ଅସ୍ଥି ଦ୍ୱାରା, ବିଶ୍ୱକର୍ମା ବଜ୍ର ନିର୍ମାଣ କରିଥିଲେ । ଇନ୍ଦ୍ର ସେହି ବଜ୍ର ଧାରଣ କରି ଭଗବଦ୍ ତେଜରେ ଉଦ୍ଦୀପିତ ହୋଇ, ସଗର୍ବରେ ଐରାବତ ହସ୍ତିରେ ଆରୋହଣ କରି ଶୋଭା ପାଇଥିଲେ । ଦେବତାମାନେ ତାହାଙ୍କୁ ବେଷ୍ଟନ କରି ରହିଥିଲେ, ମୁନିମାନେ ତାହାଙ୍କୁ ପ୍ରଶଂସା କରିଥିଲେ ଇନ୍ଦ୍ରଙ୍କ ତେଜରେ ତ୍ରିଭୁବନ ହର୍ଷାନ୍ୱିତ ହେଲା । ୧୩, ୧୪ ।

ହେ ମହାରାଜ ପରୀକ୍ଷିତ ! ରୁଦ୍ରଦେବ କୁପିତ ହୋଇ ଯେପରି ଅନ୍ଧକାସୁର ପ୍ରତି ଧାବିତ ହୋଇଥିଲେ ସେହିପରି ଇନ୍ଦ୍ର ମଧ୍ୟ କୁପିତ ହୋଇ ବହୁସଂଖ୍ୟକ ଅସୁର ସେନାପତି ପରିବୃତ ବୃତ୍ରାସୁର ପ୍ରତି ଧାବିତ ହୋଇଥିଲେ । ୧୫ ।

ସତ୍ୟଯୁଗର ଶେଷଭାଗରେ ତ୍ରେତାଯୁଗର ପ୍ରାରମ୍ଭରେ ନର୍ମଦା ନଦୀତୀରରେ ବୃତ୍ର ପ୍ରଭୃତି ଅସୁରମାନଙ୍କ ସହିତ ଇନ୍ଦ୍ରାଦି ଦେବଗଣଙ୍କର ଭୀଷଣ ଯୁଦ୍ଧ ହୋଇଥିଲା । ୧୬ ।

---

ମନ ବୁଦ୍ଧି ବ୍ରହ୍ମେ ନିବେଶି
ଏହି ଯୋଗରେ କରି ଋଷି
ତେକ୍ଷଣ ଗଲେ ସେ ଶରୀର
ତାହା ଜାଣିଲେ ପୁରନ୍ଦର ।୧୨।
ଏ ଅନନ୍ତରେ ଦେବରାଜ
ବିଶ୍ୱକର୍ମା ନିର୍ମିତ ବଜ୍ର
ମୁନି ଅସ୍ଥିରେ ନିରମିତ
ବିଷ୍ଣୁ ତେଜରେ ହୋଇ ଯୁତ

ସେ ଦେବଗଣରେ ବେଷ୍ଟିତ
ଆରୋହି ହସ୍ତୀ ଐରାବତ
ମୁନିଗଣରେ ସ୍ତୁତ ହୋଇ
ତ୍ରୈଲୋକ୍ୟହରଷେକରାଇ ।୧୩,୧୪
ବୃତ୍ର ସଂଗ୍ରାମେ ଦେବରାଜ
ସୈନ୍ୟ ସହିତେ ହେଲେ ସଜ
ଅଶେଷ ବଳ ସଙ୍ଗେ ଲଇ
ଅନ୍ଧକେ ଯେହ୍ନେ ରୁଦ୍ର ଧାଇଁ ।୧୫।

ଏ ଅନନ୍ତରେ ହେ ରାଜନ
କହିବା ଶୁଣ ଏକମନ
ସୁର-ଅସୁରଙ୍କର ରଣ
ଅତ୍ୟନ୍ତ ପରମ ଦାରୁଣ
ତ୍ରେତୟା ଯୁଗର ଆଦ୍ୟରେ
ହୋଇଲା ନର୍ମଦା ତଟରେ ।୧୬।

ରୁଦ୍ରୈର୍ବସୁଭିରାଦିତ୍ୟୈରଶ୍ୱିଭ୍ୟାଂ ପିତୃବହ୍ନିଭିଃ ।
ମରୁଦ୍‌ଭିର୍ଋଭୁଭିଃ ସାଧ୍ୟୈର୍ବିଶ୍ୱେଦେବୈର୍ମରୁତ୍ପତିମ୍ । ୧୭ ।
ଦୃଷ୍ଟ୍ୱା ବଜ୍ରଧରଂ ଶକ୍ରଂ ରୋଚମାନଂ ସ୍ୱୟା ଶ୍ରିୟା ।
ନାମୃଷ୍ୟନ୍ନସୁରା ରାଜନ୍ ମୃଧେ ବୃତ୍ରପୁରଃସରାଃ । ୧୮ ।
ନମୁଚିଃ ଶମ୍ବରୋଽନର୍ବା ଦ୍ୱିମୂର୍ଦ୍ଧା ଋଷଭୋଽସୁରଃ ।
ହୟଗ୍ରୀବଃ ଶଙ୍କୁଶିରା ବିପ୍ରଚିତ୍ତିରୟୋମୁଖଃ । ୧୯ ।
ପୁଲୋମା ବୃଷପର୍ବା ଚ ପ୍ରହେତିର୍ହେତିରୁତ୍କଳଃ ।
ଦୈତେୟା ଦାନବା ଯକ୍ଷା ରକ୍ଷାଂସି ଚ ସହସ୍ରଶଃ । ୨୦ ।
ସୁମାଲିମାଲିପ୍ରମୁଖାଃ କାର୍ତ୍ତସ୍ୱରପରିଚ୍ଛଦାଃ ।
ପ୍ରତିଷିଧ୍ୟେନ୍ଦ୍ରସେନାଗ୍ରଂ ମୃତ୍ୟୋରପି ଦୁରାସଦମ୍ । ୨୧ ।
ଅଭ୍ୟର୍ଦ୍ଦୟନ୍ନସମ୍ଭ୍ରାନ୍ତାଃ ସିଂହନାଦେନ ଦୁର୍ମ୍ମଦାଃ ।
ଗଦାଭିଃ ପରିଘୈର୍ବାଣୈଃ ପ୍ରାସମୁଦ୍‌ଗରତୋମରୈଃ । ୨୨ ।

---

ସେହି ଯୁଦ୍ଧ କ୍ଷେତ୍ରରେ ରୁଦ୍ରଗଣ ବସୁଗଣ ଆଦିତ୍ୟଗଣ, ଅଶ୍ୱିନୀକୁମାର ଦ୍ୱୟ ପିତୃଗଣ, ଅଗ୍ନିଗଣ, ପବନଗଣ ଅନ୍ୟାନ୍ୟ ଦେବଗଣ, ବିଶ୍ୱଦେବଗଣ, ଇନ୍ଦ୍ରଙ୍କୁ ବେଢ଼ିଥିଲେ ଏବଂ ଦେବରାଜ ଇନ୍ଦ୍ର ବଜ୍ରଧାରଣ କରି ଅତ୍ୟନ୍ତ ଶୋଭା ପାଇଥିଲେ । ଏହା ଦେଖି ବୃତ୍ରାଦି ଅସୁରମାନେ ସହ୍ୟ କରିପାରିଲେ ନାହିଁ ।୧୭,୧୮।

ନମୁଚି, ସମ୍ବର, ଅନର୍ବା, ଦ୍ୱିମୂର୍ଦ୍ଧା, ଋଷଭ, ଅସୁର, ହୟଗ୍ରୀବ, ଶଙ୍କୁଶିରା, ବିପ୍ରଚିତ୍ତି, ଅୟୋମୁଖ, ପୁଲୋମା, ବୃଷପର୍ବା, ପ୍ରହେତି, ହେତି, ଉତ୍କଳ, ସୁମାଳି, ମାଳି ବହୁସଂଖ୍ୟକ ମଦମତ୍ତ ନିର୍ଭୀକ ଦୈତ୍ୟ, ଦାନବ, ଯକ୍ଷ, ରାକ୍ଷସ ସ୍ୱର୍ଣ୍ଣାଳଙ୍କାର ସଜ୍ଜିତ ହୋଇ ସିଂହନାଦ କରୁ କରୁ ଯମଙ୍କର ଓ ଇନ୍ଦ୍ରଙ୍କର ଦୁର୍ଦ୍ଧର୍ଷ ସୈନ୍ୟମାନଙ୍କୁ ପ୍ରତିରୋଧ କରି ଗଦା, ପରିଘ, ବାଣ, ପ୍ରାସ, ମୁଦ୍ଗର, ତୋମର ଦ୍ୱାରା ପୀଡ଼ନ କରିଥିଲେ । ୧୯--୨୨ ।

---

ରୁଦ୍ର ବସୁ ପୁଣି ଆଦିତ୍ୟ
ବହ୍ନି ପିତୃ ଅଶ୍ୱିନୀସୁତେ
ସାଧ୍ୟ ବିଶ୍ୱେଦେବା ମରୁତ
ଋଭୁ ଦେବଗଣେ ବେଷ୍ଟିତ
ଦେବରାଜମାନ ସମ୍ପଦରେ
ବଜ୍ରକୁ ଧରି ନିଜକରେ
ଏ ରୂପେ ଇନ୍ଦ୍ରଙ୍କୁ ଦେଖିଲେ
ଅସୁରେ ତକ୍ଷାଧରେ ଧାଇଁଲେ
। ୧୭,୧୮

ନମୁଚି ଦ୍ୱିମୂର୍ଦ୍ଧା ଶମ୍ବର
ଅନର୍ବା ଋଷଭ ଅସୁର
ହୟଗ୍ରୀବ ଯେ ବିପ୍ରଚିତ୍ତି
ଅୟୋମୁଖ ହେତି ପ୍ରହେତି
ଶଙ୍କୁଶିରା ଯେ ବୃଷପର୍ବ
ଉତ୍କଳ ପୁଲୋମା ଦାନବ
ଦାନବ ଦଇତ ଯେ ଦକ୍ଷ
ଅସଂଖ୍ୟ ଆଉରି ଯେ ରକ୍ଷ
ସୁମାଳି ମାଳି ଆଦି ଯେତେ
ସୁବର୍ଣ୍ଣେ ହୋଇଣ ମଣ୍ଡିତେ

ଇନ୍ଦ୍ରର ସେନାର ଅଗ୍ରତେ
ବଳେ ଓଗାଳିଲେ ତୁରିତେ
ଯେ ଇନ୍ଦ୍ର ସେନାର ସମୂହ
କାଳକୁ ଅତି ଦୁରାଗ୍ରହ ।୧୯-୨୧
ନିଃଶଙ୍କ ହୋଇ ସିଂହ-ନାଦେ
ପୂରିଲେ ଦାନବେ ଦୁର୍ମ୍ମଦେ
ଗଦା ପରିଘ ବାଣ ପ୍ରାସ
ମୁଦ୍ଗର ତୋମର ଅଶେଷ
ଶୂଳ ଖଡ୍ଗ ପରଶ୍ୱଧ
ଶତଘ୍ନୀ ଭୁଷଣ୍ଡୀ ଆୟୁଧ

ଶୂଳୈଃ ପରଶ୍ୱଧୈଃ ଖଡ଼୍‌ଗୈଃ ଶତଘ୍ନୀଭିର୍ଭୁଶୁଣ୍ଡିଭିଃ ।
ସର୍ବତୋଽବାକିରନ୍ ଶସ୍ତ୍ରୈରସ୍ତ୍ରୈଶ୍ଚ ବିବୁଧର୍ଷଭାନ୍ । ୨୩ ।
ନ ତେଽଦୃଶ୍ୟନ୍ତ ସଞ୍ଛନ୍ନା ଶରଜାଲୈଃ ସମନ୍ତତଃ ।
ପୁଙ୍ଖାନୁପୁଙ୍ଖଂ ପତତ୍ଭିର୍ଜ୍ୟୋତୀଂଷୀବ ନଭୋଘନୈଃ । ୨୪ ।
ନ ତେ ଶସ୍ତ୍ରାସ୍ତ୍ରବର୍ଷୌଘା ହ୍ୟାସେଦୁଃ ସୁରସୈନିକାନ୍ ।
ଛିନ୍ନାଃ ସିଦ୍ଧପଥେ ଦେବୈର୍ଲଘୁହସ୍ତୈଃ ସହସ୍ରଧା । ୨୫ ।
ଅଥ କ୍ଷୀଣାସ୍ତ୍ରଶସ୍ତ୍ରୌଘା ଗିରିଶୃଙ୍ଗଦ୍ରୁମୋପଲୈଃ ।
ଅଭ୍ୟବର୍ଷନ୍ ସୁରବଲଂ ଚଚ୍ଛିଦୁସ୍ତାଂଶ୍ଚ ପୂର୍ବବତ୍ । ୨୬ ।
ତାନକ୍ଷତାନ୍ ସ୍ୱସ୍ତିମତୋ ନିଶାମ୍ୟ ଶସ୍ତ୍ରାସ୍ତ୍ରପୂଗୈରଥ ବୃତ୍ରନାଥାଃ ।
ଦ୍ରୁମୈର୍ଦୃଷଦ୍‌ଭିର୍ବିବିଧାଦ୍ରିଶୃଙ୍ଗୈରବିକ୍ଷତାଂସ୍ତତ୍ରସୁ ସୁରେନ୍ଦ୍ରସୈନିକାନ୍ । ୨୭ ।

---

ଶୂଳ, କୁଠାର, ଖଡ୍ଗ, ଶତଘ୍ନୀ, ଭୁଶୁଣ୍ଡୀ ପ୍ରଭୃତି ନାନାପ୍ରକାର ଅସ୍ତ୍ର ଶସ୍ତ୍ର ଦ୍ୱାରା ସେହି ଅସୁରମାନେ ଘେରିଆଡ଼ୁ ଦେବଗଣଙ୍କୁ ବେଢିଗଲେ । ୨୩ । *

ଗୋଟିକର ପଛରେ ଆଉ ଗୋଟିଏ ଲାଗି ରହି ଅସୁରମାନେ ବାଣବର୍ଷା ଧାବିତ ହେଲେ ତଦ୍ୱାରା ପରିବ୍ୟାପ୍ତ ହୋଇ ଦେବଗଣ ଆକାଶସ୍ଥ ମେଘରେ ଆବୃତ ସୂର୍ଯ୍ୟ, ଚନ୍ଦ୍ରାଦିଙ୍କ ତୁଲ୍ୟ ଅଦୃଶ୍ୟ ହୋଇଥିଲେ । ୨୪ ।

ଅସୁରଗଣଙ୍କ ନିକ୍ଷିପ୍ତ ଅସ୍ତ୍ର ଶସ୍ତ୍ର ଦେବତାମାନଙ୍କର ଗାତ୍ର ସ୍ପର୍ଶ କରି ପାରିନାହିଁ କାରଣ କ୍ଷିପ୍ରହସ୍ତ ଦେବଗଣ ଆକାଶ ମାର୍ଗରେ ସେମାନଙ୍କୁ ଅସଂଖ୍ୟ ଭାବରେ ଖଣ୍ଡ ବିଖଣ୍ଡ କରି ପକାଇଥିଲେ । ୨୫ ।

ତଦନନ୍ତର ଅସୁରମାନଙ୍କର ଅସ୍ତ୍ର ଶସ୍ତ୍ର ସମସ୍ତ କ୍ଷୟପ୍ରାପ୍ତ ହୋଇଗଲା । ସୁତରାଂ ସେମାନେ ଦେବ ସୈନ୍ୟଗଣଙ୍କ ପ୍ରତି ଗିରିଶୃଙ୍ଗ, ବୃକ୍ଷ ଓ ପ୍ରସ୍ତର ବର୍ଷଣ କଲେ ଓ ଦେବତାମାନେ ପୂର୍ବପରି ତାହା ଖଣ୍ଡ ବିଖଣ୍ଡ କରି ପକାଇଦେଲେ । ୨୬ ।

ତଦନନ୍ତର ବୃତ୍ରାସୁର ଓ ତତ୍‌ପକ୍ଷୀୟ ଅସୁରମାନେ ଦେଖିଲେ ଯେ ଅସ୍ତ୍ର, ଶସ୍ତ୍ର, ବୃକ୍ଷ, ପାଷାଣ, ପର୍ବତ ଶୃଙ୍ଗ ନିକ୍ଷେପ କରିବା ସତ୍ତ୍ୱେ ଦେବତାମାନେ କୁଶଳରେ ଅଛନ୍ତି, ତାହା ଦେଖି ସେମାନେ ଭୀତ ହେଲେ । ୨୭ ।

---

ଏ ଯେତେ ଶସ୍ତ୍ର ଅସ୍ତ୍ରମାନ
ଦେବଙ୍କୁ କଲେ ପ୍ରହାରଣ । ୨୨, ୨୩
ଅସୁର ଶର ବରଷଣେ
ଦୃଶ୍ୟ ନୁହନ୍ତି ଦେବଗଣେ
ପୁଣ ପୁଣିହିଁ ପଡ଼ିବାରେ
ନକ୍ଷତ୍ରେ ଯେସନେ ମେଘରେ । ୨୪ ।

ଶସ୍ତ୍ର ଆଘାତ ଦାନବର
କିଛି ନ କଲା ଦେବଙ୍କର
ଯେତେ ଅସୁରଙ୍କ ଆୟୁଧ
ସକଳ ଦେବେ କଲେ ଛେଦ । ୨୫
ଏ ଅନନ୍ତରେ ଶୂନ୍ୟହସ୍ତ
ଦାନବେ ଅତ୍ୟନ୍ତ କୋପିତ

ଗିରିର ଶୃଙ୍ଗ ଦ୍ରୁମମାନ
ଦେବଙ୍କ କଲେ ପ୍ରହାରଣ
ପୁଣିହିଁ ଇନ୍ଦ୍ର ସୈନ୍ୟମାନ
ତକ୍ଷଣେ କଲେ ତା ଛେଦନ । ୨୬ ।
କୁଶଳ ଦେଖି ଦେବଙ୍କର
କୋପେ ଦାନବେ ଖରତର

---

* । ଶତଘ୍ନୀ ତୁ ଚତୁର୍ହସ୍ତା ଲୌହ କଣ୍ଟକ ସଞ୍ଚିତା ।
ଭୁଶୁଣ୍ଡୀ ସର୍ବତୋ ଲୌହ କଣ୍ଟକାନୂକଟମାଳିତା ॥ ଇତି ଶ୍ରୀଧର ଟୀକା ।

ସର୍ବେ ପ୍ରୟାସା ଅଭବନ୍ ବିମୋଘାଃ କୃତାଃ କୃତା ଦେବଗଣେଷୁ ଦୈତ୍ୟୈଃ ।
କୃଷ୍ଣାନୁକୂଳେଷୁ ଯଥା ମହତ୍ସୁ କ୍ଷୁଦ୍ରୈଃ ପ୍ରଯୁକ୍ତା ଉଷତୀ ରୁକ୍ଷବାଚଃ । ୨୮ ।
ତେ ସ୍ୱପ୍ରୟାସଂ ବିତଥଂ ନିରୀକ୍ଷ୍ୟ ହରାବଭକ୍ତା ହତଯୁଦ୍ଧଦର୍ପାଃ ।
ପଲାୟନାୟାଜିମୁଖେ ବିସୃଜ୍ୟ ପତିଂ ମନସ୍ତେ ଦଧୁରାତ୍ତସାରାଃ । ୨୯ ।
ବୃତ୍ରୋଽସୁରାଂସ୍ତାନନୁଗାନ୍ମନସ୍ୱୀ ପ୍ରଧାବତଃ ପ୍ରେକ୍ଷ୍ୟ ବଭାଷ ଏତତ୍ ।
ପଲାୟିତଂ ପ୍ରେକ୍ଷ୍ୟବଲଞ୍ଚ ଭଗ୍ନଂ ଭୟେନ ତୀବ୍ରେଣ ବିହସ୍ୟ ବୀରଃ । ୩୦ ।
କାଲୋପପନ୍ନାଂ ରୁଚିରାଂ ମନସ୍ୱିନାଂ ଜଗାଦ ବାଚଂ ପୁରୁଷପ୍ରବୀରଃ ।
ହେ ବିପ୍ରଚିତ୍ତେ ନମୁଚେ ପୁଲୋମନ୍ ମୟାନର୍ବନ୍ ଶମ୍ବର ମେ ଶୃଣୁଧ୍ୱମ୍ । ୩୧ ।
ଜାତସ୍ୟ ମୃତ୍ୟୁର୍ଧ୍ରୁବ ଏବ ସର୍ବତଃ ପ୍ରତିକ୍ରିୟା ଯସ୍ୟ ନ ଚେହ କ୍ଳୃପ୍ତା ।
ଲୋକୋ ଯଶଶ୍ଚାଥ ତତୋ ଯଦି ହ୍ୟମୁଂ କୋ ନାମ ମୃତ୍ୟୁଂ ନ ବୃଣୀତ ଯୁକ୍ତମ୍ ।୩୨।

କୃଷ୍ଣଭକ୍ତ ମହାପୁରୁଷମାନଙ୍କ ପ୍ରତି କ୍ଷୁଦ୍ରଲୋକ ଯେତେବେ ରୁକ୍ଷ ବାକ୍ୟ ପ୍ରୟୋଗ କରେ, ତାହା ଯେପରି ବିଫଳ ହୁଏ ସେହିପରି ଦେବତାମାନଙ୍କ ପ୍ରତି ଅସୁରମାନଙ୍କ ପ୍ରଚେଷ୍ଟା ବିଫଳ ହୋଇଥିଲା । ୨୮ ।

ଭଗବାନଙ୍କ ପ୍ରତି ଭକ୍ତିହୀନ ଅସୁରମାନେ ସେମାନଙ୍କ ଯୁଦ୍ଧର ସମସ୍ତ ଚେଷ୍ଟା ବିଫଳ ହେଉଥିବାର ଦେଖି ଧୈର୍ଯ୍ୟଚ୍ୟୁତ ଭାବରେ ସେମାନଙ୍କର ଅଧିପତି ବୃତ୍ରାସୁରକୁ ପରିତ୍ୟାଗ କରି ପଳାୟନ କରିବାକୁ କୃତ ସଂକଳ୍ପ ହେଲେ । ୨୯ ।

ମନସ୍ୱୀ ବୀର ବୃତ୍ର ଅନୁଚରମାନଙ୍କ ପଳାୟନ ଉଦ୍ୟତ ଦେଖି ଏବଂ ସୈନ୍ୟମାନେ ତୀବ୍ରଭୟରେ ଛିନ୍ନ ଭିନ୍ନ ହୋଇ ପଳାୟନ କରୁ ଅଛନ୍ତି ଦେଖି ଉଚ୍ଚ ହାସ୍ୟରେ କହିଲେ । ୩୦ ।

ଶ୍ରେଷ୍ଠ ବୀର ବୃତ୍ରାସୁର ମନସ୍ୱୀ ବ୍ୟକ୍ତିମାନଙ୍କର ରୁଚିକର ଏବଂ କାଳୋଚିତ ଏହି ସମସ୍ତ କହିଲେ :— ''ହେ ବିପ୍ରଚିତ୍ତି ! ହେ ନମୁଚି ! ହେ ପୁଲୋମ ! ହେ ଅନର୍ବ ! ହେ ସମ୍ବର ; ତୁମ୍ଭେମାନେ ମୋ କଥା ଶ୍ରବଣ କର । ୩୧ ।

ଏ ସଂସାରରେ ଜନ୍ମଗ୍ରହଣ କଲେ ମୃତ୍ୟୁ ନିଶ୍ଚିତ, ଏହାର କୌଣସି ପ୍ରତିକାର ସମ୍ଭବପର ନୁହେଁ ମୃତ୍ୟୁରୁ ଯଦି ସ୍ୱର୍ଗାଦି ସ୍ୱରୂପ ଶୁଭଗତି ଏବଂ ଯଶୋଲାଭ କରିବା ସମ୍ଭବ ହୁଏ ତେବେ ସେପରି ଶ୍ଲାଘନୀୟ ମୃତ୍ୟୁ କିଏ କାମନା ନ କରିବ । ୩୨ ।

ପୁଣି ପଥର ଯୋଗ କରେ
ପିଟିଲେ ଦେବଙ୍କ ଉପରେ
ବିବିଧ ଗିରି ଶୃଙ୍ଗମାନ
ଦେବଙ୍କୁ କଲେ ପ୍ରହାରଣ
ଦୈତ୍ୟ ନିଷ୍ଫଳ କାର୍ଯ୍ୟ ହୋଇ
ଆମୃଦେହକୁ ନିନ୍ଦା ବହି
ଯାହାକୁ ରଖନ୍ତି ଈଶ୍ୱର
ଅପ୍ସରିକ୍ରିୟାଡିକମାତ୍ର । ୨୭,୨୮

ଆମ୍ଭ ଉଦ୍ୟମ ଯହୁଁ ହତ
ଦେଖି ଅସୁରେ ଭୟଯୁତ
ସ୍ୱଦର୍ପ ବିଷ୍ଟୁ ସଙ୍ଗ୍ରାମ ଶ
ରଣେ ଲଭିଲେ ଅତି ଦୁଃଖ
ସ୍ୱାମିକ ଛାଡ଼ି ସଂଗ୍ରାମରେ
ପଳାଇ ଯାନ୍ତି ପ୍ରାଣ ଡରେ । ୨୯
ବୃତ୍ର ଅସୁର ଚୂଡ଼ାମଣି
ସୈନ୍ୟ ପଳାଇ ବୋଲି ଜାଣି

ଧାଇଁବା ଦେଖି ଭୃତ୍ୟଙ୍କର
କହଇ ବଚନ ମଧୁର
ଅତ୍ୟନ୍ତ ଭୟେ ରଣ ଛାଡ଼ି
ପଳାନ୍ତି ପଡ଼ି ବୁଡ଼ା ବୁଡ଼ି । ୩୦ ।
ଏହା ଦେଖିଣ ବୃତ୍ରାସୁର
ହସି ବୋଲଇ ମହାବୀର
ହେ ବିପ୍ରଚିତ୍ତି ଅନର୍ବନ
ନମୁଚି ଶୁଣ ମୋ ବଚନ

ଦ୍ୱୌ ସମ୍ମତାବିହ ମୃତ୍ୟୂ ଦୁରାପୌ ଯଦ୍‌ବ୍ରହ୍ମ ସନ୍ଧାରଣୟା ଜିତାସୁଃ ।
କଳେବରଂ ଯୋଗରତୋ ବିଜହ୍ୟାଦ୍ ଯଦଗ୍ରଣୀର୍ବୀରଶୟେଽନିବୃତ୍ତଃ ।୩୩।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ବୃତ୍ରଯୁଦ୍ଧୋ ନାମ ଦଶମୋଽଧ୍ୟାୟଃ । ୧୦ ।

---

ପ୍ରାଣାଦି ବାୟୁ ଜୟକରି ଯୋଗପଥ ଅବଲମ୍ବନ ପୂର୍ବକ ପରଂବ୍ରହ୍ମ ରୂପୀ ଭଗବାନଙ୍କଠାରେ ଚିତ୍ତ ସଂସ୍ଥାପନ କରି ଦେହତ୍ୟାଗ କରିବା ଏବଂ ଯୁଦ୍ଧ କ୍ଷେତ୍ରରେ ଅଗ୍ରସର ହୋଇ ପଶ୍ଚାତ୍‌ପଦ ନ ହୋଇ ଦେହ ତ୍ୟାଗ କରିବା ଉଭୟ ଦୁର୍ଲ୍ଲଭ ମୃତ୍ୟୁ । ଶାସ୍ତ୍ରକାରମାନେ ଏହି ଉଭୟ ପ୍ରକାର ମୃତ୍ୟୁକୁ ପ୍ରଶସ୍ତ ବୋଲି ବର୍ଣ୍ଣନ କରିଅଛନ୍ତି । ୩୩ ।

---

ଜାତ ଯେ ହୋଇ ସଂସାର
ମରଣ ଧ୍ରୁବଟି ତାହାର
ମୃତ୍ୟୁ ଯେ ଦ୍ୱିତୀୟ ପ୍ରକାର
ସଂସାରେ ବୋଲନ୍ତି ସେ ସାର

ବ୍ରହ୍ମ ସ୍ତବନେ ଦେଇ ଚିତ୍ତ
ଯେ ପ୍ରାଣୀ ପ୍ରାଣ ହୋଏ ହତ
ଯେ ରଣ କ୍ଷେତ୍ରେ ପ୍ରାଣ ଦେଇ
ବୀରଶଯ୍ୟାରେ ରହେ ଶୋଇ୩୯ । ୩୩

ଦାସ ଜଗନ୍ନାଥ ବୋଲଇ
ଇନ୍ଦ୍ର ଅସୁରେ ଯୁଦ୍ଧ ହୋଇ ।



**ଭାବାର୍ଥ :—**

ଇନ୍ଦ୍ର ପ୍ରଭୃତି ଦେବଗଣ ଦଧୀଚି ମୁନିଙ୍କ ନିକଟରେ ଉପସ୍ଥିତ ହୋଇ ଭଗବାନଙ୍କ ଆଦେଶ ମତେ ତାହାଙ୍କଠାରୁ ଅସ୍ଥି ଲାଭ କରିଥିଲେ । ଏହି ଅସ୍ଥିଦ୍ୱାରା ବିଶ୍ୱକର୍ମା ଯେଉଁ ବଜ୍ର ନିର୍ମାଣ କରିଥିଲେ ଇନ୍ଦ୍ର ତାହା ଗ୍ରହଣକରି ବୃତ୍ରାସୁର ବିରୁଦ୍ଧରେ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । ଅସୁର ସୈନ୍ୟଗଣ ବହୁ ଉଦ୍ୟମ ସତ୍ତ୍ୱେ ଛିନ୍ନ ବିଚ୍ଛିନ୍ନ ଓ ଅସ୍ତ୍ର ଶସ୍ତ୍ରଶୂନ୍ୟ ହୋଇଥିଲେ, ଏହି ଅଧ୍ୟାୟରେ ଦଧୀଚି ଓ ଇନ୍ଦ୍ରଙ୍କ ମଧ୍ୟରେ ନିଃସ୍ୱାର୍ଥପର ବ୍ୟକ୍ତିର ଆଦର୍ଶ ବିଷୟକ କଥୋପକଥନ ଓ ବୃତ୍ରାସୁରର ସ୍ୱୀୟ ସୈନ୍ୟମାନଙ୍କ ପ୍ରତି ଶ୍ଳାଘନୀୟ ମୃତ୍ୟୁ ସମ୍ବନ୍ଧୀୟ ଉପଦେଶ ସାର କଥା ଅଟେ ।

# ଏ କା ଦ ଶ ଅ ଧ୍ୟା ୟ ।

ଏକାଦଶେ ତୁ ବୃତ୍ରସ୍ୟ ଯୁଧ୍ୟମାନସ୍ୟ ବଜ୍ରିଣା ।
ଅଭିଜ୍ଞାନବଲୋଦର୍କାଶ୍ଚିତ୍ରା ବାଚ୍ୟୋଽନୁବର୍ଣ୍ଣିତା । ୦ ।(ଶ୍ରୀଧରସ୍ୱାମୀ)

ଶ୍ରୀଶୁକ ଉବାଚ ।

ତ ଏବଂ ଶଂସତୋ ଧର୍ମ୍ମ୍ୟ ବଚଃ ପତ୍ୟୁରଚେତସଃ ।
ନୈବାଗୃହ୍ଣନ୍ତ ସନ୍ତ୍ରସ୍ତାଃ ପଲାୟନପରା ନୃପ । ୧ ।
ବିଶୀର୍ଯ୍ୟମାଣାଂ ପୃତନାମାସୁରୀମସୁରର୍ଷଭଃ ।
କାଲାନୁକୂଲୈସ୍ତ୍ରିଦଶୈଃ କାଲ୍ୟମାନାମନାଥବତ୍ । ୨ ।
ଦୃଷ୍ଟ୍ୱାତପ୍ୟତ ସଂକ୍ରୁଦ୍ଧ ଇନ୍ଦ୍ରଶତ୍ରୁରମର୍ଷିତଃ ।
ତାନ୍ନିବାର୍ଯ୍ୟୌଜସା ରାଜନ୍ନିର୍ଭର୍ତ୍ସ୍ୟେଦମୁବାଚ ହ । ୩ ।

## ଇନ୍ଦ୍ରଙ୍କ ପ୍ରତି ବୃତ୍ରାସୁରର ଉକ୍ତି ।

ଏକାଦଶ ଅଧ୍ୟାୟରେ ଇନ୍ଦ୍ର ଓ ବୃତ୍ରାସୁର ଉଭୟଙ୍କ ମଧ୍ୟରେ ନାନାବିଧ କଥାବାର୍ତ୍ତା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ—

ବୃତ୍ର ଅସୁରମାନଙ୍କୁ ପୂର୍ବୋକ୍ତ ପ୍ରକାରେ ଧର୍ମାନୁମୋଦିତ ବାକ୍ୟ କହିଲେ ସେମାନେ ଭୀତ ଓ ପଳାୟନ ପରାୟଣ ହୋଇ ପ୍ରଭୁଙ୍କ ବାକ୍ୟ ଗ୍ରହଣ କଲେ ନାହିଁ । ୧ ।

ହେ ରାଜନ୍ ! ଅସୁରମାନେ ଦୁଃସମୟର ବଶବର୍ତ୍ତୀ । ଦେବଗଣ ଅସୁରମାନଙ୍କୁ କତ୍ୟାନ୍ତ ଅସହାୟ ଦେଖି ବିତାଡ଼ିତ କରୁଅଛନ୍ତି ଜାଣି ଅସୁରାଧିପତି ବୃତ୍ର ଆଉ ସହ୍ୟ କରି ନ ପାରି ଅତ୍ୟନ୍ତ କୁପିତ ଓ ଅନୁତପ୍ତ ହେଲେ ଏବଂ ସତେଜରେ ଦେବତାମାନଙ୍କୁ ଭର୍ତ୍ସନା କଲେ । ୨, ୩ ।

ଏକାଦଶରେ ଇନ୍ଦ୍ର ବୃତ୍ର— କଥୋପକଥନ ବିଚିତ୍ର । ୦ ।

ଶ୍ରୀଶୁକ ଉବାଚ—
କହନ୍ତି ଶୁକ ବ୍ରହ୍ମଦେବିଷ୍ଟ
ଇନ୍ଦ୍ର ବୃତ୍ରର ଯୁଦ୍ଧକଥା
ସ୍ୱାମୀର ଧର୍ମ-କଥା ଶୁଣି
ଆଉତେ ନ ଶୁଣିଲେ ଭୃତ୍ୟେ
ପୁଣି ସମସ୍ତେ ପଳାଇଲେ
ସଙ୍କଟେ ସଂଗ୍ରାମ ଛାଡ଼ିଲେ । ୧ ।
କାଳାନୁକୂଳେ ଦେବଗଣେ
ଅସୁରଙ୍କର ସୈନ୍ୟମାନେ
କାଳ ପ୍ରତିକୂଳରୁ କରି
ଅନାଥ ପ୍ରାୟେ ସେ ଆଚରି
ଗରୁଡ଼ ପନ୍ନଗଙ୍କୁ ଧରି
ଯେସନେ ଦେବେ ଦୈତ୍ୟ ମାରି
ସକଳେ ଇତସ୍ତତ ହୋଇ
ଜୀବନ ଭୟେ ସେ ପଳାଇ
ଏମନ୍ତ ଦେଖି ସୈନ୍ୟଗଣ
ଅସୁର କୋପ ଗରୁତ୍ମାଣ
ଦେବଙ୍କୁ ଆବୋରି ଆପଣେ
ଭର୍ତ୍ସନା କରଇ ବଚନେ । ୨, ୩ ।

କିଂ ବ ଉଚ୍ଚରିତୈର୍ମାତୁର୍ଦ୍ଧାବଦ୍‌ଭିଃ ପୃଷ୍ଠତୋ ହତୈଃ ।
ନହି ଭୀତବଧଃ ଶ୍ଳାଘ୍ୟୋ ନ ସ୍ୱର୍ଗ୍ୟଃ ଶୂରମାନିନାମ୍ । ୪ ।
ଯଦି ବଃ ପ୍ରଧନେ ଶ୍ରଦ୍ଧା ସାରଂ ବା କ୍ଷୁଲ୍ଲକା ହୃଦି ।
ଅଗ୍ରେ ତିଷ୍ଠତ ମାତ୍ରଂ ମେ ନଚେଦ୍‌ଗ୍ରାମ୍ୟସୁଖେ ସ୍ପୃହା । ୫ ।
ଏବଂ ସୁରଗଣାନ୍ କ୍ରୁଦ୍ଧୋ ଭୀଷୟନ୍ ବପୁଷା ରିପୂନ୍ ।
ବ୍ୟନଦତ୍ ସୁମହାପ୍ରାଣୋ ଯେନ ଲୋକା ବିଚେତସଃ । ୬ ।
ତେନ ଦେବଗଣାଃ ସର୍ବେ ବୃତ୍ରବିସ୍ଫୋଟନେନ ବୈ ।
ନିପେତୁର୍ମୂର୍ଚ୍ଛିତା ଭୂମୌ ଯଥୈବାଶନିନା ହତାଃ । ୭ ।
ମମର୍ଦ୍ଦ ପଦ୍‌ଭ୍ୟାଂ ସୁରସୈନ୍ୟମାତୁରଂ ନିମୀଳିତାକ୍ଷଂ ରଣରଙ୍ଗଦୁର୍ମ୍ମଦଃ ।
ଗାଂ କମ୍ପୟନ୍ନୁଦ୍ୟତଶୂଳ ଓଜସା ନାଳଂ ବନଂ ଯୂଥପତିର୍ଯଥୋନ୍ମଦଃ । ୮ ।

---

ଯୁଦ୍ଧରୁ ପଳାୟନକାରୀ ଅସୁରମାନେ ମାତାର ବିଷ୍ଠା ତୁଲ୍ୟ ଏମାନଙ୍କୁ ପଶ୍ଚାତ୍ ଦିଗରୁ ଆଘାତ କଲେ କଣ ହେବ । ଯେଉଁମାନେ ବୀର ସେମାନେ ପଳାୟନମାନ ବ୍ୟକ୍ତିକୁ ବଧ କଲେ ସେମାନଙ୍କର ସ୍ୱର୍ଗାଦି ଶୁଭଗତି ଲାଭ ହୁଏ ନାହିଁ ଏବଂ ସେମାନେ ପ୍ରଶଂସା ପାତ୍ର ହୁଅନ୍ତି ନାହିଁ । ୪ ।

ରେ କାପୁରୁଷ ଦେବଗଣ ! ଯୁଦ୍ଧ ପ୍ରତି ତୁମ୍ଭମାନଙ୍କର ଯଦି ଶ୍ରଦ୍ଧା ଥାଏ, ହୃଦୟରେ ଯଦି ଧୈର୍ଯ୍ୟ ଥାଏ ଏବଂ ଲୌକିକ ସୁଖ ଭୋଗାଦି ପ୍ରତି ଯଦି ସ୍ପୃହା ନ ଥାଏ, ତେବେ କ୍ଷଣକାଳ ମାତ୍ର ମୋ ସମ୍ମୁଖରେ ଦଣ୍ଡାୟମାନ ହୁଅ । ୫ ।

ମହାବଳ ପରାକ୍ରମଶାଳୀ ବୃତ୍ରାସୁର କ୍ରୋଧରେ ଏହିପରି ପ୍ରତିପକ୍ଷ ଦେବଗଣଙ୍କୁ ଭୟ ପ୍ରଦର୍ଶନ କରି ଏପରି ଗର୍ଜନ କଲା ଯେ ତାହା ଶୁଣି ଲୋକମାନେ ଅଚେତନ ହୋଇଗଲେ । ୬ ।

ଦେବତାମାନେ ମଧ୍ୟ ସମସ୍ତେ ବୃତ୍ରାସୁରର ଏହି ବିକଟ ଗର୍ଜନ ଶୁଣି ବଜ୍ରାହତ ତୁଲ୍ୟ ମୂର୍ଚ୍ଛିତ ହୋଇ ଭୂତଳରେ ପତିତ ହେଲେ । ୭ ।

ମଦମତ୍ତ ଗଜରାଜ ନଳବନକୁ ବିମର୍ଦ୍ଦିତ କଲାପରି ରଣରଙ୍ଗରେ ଦୁର୍ମଦ ଅସୁର ଶୂଳ ଉତ୍ତୋଳନ କରି ଏବଂ ପୃଥିବୀକୁ କମ୍ପିତ କରି ଆତୁର ଓ ମୁଦ୍ରିତନେତ୍ର ଦେବସେନାମାନଙ୍କୁ ପଦଦ୍ୱୟରେ ଦଳନ କରିଥିଲା । ୮

---

ପଳାଉଛନ୍ତି ଯେ ଅସୁର
ତାଙ୍କୁ ପଛରୁ କର୍ପା ମାର
ଭୟେ ପଳାନ୍ତି ଯେଉଁ ଜନ
ତାଙ୍କ ବଧ କି ଭଲ ମଣ
ଏମନ୍ତ ବଳବନ୍ତଙ୍କର
ସ୍ୱର୍ଗ ପ୍ରାପତ ଯେ ଦୁସ୍ତର । ୪ ।
ଏତେ ବୋଲିଣ ତାଙ୍କୁ କହି
ଦେବଗଣଙ୍କୁ କ୍ରୋଧ ବହି

ଆମ୍ଭ ଶରୀର ପ୍ରକାଶିଲା
ଦେବଙ୍କୁ ଭୟ ଦେଖାଇଲା
ଅସୁର କଲା ଘୋର ନାଦ
ବ୍ରହ୍ମାଣ୍ଡେ ପୂରିଲା ଶବଦ
ଲୋକେ ହୋଇଲେ ହତଜ୍ଞାନ
ଦେବେ ଶୁଣିଲେ ତାର ସ୍ୱନ
ସେ ନାଦ ଶୁଣି ଦେବଗଣେ
ମୂର୍ଚ୍ଛିତ ହେଲେ ତତକ୍ଷଣେ

ବିକଳେ ପଡ଼ିଲେ ଭୂମିରେ
ବଜ୍ର ପଡ଼ିଲା ଯେସନେ ଶିରେ । ୫-୭
ଚକ୍ଷୁକୁ ବୁଜି ଦେବଗଣେ
ପଡ଼ି ଅଛନ୍ତି ଯହିଁ ରଣେ
ଦୁର୍ମ୍ମଦ ରଣରଙ୍ଗେ ବୀର
ପାଦେ ମର୍ଦ୍ଦିଲା ବୃତ୍ରାସୁର
ଅବନୀ କମ୍ପେ ପାଦଭରେ
ଶୂଳ ଘେନିଣ ହାତକରେ

ବଲୋକ୍ୟ ତଂ ବଜ୍ରଧରୋଽଭ୍ୟମର୍ଷିତଃ ସ୍ୱଶତ୍ରବେଽଭିଦ୍ରବତେ ମହାଗଦାମ୍ ।
ଚକ୍ଷେପ ତାମାପତତୀଂ ସୁଦୁଃସହାଂ ଜଗ୍ରାହ ବାମେନ କରେଣ ଲୀଳୟା । ୯ ।
ସ ଇନ୍ଦ୍ରଶତ୍ରୁଃ କୁପିତୋ ଭୃଶଂ ତୟା ମହେନ୍ଦ୍ରବାହଂ ଗଦୟୋରୁବିକ୍ରମଃ ।
ଜଘାନ କୁମ୍ଭସ୍ଥଳ ଉନ୍ନଦନ୍ ମୃଧେ ତତ୍କର୍ମ ସର୍ବେ ସମପୂଜୟନ୍ନୃପ । ୧୦ ।
ଐରାବତୋ ବୃତ୍ରଗଦାଭିମୃଷ୍ଟୋ ବିଘୂର୍ଣ୍ଣିତୋଽଦ୍ରିଃ କୁଲଶାହତୋ ଯଥା ।
ଅପାସରଦ୍‌ଭିନ୍ନମୁଖଃ ସହେନ୍ଦ୍ରୋ ମୁଞ୍ଚନ୍ନସୃକ୍ ସପ୍ତଧନୁର୍ଭୃଶାର୍ତ୍ତଃ । ୧୧ ।
ନ ସନ୍ନବାହାୟ ବିଷଣ୍ଣଚେତସେ ପ୍ରାୟୁଙ୍‌କ୍ତ ଭୂୟଃ ସ ଗଦାଂ ମହାତ୍ମା ।
ଇନ୍ଦ୍ରୋଽମୃତସ୍ୟନ୍ଦିକରାଭିମର୍ଶବୀତବ୍ୟଥକ୍ଷତବାହୋଽବତସ୍ଥେ । ୧୨ ।

---

ବୃତ୍ରାସୁର ଇନ୍ଦ୍ରଙ୍କର ସମ୍ମୁଖବର୍ତ୍ତୀ ହୁଅନ୍ତେ, ସେ ନିଜର ଶତ୍ରୁ ଆକ୍ରମଣ କରିବାକୁ ଆସୁଅଛି ଦେଖି ଅସହିଷ୍ଣୁ ହେଲେ ଏବଂ ତାହାକୁ ଲକ୍ଷ୍ୟକରି ତାହାପ୍ରତି ମହାଗଦା ନିକ୍ଷେପ କରିଥିଲେ । ବୃତ୍ରାସୁର ନିଜ ଆଡ଼କୁ ଆସୁଥିବା ସେହି ଅସହନୀୟ ଗଦାକୁ ବାମହସ୍ତରେ ଧରି ପକାଇଲା । ୯ ।

ହେ ରାଜନ୍ ! ମହାବଳଶାଳୀ ବୃତ୍ରାସୁର ଅତ୍ୟନ୍ତ କୁପିତ ହୋଇ ସିଂହନାଦ କରୁ କରୁ ଇନ୍ଦ୍ରଙ୍କର ବାହନ ଐରାବତ ହସ୍ତୀ କୁମ୍ଭସ୍ଥଳ (ମସ୍ତକ) ରେ ଆଘାତ କଲା । ଯୁଦ୍ଧ କ୍ଷେତ୍ରରେ ଅସୁର ପକ୍ଷୀୟ ସମସ୍ତେ ତାହାର ସେହି କାର୍ଯ୍ୟର ବିଶେଷ ପ୍ରଶଂସା କରିବାକୁ ଲାଗିଲେ । ୧୦ ।

ଐରାବତ ହସ୍ତୀ ବୃତ୍ରାସୁରର ଗଦାଦ୍ୱାରା ଆହତ ହୋଇ ବଜ୍ର ତାଡ଼ିତ ପର୍ବତ ତୁଲ୍ୟ ଘୁରି ଘୁରି ଭୂମଣ୍ଡଳ ବିଦୀର୍ଣ୍ଣ କରି ରୁଧିର ଉଦ୍‌ଗୀରଣ କରିଥିଲା ଏବଂ ଅତ୍ୟନ୍ତ କାତର ଭାବରେ ଇନ୍ଦ୍ରଙ୍କ ସହିତ ସପ୍ତଧନୁ ଅର୍ଥାତ୍ ଅଠେଇଶି ହାତ ପର୍ଯ୍ୟନ୍ତ ଘୁଞ୍ଚି ଯାଇଥିଲା । ୧୧ ।

ବୃତ୍ରାସୁର ଅତ୍ୟନ୍ତ ପ୍ରଶସ୍ତଚିତ୍ତ, ତେଣୁ ଇନ୍ଦ୍ରଙ୍କର ବାହନ ଅବସନ୍ନ ହୋଇଛି, ଏବଂ ତାଙ୍କ ଚିତ୍ତ ଅତି ବିଷଣ୍ଣ ହୋଇଅଛି,ଦେଖି ପୁଣି ତାହାଙ୍କ ପ୍ରତି ଗଦା ନିକ୍ଷେପ କଲାନାହିଁ । ଇନ୍ଦ୍ର ନିଜର ଅମୃତ ବର୍ଷଣକାରୀ ହସ୍ତ ସଂସ୍ପର୍ଶରେ ସେହି ଐରାବତର କ୍ଷତ ଦେହର ବ୍ୟଥା ଅପନୋଦନ କରି ଅବସ୍ଥାନ କରିଥିଲେ । ୧୨ ।

---

ଭ୍ରମଇ ସଂଗ୍ରାମ ଭୂମିରେ
ଯେସନେ ମତ୍ତ କରିବରେ । ୮ ।
ତାହାକୁ ଦେଖି ବଜ୍ରଧର
କୋପେ କମ୍ପଇ ଥରହର
ମହାଗଦାଏ ଦେବବର
ବୃତ୍ରକୁ କଲେ ସେ ପ୍ରହାର
ଦୁଃସହ ଗଦା ଆସିବାରେ
ବୃତ୍ର ଧଇଲା ବାମକରେ । ୯ ।
ଇନ୍ଦ୍ରର ଗଦା ବୃତ୍ରାସୁର
ସେହି ଗଦାକୁ ଘେନି କରି

ଐରାବତର କୁମ୍ଭ ସ୍ଥଳେ
ଦାନବ ପ୍ରହାରିଲା ବଳେ
ତାହାର ଏ କର୍ମ ଦେଖିଣ
ସକଳେ କଲେ ଧନ୍ୟ ଧନ୍ୟ । ୧୦ ।
ବୃତ୍ର ଗଦାରେ ଐରାବତ
ବଜ୍ରରେ ଯେହ୍ନେ ଗିରି ହତ,
ରଣେ ସେ ବିମୁଖ ହୋଇଲା
ଇନ୍ଦ୍ରକୁ ଘେନି ବାହୁଡ଼ିଲା
ଅତ୍ୟନ୍ତ ହୋଇଣ ଆରତ
ବାହୁଡ଼ି ଗଲା ଧନୁସାତ । ୧୧ ।

ଚକିତ ଅତି ଛିନ୍ନ ଚିତ୍ତ
ଏମନ୍ତେ ହୋଇ ପୁରୁହୂତ
ବୃତ୍ର ଅସୁର ପୁନର୍ବାର
ଇନ୍ଦ୍ରକୁ ନ କଲା ପ୍ରହାର
ଇନ୍ଦ୍ର ଅମୃତସ୍ରାବୀ କର
ଦେଇଣ ହସ୍ତି କୁମ୍ଭ ସ୍ଥଳ
ଆଶ୍ୱାସି କରି ଦେବବର
ରହିଲେ ବୃତ୍ରର ଆଗର । ୧୨ ।

ସ ତଂ ନୃପେନ୍ଦ୍ରାହବକାମ୍ୟଯା ରିପୁଂ ବଜ୍ରାୟୁଧଂ ଭ୍ରାତୃହଣଂ ବିଲୋକ୍ୟ ।
ସ୍ମରଂଶ୍ଚ ତତ୍କର୍ମ୍ମ ନୃଶଂସମଂହଃ ଶୋକେନ ମୋହେନ ହସନ୍ ଜଗାଦ । ୧୩ ।
ଶ୍ରୀବୃତ୍ର ଉବାଚ । ଦିଷ୍ଟ୍ୟା ଭବାନ୍ ମେ ସମବସ୍ଥିତୋ ରିପୁର୍ଯୋ ବ୍ରହ୍ମହା ଗୁରୁହା ଭ୍ରାତୃହା ଚ
ଦିଷ୍ଟ୍ୟାଽନୃଣୋଽଦ୍ୟାହମସତ୍ତମ ତ୍ୱୟା ମଚ୍ଛୂଲନିର୍ଭିନ୍ନଦୃଶଦ୍ଧୃଦାଚିରାତ୍ । ୧୪ ।
ଯୋ ନୋଽଗ୍ରଜସ୍ୟାତ୍ମବିଦୋ ଦ୍ୱିଜାତେର୍ଗୁରୋରପାପସ୍ୟ ଚ ଦୀକ୍ଷିତସ୍ୟ ।
ବିସ୍ରଭ୍ୟ ଖଡ୍ଗେନ ଶିରାଂସ୍ୟବୃଶ୍ଚତ୍ ପଶୋରିବାକରୁଣଃ ସ୍ୱର୍ଗକାମଃ । ୧୫ ।
ଶ୍ରୀହ୍ରୀ ଦୟାକୀର୍ତ୍ତିଭିରୁଜ୍ଝିତଂ ତ୍ୱାଂ ସ୍ୱକର୍ମ୍ମଣା ପୁରୁଷାଦୈଶ୍ଚ ଗର୍ହ୍ୟମ୍ ।
କୃଚ୍ଛ୍ରେଣ ମଚ୍ଛୂଲବିଭିନ୍ନଦେହମସ୍ପୃଷ୍ଟବହ୍ନିଂ ସମଦନ୍ତି ଗୃଧ୍ରାଃ । ୧୬ ।

---

ହେ ମହାରାଜ ପରୀକ୍ଷିତ ! ଯେ ବୃତ୍ରର ଭ୍ରାତା, ବିଶ୍ୱରୂପକୁ ବଧ କରିଥିଲେ, ସେହି ଶତ୍ରୁ ଇନ୍ଦ୍ର ବଜ୍ର ଧାରଣ କରି ଯୁଦ୍ଧ ବାସନାରେ ଅବସ୍ଥାନ କରୁ ଅଛନ୍ତି ଦେଖି ବୃତ୍ରାସୁର ଇନ୍ଦ୍ରଙ୍କର ସେହି ନୃଶଂସ ପାପ ସ୍ମରଣ କରି ଶୋକ ଓ ମୋହରେ ହାସ୍ୟ କରୁ କରୁ କହିଲେ । ୧୩ ।

ବୃତ୍ରାସୁର କହିଲେ :—

ଯେଉଁ ବ୍ୟକ୍ତି ବ୍ରହ୍ମହତ୍ୟାକାରୀ, ଗୁରୁହତ୍ୟାକାରୀ ଓ ବିଶେଷତଃ ମୋର ଭ୍ରାତୃହନ୍ତା ସେହି ଶତ୍ରୁ ତୁମ୍ଭେ, ମୋର ସମ୍ମୁଖରେ ଉପସ୍ଥିତ, ଏହା ଅତ୍ୟନ୍ତ ଆନନ୍ଦର ବିଷୟ । ମୁଁ ଆଜି ମୋର ଶୂଳ ଦ୍ୱାରା ତୋହର ପାଷାଣ ହୃଦୟ ବିଦୀର୍ଣ୍ଣ କରି ମୋର ଭ୍ରାତୃଋଣ ପରିଶୋଧ କରିପାରିବି, ଏହାହିଁ ମୋର ସୌଭାଗ୍ୟ ।୧୪।

ମୋର ଜ୍ୟେଷ୍ଠଭ୍ରାତା ବିଶ୍ୱରୂପ ଆତ୍ମଜ୍ଞାନ ସମ୍ପନ୍ନ ସୁବ୍ରାହ୍ମଣ ଥିଲେ, ତୁମ୍ଭେମାନେ ତାହାଙ୍କୁ ଗୁରୁ ବୋଲି ବରଣ କରିଥିଲ । ସେ ତୁମ୍ଭମାନଙ୍କ କାର୍ଯ୍ୟ ସମାଧାନ କରିଥିଲେ, ପ୍ରଥମେ ତାହାଙ୍କ ପ୍ରତି ତୁମ୍ଭେ ବିଶ୍ୱାସ ସ୍ଥାପନ କରି ବିନା ଅପରାଧରେ ତାହାଙ୍କ ଖଡ୍ଗ ଦ୍ୱାରା ବଧ କରିଅଛ । ୧୫ ।

ସମ୍ପଦ, ଲଜ୍ଜା, ଦୟା, କୀର୍ତ୍ତି ଏ ସମସ୍ତ ତୁମ୍ଭଙ୍କୁ ଛାଡ଼ି ଯାଇଅଛି, ତୁମ୍ଭେ ଆତ୍ମକୃତ କର୍ମ ଦୋଷରେ ରାକ୍ଷସମାନଙ୍କ ନିକଟରେ ସୁଦ୍ଧା ନିନ୍ଦନୀୟ ହୋଇଅଛ, ମୁଁ ଅତଏବ ଶୂଳଦ୍ୱାରା ତୁମ୍ଭର ହୃଦୟ ବିଦାରଣ କରିବି; ଅଗ୍ନି ତୁମ୍ଭର ଶରୀର ସ୍ପର୍ଶକରିବନାହିଁ, ଗୃଧ୍ରମାନେ ଅତିକଷ୍ଟରେ ତୁମ୍ଭର ଶରୀର ଭକ୍ଷଣକରିବେ ।୧୬

---

ସଂଗ୍ରାମ କରିବାର ଆଶେ
ଇନ୍ଦ୍ରକୁ ଦେଖି ଆତ୍ମପାଶେ
ଭ୍ରାତାର ହନ୍ତା ବଜ୍ରାୟୁଧ
ଦେଖି ଅସୁର କଲା କ୍ରୋଧ
ସ୍ମରଣ କଲା ଭ୍ରାତୃ-ନାଶ
ଶୋକ-ମୋହେ ହୋଇ ବିରସ
ହସି ବୋଲଇ ମୋ ବଚନ
ଶୁଣ ହେ ଇନ୍ଦ୍ର ସାବଧାନ ।୧୩।
ବୃତ୍ର ଉବାଚ—
ଭାଗ୍ୟରୁ କରି ଦୁରାଚାର
ଅଛାମେ ଅଛୁ ମୋ ପାଖର
ମୋହର ଭ୍ରାତା ନାଶ କରି
ଆଜ ନାଶିବି ତୋର ଶିରୀ
ମୋହର ଶୂଳେ ହୃଦ ତୋର
ନିଶ୍ଚୟେ କରିବି ବିଦାର ।୧୪।
ଯେଉଁ କାରଣେ ମୋ ଅଗ୍ରଜ
ଅପାପୀ ଆତ୍ମଜ୍ଞାନୀ ଦ୍ୱିଜ
ଖଡ଼ଗେ କରି ତାର ଶିର
ଛେଦିଲୁ ତୁହି ଦୁରାଚାର
ପଶୁଙ୍କ ପ୍ରାୟେକ ମାଇଲୁ
ସ୍ୱର୍ଗ ଭୋଗିଲୁ ଇଚ୍ଛା କଲୁ ।
ଲଜ୍ଜା ସମ୍ପଦ ଦୟା କୀର୍ତ୍ତି
ସବୁ ଛାଡିଲୁ ମୂଢ଼ମତି
ମୋ ଶାସ୍ତ୍ରଣବାଣେ ତୋ ଶରୀର
ନାଶ ହୋଇବ ଦୁରାଚାର
ଅଗ୍ନି ନ କରିବ ଦହନ
ଖାଇବେ ଗୃଧ୍ର କୃମି ଶ୍ୱାନ ।୧୫,୧୬

ଅନ୍ୟେ ଯଦ୍ୟନୁ ଯେ ତ୍ୱେହ ନୃଶଂସମଜ୍ଞା ଯଦୁଦ୍ୟତାସ୍ତ୍ରାଃ ପ୍ରହରନ୍ତି ମହ୍ୟମ୍ ।
ତୈର୍ଭୂତନାଥାନ୍ ସଗଣାନ୍ ନିଶାତତ୍ରିଶୂଳନିର୍ଭିନ୍ନଗଳୈର୍ଯଜାମି । ୧୭ ।
ଅଥୋ ହରେ ମେ କୁଲିଶେନ ବୀର ହର୍ତ୍ତା ପ୍ରମଥ୍ୟୈବ ଶିରୋ ଯଦୀହ ।
ତତ୍ରାନୃଣୋ ଭୂତବଳିଂ ବିଧାୟ ମନସ୍ୱିନାଂ ପାଦରଜଃ ପ୍ରପତ୍ସ୍ୟେ । ୧୮ ।
ସୁରେଶ କସ୍ମାନ୍ନ ହିନୋଷି ବଜ୍ରଂ ପୁରଃ ସ୍ଥିତେ ବୈରିଣି ମଯ୍ୟମୋଘମ୍ ।
ମା ସଂଶୟିଷ୍ଠା ନ ଗଦେବ ବଜ୍ରଃ ସ୍ୟାନ୍ନିଷ୍ଫଳଃ କୃପଣାର୍ଥେବ ଯାଚଞ୍ଚା । ୧୯ ।
ନନ୍ୱେଷ ବଜ୍ରସ୍ତବ ଶକ୍ର ତେଜସା ହରେର୍ଦଧୀଚସ୍ତପସା ଚ ତେଜିତଃ ।
ତେନୈବ ଶତ୍ରୁଂ ଜହି ବିଷ୍ଣୁଯନ୍ତ୍ରିତୋ ଯତୋ ହରିର୍ବିଜୟଃ ଶ୍ରୀର୍ଗୁଣାସ୍ତତଃ । ୨୦ ।

---

ଏଠାରେ ଏପରି ଯଦି କେହି ଥାଏ, ଯେ ତୁମ୍ଭପରି ନୃଶଂସ ବ୍ୟକ୍ତିର ଅନୁବର୍ତ୍ତନ କରି ଅସ୍ତ୍ର ଉତ୍ତୋଳନ ପୂର୍ବକ ମୋତେ ଆଘାତ କରିବ, ସେ ଆସୁ ମୁଁ ସୁତୀକ୍ଷ୍ଣ ତ୍ରିଶୂଳଦ୍ୱାରା ସେହି ବ୍ୟକ୍ତିର ଗଳଦେଶ ବିଦୀର୍ଣ୍ଣ କରି ତଦ୍ୱାରା ଭୈରବାଦି ଭୂତନାଥ ଓ ସେମାନଙ୍କର ଅନୁଚର ବର୍ଗଙ୍କୁ ପରିତୁଷ୍ଟ କରିବ । ୧୭ ।

ହେ ବୀର ଇନ୍ଦ୍ର ! ଅଥବା ତୁମ୍ଭେ ଯଦି ବଜ୍ରଦ୍ୱାରା ଆଘାତ କରି ମୋର ଶିରଚ୍ଛେଦନ କର, ମୁଁ ମୋର ଦେହକୁ ଶୃଗାଳ, କୁକ୍କୁର ପ୍ରଭୃତିଙ୍କୁ ଉପହାର ସ୍ୱରୂପ ପ୍ରଦାନ କରିବ ଏବଂ ଭକ୍ତମାନଙ୍କର ପଦଧୂଳି ଲାଭ କରି ପାରିବ । ୧୮ ।

ହେ ଦେବରାଜ ! ମୁଁ ତୁମ୍ଭର ଶତ୍ରୁ ସମ୍ମୁଖରେ ଉପସ୍ଥିତ ହୋଇ ଅଛି, ମୋ ପ୍ରତି ବଜ୍ର ନିକ୍ଷେପ କରୁ ନାହିଁ କାହିଁକି ? ତୁମ୍ଭେ ସନ୍ଦେହ କର ନାହିଁ, କୃପଣ ନିକଟରେ ଅର୍ଥ ଯାଚଞ୍ଚା କଲେ ଯେପରି ବିଫଳ ହେବାକୁ ହୁଏ ତୁମ୍ଭର ଗଦା ସେହିପରି ବିଫଳ ହୋଇଅଛି, କିନ୍ତୁ ଏ ବଜ୍ର ସେପରି ହେବ ନାହିଁ । ୧୯ ।

ହେ ଇନ୍ଦ୍ର ! ତୁମ୍ଭର ବଜ୍ର ଭଗବାନ୍ ଶ୍ରୀହରିଙ୍କର ତେଜରେ ଏବଂ ଦଧୀଚିଙ୍କର ତପୋବଳରେ ସୁତୀକ୍ଷ୍ଣ ହୋଇଅଛି । ଭଗବାନ୍ ମଧ୍ୟ ତୁମ୍ଭଙ୍କୁ ନିଯୁକ୍ତ କରିଅଛନ୍ତି । ତୁମ୍ଭେ ଏହି ବଜ୍ର ଦ୍ୱାରା ମୋତେ ବଧ କର । ଯେଉଁ ପକ୍ଷରେ ଭଗବାନ୍ ସେ ପକ୍ଷ ନିଶ୍ଚୟ ଜୟ, ସମ୍ପଦ ଓ ଶୌର୍ଯ୍ୟ ବୀର୍ଯ୍ୟାଦି ସମ୍ପନ୍ନ । ୨୦ ।

---

ଯେତେ ତୋ ସଙ୍ଗେ ଦୁଷ୍ଟଜନେ
ଶସ୍ତ୍ର ଧରିଣ' ଛନ୍ତି ରଣେ
ଯେ ମୋତେ ପ୍ରହାରକୁ କଟିଲ
ତାହାଙ୍କୁ ଛିଡ଼ିବାକୁ ଉଠିଲ
ଖଡ୍ଗ ତ୍ରିଶୂଳ ପ୍ରହାରି
କଣ୍ଠ ଛେଦିବି ଏହାଙ୍କରି । ୧୭ ।
ଏ ଅନନ୍ତରେ ପାଇ ଜ୍ଞାନ
ଇନ୍ଦ୍ରକୁ ବୋଲଇ ବଚନ

ହେ ଇନ୍ଦ୍ର ଦେବଙ୍କ ଠାକୁର
କୁଳିଶେ ମୋର ଶିର ହର
ଆମ୍ଭକୁ ବଳି ମୁହିଁ ଦେବି
ଧୀରଙ୍କ ଚରଣ ଭଜିବି । ୧୮ ।
ହେ ଦେବ ଦେବଙ୍କ ଈଶ୍ୱର
ବଜ୍ର କପାଇଁ ନ ପ୍ରହାର
ଅଗ୍ରେ ଯେ ଅଛି ଉଭା ହୋଇ
ସଂଶୟ କରି କାହିଁ ପାଇଁ

ଗଦା ପ୍ରାୟେ ବଜ୍ର ନ ମଣ
ବଜ୍ର ମୋ ମରଣ କାରଣ । ୧୯ ।
ଆପଣା ତେଜ ବଜ୍ରଧର
ଦଧୀଚ ତପେ ତେଜ ଘୋର
ବିଷ୍ଣୁ ଯନ୍ତ୍ରିତ ଦେବବର
ବିଜୟ ହୋଇବ ତୁମ୍ଭର । ୨୦ ।

ଅହଂ ସମାଧାୟ ମନୋ ଯଥାହ ସଙ୍କର୍ଷଣସ୍ତଚ୍ଚରଣାରବିନ୍ଦେ ।
ତ୍ୱଦ୍‌ବଜ୍ରରଂହୋଲୁଳିତଗ୍ରାମ୍ୟପାଶୋ ଗତିଂ ମୁନେର୍ଯାମ୍ୟପବଦ୍ଧଲୋକଃ ॥୨୧ ।
ପୁଂ ସାଂ କଲୈକାନ୍ତଧିୟାଂ ସ୍ୱକାନଂ ଯାଃ ସମ୍ପଦୋ ଦିବି ଭୂମୌ ରସାୟାମ୍ ।
ନ ରାତି ଯଦ୍ଦ୍ୱେଷ ଉଦ୍‌ବେଗ ଆଧିର୍ମଦଃ କଲିର୍ବ୍ୟସନଂ ସମ୍ପ୍ରୟାସଃ । ୨୨ ।
ତ୍ରୈବର୍ଗିକାୟାସବିଘାତମସ୍ମତ୍‌ପତିର୍ବିଧତ୍ତେ ପୁରୁଷସ୍ୟ ଶକ୍ର ।
ତତୋଽନୁମେୟୋ ଭଗବତ୍‌ପ୍ରସାଦୋ ଯୋ ଦୁର୍ଲଭୋଽକିଞ୍ଚନଗୋଚରୋଽନ୍ୟୈଃ ।୨୩
ଅହଂ ହରେ ତବ ପାଦୈକମୂଳଦାସାନୁଦାସୋ ଭବିତାସ୍ମି ଭୂୟଃ ।
ମନଃ ସ୍ମରେତାସୁପତେର୍ଗୁଣାନାଂ ଗୃଣୀତ ବାକ୍ କର୍ମ କରୋତୁ କାୟଃ । ୨୪ ।

---

ସୁତରାଂ ପ୍ରଭୁ ସଙ୍କର୍ଷଣ ଯେପରି ଉପଦେଶ ଦେଇଅଛନ୍ତି ମୁଁ ତଦନୁସାରେ ତାହାଙ୍କର ପାଦ ପଦ୍ମରେ ମନ ସଂସ୍ଥାପନକରି ତୁମ୍ଭର ବଜ୍ର ପ୍ରହାରରେ ବିଷୟ ବାସନା ରୂପ ବନ୍ଧନ ଛେଦନ କରି ଯୋଗୀ ଜନୋଚିତ ଗତି ଲଭ କରିବି । ୨୧ ।

ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ଯେଉଁ ସମ୍ପଦମାନ ଅଛି ଭଗବାନ୍ ତାହାଙ୍କଠାରେ ତନ୍ମୟ ଚିତ୍ତ ଓ ଭକ୍ତମାନଙ୍କୁ ତାହା ପ୍ରଦାନ କରନ୍ତି ନାହିଁ କାରଣ ଏହି ସମସ୍ତ ସମ୍ପଦରୁ ଦ୍ୱେଷ, ଉଦ୍‌ବେଗ ମନଃପୀଡ଼ା, ମତ୍ତତା, କଳହ, ବିପଦ ଓ ନାନାପ୍ରକାର କ୍ଳେଶ ଉତ୍ପନ୍ନ ହୋଇଥାଏ । ୨୨ ।

ଆମ୍ଭମାନଙ୍କର ପ୍ରଭୁ ସଙ୍କର୍ଷଣ ଦେବ ଭକ୍ତମାନଙ୍କର ଯେଉଁ ଅର୍ଥ, କାମ ସମ୍ବନ୍ଧୀୟ ସର୍ବପ୍ରକାର ଉପଶମ ବିଧାନ କରିଥାନ୍ତି, ତାହା ତାହାଙ୍କର ପ୍ରସନ୍ନତା ଭିନ୍ନ ଅନ୍ୟ କିଛି ନୁହେଁ, ଅକିଞ୍ଚନ, ଧ୍ୟାନ, ଜ୍ଞାନ, ବ୍ୟକ୍ତିଗଣ ସହଜରେ ଭଗବତ୍ ପ୍ରସାଦ୍ ଲଭକରନ୍ତି ମାତ୍ର ଅନ୍ୟ ପକ୍ଷରେ ତାହା ସୁଦୁର୍ଲ୍ଲଭ । ୨୩ ।

ହେ ଭଗବନ୍ ! ମୁଁ ପୁଣି ଆପଣଙ୍କ ଶ୍ରୀଚରଣାଶ୍ରିତ ଭକ୍ତମାନଙ୍କର ଦାସ ହୋଇପାରେ, ଆପଣ ମୋର ଜୀବନର ଅଧୀଶ୍ୱର, ମୋର ମନ ଯେପରି ଆପଣଙ୍କ ଗୁଣରାଶି ସ୍ମରଣକରେ ବାକ୍ୟ ଯେପରି ଆପଣଙ୍କ ଗୁଣ କୀର୍ତ୍ତନ କରେ ଦେହ ଯେପରି ଆପଣଙ୍କ କାର୍ଯ୍ୟରେ ବ୍ୟାପୃତ ହୁଏ । ୨୪ ।

---

ସଙ୍କରଷଣ ଯେଥାଶେତ
ଯାହା ସେ କହିଛନ୍ତି ମୋତେ
ଶ୍ରୀକୃଷ୍ଣ ପାଦ ପଙ୍କଜରେ
ମନ ମୁଁ ନିବେଶିବ ସ୍ଥିରେ
ତୁମ୍ଭର ବଜ୍ରରେ ମୋହର
ହୋଇବ ମୋହ-ପାଶ ଦୂର
ଯେ ଗତି ଯୋଗୀ ଯୋଗେ ପାଇ
ସେ ଗତି ପାଇବଇଁ ମୁହିଁ ।୨୧।

ତ୍ରିଭୁବନ ପ୍ରାଣୀଙ୍କର
ବହୁତ ସମ୍ପତ୍ତି ଯାହାର
ଉଦ୍‌ବେଗ ଆଧି ଗର୍ବ ଆର
କଳି ବ୍ୟସନ ଯେ ଅପାର
ତ୍ରିବର୍ଗ ଦୁଃଖ ଭକ୍ତଙ୍କର
ନାଶନ୍ତି ପ୍ରଭୁ ଚକ୍ରଧର
ଦୁର୍ଲ୍ଲଭ ଯେ ପ୍ରଭୁ ପ୍ରସାଦେ
ତେଣୁ ଲଭନ୍ତି ଅପ୍ରମାଦେ ।୨୨, ୨୩

ହେ ପ୍ରଭୁ ତୁମ୍ଭ ପଦ୍ମପାଦେ
ଭୃତ୍ୟର ଭୃତ୍ୟ ମୁଁ ଆନନ୍ଦେ
ହୋଇବି, ଏ ମୋହର ମନ
ସେବା କରିବ ଅନୁକ୍ଷଣ
କୀର୍ତ୍ତନ କର୍ମ ଯେ ତୁମ୍ଭର,
କରୁ ମୋ ବଚନ ଶରୀର । ୨୪ ।

ନ ନାକପୃଷ୍ଠଂ ନ ଚ ପାରମେଷ୍ଠ୍ୟଂ ନ ସାର୍ବଭୌମଂ ନ ରସାଧିପତ୍ୟମ୍ ।
ନ ଯୋଗସିଦ୍ଧୀରପୁନର୍ଭବଂ ବା ସମଞ୍ଜସ ତ୍ୱା ବିରହଯ୍ୟ କାଙ୍କ୍ଷେ । ୨୫ ।
ଅଜାତପକ୍ଷା ଇବ ମାତରଂ ଖଗାଃ ସ୍ତନ୍ୟଂ ଯଥା ବତ୍ସତରାଃ କ୍ଷୁଧାର୍ତ୍ତାଃ ।
ପ୍ରିୟଂ ପ୍ରିୟେବ ବ୍ୟୁଷିତଂ ବିଷଣ୍ଣା ମନୋଽରବିନ୍ଦାକ୍ଷ ଦିଦୃକ୍ଷତେ ତ୍ୱାମ୍ । ୨୬ ।
ମମୋତ୍ତମଶ୍ଳୋକଜନେଷୁ ସଖ୍ୟଂ ସଂସାରଚକ୍ରେ ଭ୍ରମତଃ ସ୍ୱକର୍ମଭିଃ ।
ତ୍ୱନ୍ମାୟୟାଽଽତ୍ମାତ୍ମଜଦାରଗେହେଷ୍ୱାସକ୍ତଚିତ୍ତସ୍ୟ ନ ନାଥ ଭୂୟାତ୍ । ୨୭ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ବୃତ୍ରବାକ୍ୟଂ ନାମ ଏକାଦଶୋଽଧ୍ୟାୟଃ । ୧୧ ।

---

ହେ ସକଳ ସୌଭାଗ୍ୟ ମୂଳାଧାର ! ଆପଣଙ୍କୁ ଛାଡ଼ି ମୁଁ ସ୍ୱର୍ଗଲୋକ ଇନ୍ଦ୍ରପଦ, ସମସ୍ତ ପୃଥିବୀର ଆଧିପତ୍ୟ, ପାତାଳର ପ୍ରଭୁତ୍ୱ ଯୋଗଲବ୍ଧ ଅଣିମାଦି ଐଶ୍ୱର୍ଯ୍ୟ କିବା ମୋକ୍ଷ କିଛିମାତ୍ର ଲୋଡ଼େଁ ନାହିଁ ।୨୫।

ହେ ପଦ୍ମପଳାଶ ଲୋଚନ ଶ୍ରୀହରି ! ଅଜାତପକ୍ଷ ପକ୍ଷୀଶାବକମାନେ କ୍ଷୁଧାରେ କାତର ହୋଇ ଯେପରି-ମାକୁ ଅପେକ୍ଷା କରିଥାନ୍ତି, ଯେପରି କ୍ଷୁଧାର୍ତ୍ତ ଶିଶୁମାନେ ମାତୃସ୍ତନ୍ୟ ଆକାଙ୍କ୍ଷା କରନ୍ତି, ବିରହଣୀ ନାରୀ ଯେପରି ପ୍ରବାସସ୍ଥ ପତିକୁ ଦେଖିବାକୁ ବ୍ୟାକୁଳିତ ହୁଏ ତୁମ୍ଭଙ୍କୁ ଦେଖିବାକୁ ମୁଁ ସେହିପରି ବ୍ୟାକୁଳିତ ହେଉଅଛି । ୨୬ ।

ହେ ପ୍ରଭୋ ! ନିଜର ଭାଗ୍ୟ କର୍ମାନୁସାରେ ମୁଁ ଆପଣଙ୍କ ମାୟାବଶରେ ଦେହ, ପୁତ୍ର, ସ୍ତ୍ରୀ, ଗୃହ, ପ୍ରଭୃତି ପ୍ରତି ଆସକ୍ତହୋଇ ସଂସାର ଚକ୍ରରେ ପରିଭ୍ରମଣ କରୁଅଛି । ହେ ପୁଣ୍ୟକୀର୍ତ୍ତି ! ଆପଣଙ୍କର ଭକ୍ତମାନଙ୍କ ପ୍ରତି ମୋର ଯେପରି ଆସକ୍ତି ଜନ୍ମେ ଏବଂ ଦେହାଦି ପ୍ରତି ନ ଜନ୍ମେ । ୨୭ ।

---

ସ୍ୱର୍ଗଲୋକେ ଇନ୍ଦ୍ରର ପଦ
ବ୍ରହ୍ମଲୋକେ ବ୍ରହ୍ମ ସମ୍ପଦ
ପାତାଳ ଭୋଗ ଯୋଗ ଯେହି
ସପତଦ୍ୱୀପେ ରାଜା ହୋଇ
ଏଥେ ମୋହର ନାହିଁ ଇଚ୍ଛା
ତୋ ପାଦ ସେବା ବିନୁ ବାଞ୍ଛା
ଯୋଗସିଦ୍ଧି ଅବା ମୋକ୍ଷରେ
କାର୍ଯ୍ୟ ମୋ ନାହିଁ ଏହାଙ୍କରେ
ଏକାନ୍ତ ଭକ୍ତି ତୁମ୍ଭ ପାଦ
ବାଞ୍ଛା କରଇ ଚିତ୍ତାନୁବିଧ ।୨୫।
ଅଜାତପକ୍ଷ ଖଗ ଯେହ୍ନେ
ମାତା ଲୋଡ଼ଇ ଅନୁକ୍ଷଣେ
କ୍ଷୁଧାର୍ତ୍ତ ହୋଇଣ ବାଛୁରି
ମାତା ସ୍ତନକୁ ଲୋଡ଼ା କରି
ପ୍ରବାସୀ ପତି ପ୍ରିୟା ଯେହ୍ନେ
ଲୋଡ଼ଇ, ମନ ମୋ ତେସନେ
ହେ ନାଥ ଦରଶନେ ତୋର
ହେଉ ଏ ଆଶା ପୂର୍ଣ୍ଣ କର ।୨୬।
ହେ ପ୍ରଭୁ କମଳଲୋଚନ
ତୋ ପାଦେ ରହୁ ମୋର ମନ
ଆପଣା କର୍ମ-ବନ୍ଧ ଜଡ଼
ସଂସାର ଚକ୍ରେ ଅଛି ପଡ଼
ଏମନ୍ତ ପାପୀ ମୁହିଁ ସତ୍ୟ
ଉତ୍ତମ ସାଧୁ-ସଙ୍ଗ ହେଉ
ଦାରା ତନୟ ଗୃହେ ମୋର
ହେ ନାଥ ମନ ମୋ ନ କର ।୨୭।
ବୋଲଇ ଦାସ ଜଗନ୍ନାଥ
ଇନ୍ଦ୍ର ବୃତ୍ରାସୁର ଚରିତ
ଅପୂର୍ବ ବାଣୀ ସୁଧାମୟ
ଶୁଣି ସକଳ ପାପ କ୍ଷୟ
ଭୁବନ ମଙ୍ଗଳ ଏ ବାଣୀ
ଶୁଣି ସଂସାରୁ ତର ପ୍ରାଣୀ ।



ଭାବାର୍ଥ—

ଦେବଗଣଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇ ଅସୁର ସୈନ୍ୟମାନେ ଛତ୍ରଭଙ୍ଗ ଦେଇ ପଳାୟନ କରିଥିଲେ, ଅସୁରସେନା ନାୟକ ବୃତ୍ରାସୁର ଶ୍ଳାଘନୀୟ ମୃତ୍ୟୁ ସମ୍ବନ୍ଧେ ବହୁ ଉପଦେଶ ଦେଲେ ମଧ୍ୟ ସେମାନେ ପଳାୟନରୁ ବିରତ ହୋଇ ନ ଥିଲେ, ଅବଶେଷରେ ବୃତ୍ରାସୁର ଏକାକୀ ଇନ୍ଦ୍ରଙ୍କର ସମ୍ମୁଖୀନ ହୁଅନ୍ତେ ଇନ୍ଦ୍ର ତାହା ପ୍ରତି ମହା ଗଦା ନିକ୍ଷେପ କରିଥିଲେ, ବୃତ୍ରାସୁର ସେହି ଗଦାକୁ ବାମହସ୍ତରେ ଧାରଣ କରି ଇନ୍ଦ୍ର ବାହନ ଐରାବତର ମସ୍ତକରେ ଆଘାତ କରିଥିଲା, ଏଥିରେ ଐରାବତ ସପ୍ତ ଧନୁ ପର୍ଯ୍ୟନ୍ତ ପଛକୁ ଘୁଞ୍ଚି ଯାଇଥିଲା, ଏଠାରେ ଧନୁର ପରିମାଣ ୪ ହାତ ବୋଲି କଳ୍ପନା କରି ଯାଇଅଛି । ଚବିଶ ଅଙ୍ଗୁଳିରେ ଏକହସ୍ତ, ଏବଂ ଚାରି ହସ୍ତରେ ଏକଧନୁ ହୋଇଥାଏ, ସ୍ମୃତି ଶାସ୍ତ୍ରର ପ୍ରମାଣାନୁସାରେ—

"ଚତୁର୍ବିଂଶାଙ୍ଗୁଳ ହସ୍ତ ସ୍ତଚତୁଷ୍କଂ ଧନୁଃ ସ୍ମୃତଂ"

ଏହି ସମୟରେ ଇନ୍ଦ୍ର ବଜ୍ର ଧାରଣ କରି ବୃତ୍ରାସୁରକୁ ବଧ କରିବାକୁ ଉଦ୍ୟତ ହୁଅନ୍ତେ, ସେ ଅତିଶୟ ଧର୍ମବୁଦ୍ଧି ନୀତିଜ୍ଞ ଓ ତେଜସ୍ୱୀ ଭାବରେ ଇନ୍ଦ୍ରଙ୍କର କାର୍ଯ୍ୟକଳାପକୁ ନିନ୍ଦା କରିଥିଲେ, ତାହାଙ୍କୁ ବ୍ରହ୍ମହନ୍ତା ଗୁରୁହନ୍ତା ଓ ନିଜର ଭ୍ରାତୃହନ୍ତା ବୋଲି କହିଥିଲେ, ପରେ ଇନ୍ଦ୍ରଙ୍କ ମୃତ୍ୟୁରେ ତାହାଙ୍କୁ ଅଗ୍ନି ସୁଦ୍ଧା ସ୍ପର୍ଶ କରିବ ନାହିଁ ଓ ଗୃଧ୍ରମାନେ ଅତିକଷ୍ଟରେ ମାଂସ ଭକ୍ଷଣ କରିବେ ବୋଲି କହିଥିଲେ, ବୃତ୍ରଅସୁର ହେଲେ ମଧ୍ୟ ସାଧାରଣ ଅସୁର ତୁଲ୍ୟ ମୋହ ଦମ୍ଭ ମାତ୍ସର୍ଯ୍ୟ ପ୍ରଭୃତି ଦ୍ୱାରା ସେ କବଳିତ ହୋଇ ନ ଥିଲା । ସେ ଭଗବଦ୍ ଭକ୍ତମାନଙ୍କର ପଦଧୂଳି ଲେଶାକାଙ୍କ୍ଷୀ ଥିଲା, ସେ ଭଗବାନ୍ ଶ୍ରୀହରିଙ୍କୁ ବହୁପ୍ରାର୍ଥନା କରି ନିଜର ମରି ଦେହକୁ ଭଗବାନଙ୍କ ଉଦ୍ଦେଶ୍ୟ ସିଦ୍ଧି ନିମିତ୍ତ ବିସର୍ଜନ କରିବାକୁ ପ୍ରସ୍ତୁତ ଥିବାର ପ୍ରକାଶ କରିଥିଲା ।



# ଦ୍ୱା ଦ ଶ ଅ ଧ୍ୟା ୟ ।

ଦ୍ୱାଦଶେଽତିବିଷଣ୍ଣେନ ସ୍ୱୟମୁତ୍‌ସାହିତେନ ତୁ ।
ମହେନ୍ଦ୍ରେଣ ମହାଯୁଦ୍ଧେ ବୃତ୍ରସ୍ୟ ବଧ ଈର୍ଯ୍ୟତେ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀଋଷିରୁବାଚ ।

ଏବଂ ଜିହାସୁର୍ନୃପ ଦେହମାଜୌ ମୃତ୍ୟୁଂ ବରଂ ବିଜୟାନ୍ମନ୍ୟମାନଃ ।
ଶୂଳଂ ପ୍ରଗୃହ୍ୟାଭ୍ୟପତତ୍ ସୁରେନ୍ଦ୍ରଂ ଯଥା ମହାପୁରୁଷଂ କୈଟଭୋଽପ୍ସୁ । ୧ ।
ତତୋ ଯୁଗାନ୍ତାଗ୍ନି କଠୋରଜିହ୍ୱମାବିଧ୍ୟ ଶୂଳଂ ତରସାସୁରେନ୍ଦ୍ରଃ ।
କ୍ଷିପ୍ତ୍ୱା ମହେନ୍ଦ୍ରାୟ ବିନଦ୍ୟ ବୀରୋ ହତୋଽସି ପାପେତି ରୁଷା ଜଗାଦ । ୨ ।

## ବୃତ୍ରାସୁର ବଧ ।

ଦ୍ୱାଦଶ ଅଧ୍ୟାୟରେ ଅତ୍ୟନ୍ତ ବିଷନ୍ନ ଇନ୍ଦ୍ର ବୃତ୍ରର କଥାରେ ଉତ୍‌ସାହିତ ହୋଇ ପୁଣି ଯୁଦ୍ଧରେ ପ୍ରବୃତ୍ତ ହେଲେ ଏବଂ ବୃତ୍ରକୁ ସଂହାର କରିବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ଯୁଦ୍ଧରେ ଜୟଲାଭ ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର ଏବଂ ଯୁଦ୍ଧକ୍ଷେତ୍ରରେ ପ୍ରାଣତ୍ୟାଗ ଶ୍ରେୟସ୍କର ମନେକରି ପ୍ରଳୟକାଳୀନ ଜଳରାଶି ମଧ୍ୟରେ କୈଟଭ ନାମକ ଅସୁର ଭଗବାନ୍ ବିଷ୍ଣୁଙ୍କ ପ୍ରତି ଧାବିତ ହେଲାପରି ବୃତ୍ରାସୁର ଇନ୍ଦ୍ରଙ୍କ ପ୍ରତି ଧାବିତ ହୋଇଥିଲା । ୧ ।

ବୀର ବୃତ୍ରାସୁର ପ୍ରଳୟକାଳୀନ ଅଗ୍ନି ତୁଲ୍ୟ ଭୀଷଣ ଶିଖା ସମ୍ପନ୍ନ ଶୂଳ ବେଗରେ ଘୁର୍ଣ୍ଣିତକରି ଇନ୍ଦ୍ରଙ୍କପ୍ରତି ନିକ୍ଷେପ କରିଥିଲା ଏବଂ ଉଚ୍ଚସ୍ୱରରେ ଗର୍ଜନ କରି କହିଲା :—"ରେ ପାପିଷ୍ଠ ! ତୁ ଏହିଥର ମଲୁ" । ୨ ।



( ବୃତ୍ରାସୁର ବଧ )

ଦୁଃଖିତ ହୋଇ ଶଚୀପତି, ବୃତ୍ର ବଚନେ ପୁଣ ମାତି । ତାହାଙ୍କୁ ରଣେ କଲେ ବଧ, ଦ୍ୱାଦଶ ଅଧ୍ୟାୟ ସମ୍ବାଦ

ଶ୍ରୀ ଶୁକଉବାଚ—

ଏମନ୍ତେ ସଂଗ୍ରାମେ ଅସୁର
ଛାଡ଼ିବ ବୋଲି କଳେବର
ଜୟରୁ ଭଲ ମୋ ମରଣ
ମନରେ କଲା ହେ ରାଜନ

ଶୂଳକୁ ଧରି ବୃତ୍ରାସୁର
ଧାଇଁଲା ଇନ୍ଦ୍ରର ଉପର
ଯେମନ୍ତେ କଇଟଭ ବୀର,
ଧାଇଁଲା ବିଷ୍ଣୁଙ୍କ ଉପର । ୧ ।
ଯୁଗାନ୍ତ ଅଗ୍ନି ପ୍ରାୟେ ତେଜେ
ଯେ ଶୂଳ ଅତ୍ୟନ୍ତ ବିରାଜେ

ବୃତ୍ର ଅସୁର ଚୂଡ଼ାମଣି
ଇନ୍ଦ୍ରକୁ ପ୍ରହାରିଲା ଆଣି
ଘୋର ଶବଦ ରୋଷେ କଲା
ପାପିଷ୍ଠ ମଲୁଟି ବୋଇଲା । ୨ ।

ଖେ ଆପତତ୍ ତଦ୍‌ବିଚଳଦ୍‌ଗ୍ରହୋଲ୍କବନ୍ନିରୀକ୍ଷ୍ୟ ଦୁଷ୍ପ୍ରେକ୍ଷ୍ୟମଜାତବିକ୍ଳବଃ ।
ବଜ୍ରେଣ ବଜ୍ରୀ ଶତପର୍ବଣାଚ୍ଛିନଦ୍‌ଭୁଜଞ୍ଚ ତସ୍ୟୋରଗରାଜଭୋଗମ୍ । ୩ ।
ଛିନ୍ନୈକବାହୁଃ ପରିଘେଣ ବୃତ୍ରଃ ସଂରବ୍ଧ ଆସାଦ୍ୟ ଗୃହୀତବଜ୍ରମ୍ ।
ହନୌ ତତାଡେନ୍ଦ୍ରମଥାମରେଭଂ ବଜ୍ରଞ୍ଚ ହସ୍ତାନ୍ନ୍ୟପତନ୍ମଘୋନଃ । ୪ ।
ବୃତ୍ରସ୍ୟ କର୍ମାତିମହାଦ୍‌ଭୁତଂ ତତ୍ ସୁରାସୁରାଶ୍ଚାରଣସିଦ୍ଧସଂଘାଃ ।
ଅପୂଜୟଂସ୍ତତ୍ ପୁରୁହୂତସଙ୍କଟଂ ନିରୀକ୍ଷ୍ୟ ହାହେତି ବିଚୁକ୍ରୁଶୁର୍ଭୃଶମ୍ । ୫ ।
ଇନ୍ଦ୍ରୋ ନ ବଜ୍ରଂ ଜଗୃହେ ବିଲଜ୍ଜିତଶ୍ଚ୍ୟୁତଂ ସ୍ୱହସ୍ତାଦରିସନ୍ନିଧୌ ପୁନଃ ।
ତମାହ ବୃତ୍ରୋ ହର ଆତ୍ତବଜ୍ରୋ ଜହି ସ୍ୱଶତ୍ରୁଂ ନ ବିଷାଦକାଳଃ । ୬ ।

---

ବଜ୍ରଧାରୀ ଇନ୍ଦ୍ର ବିଚରଣଶୀଳ ଗ୍ରହ ଓ ଉଲ୍‌କାତୁଲ୍ୟ ଆକାଶ ମାର୍ଗରେ ଆଗମନକାରୀ ଦୁର୍ଦ୍ଧର୍ଷନୀୟ ତେଜ ସମ୍ପନ୍ନ ଶୂଳକୁ ଦେଖି ଆଦୌ ବିହ୍ୱଳ ହୋଇ ନ ଥିଲେ, ସେ ଶତପର୍ବ ଯୁକ୍ତ ବଜ୍ର ଦ୍ୱାରା ବୃତ୍ରର ସେହି ଶୂଳ ଓ ସର୍ପରାଜ ବାସୁକି ତୁଲ୍ୟ ତାହାର ସୁବିଶାଳ ବାହୁ ଛେଦନ କରିଥିଲେ । ୩ ।

ଗୋଟିଏ ବାହୁ ବଜ୍ରଦ୍ୱାରା ଛିନ୍ନ ହେବାରୁ ବୃତ୍ର ଅତ୍ୟନ୍ତ କୁପିତ ହୋଇ ବଜ୍ରଧାରୀ ଇନ୍ଦ୍ରଙ୍କ ନିକଟକୁ ଗମନ କରି ତାହାଙ୍କର ଓ ଐରାବତ ହସ୍ତୀର ଗଣ୍ଡଦେଶରେ ପରିଘଦ୍ୱାରା ଆଘାତ କରିଥିଲା, ଫଳରେ ଇନ୍ଦ୍ରଙ୍କ ହସ୍ତରୁ ବଜ୍ର ଖସି ପଡ଼ିଲା । ୪ ।

ଦେବତା, ଅସୁର, ଚାରଣ, ସିଦ୍ଧ ପ୍ରଭୃତି ସମସ୍ତ ଦର୍ଶକବୃନ୍ଦ ବୃତ୍ରର ସେହି ଅତ୍ୟାଶ୍ଚର୍ଯ୍ୟ କର୍ମର ପ୍ରଶଂସା କରିଥିଲେ, କିନ୍ତୁ ଇନ୍ଦ୍ର ଏହି ବିପଦକାଳରେ ହାହାକାର କରି ବିଳାପ କରିବାକୁ ଲାଗିଲେ । ୫ ।

ଶତ୍ରୁର ସାକ୍ଷାତରେ ନିଜ ହସ୍ତରୁ ବଜ୍ର ଖସି ପଡ଼ିବାରୁ ଇନ୍ଦ୍ର ଲଜ୍ଜିତ ହୋଇ ତାହା ପୁନର୍ବାର ଉତ୍ତୋଳନ କରି ନ ଥିଲେ, ସେତେବେଳେ ବୃତ୍ର କହିଲେ, ରେ ଇନ୍ଦ୍ର ! ବଜ୍ର ଗ୍ରହଣ କରି ଶତ୍ରୁ ବଧ କର, ଏତେବେଳେ ବିଷାଦର ସମୟ ନୁହେଁ । ୬ ।

---

ଆକାଶୁ ଗ୍ରହ ଉଲ୍କା ମାନ
ଖସି ପଡ଼ିଲେ ତତକ୍ଷଣ
ଦୁଃସହ ଦେଖିଣ ଅସୁର
ଭୟେ କମ୍ପିଲେ ସୁରନର
ବଜ୍ରରେ କରି ଦେବରାଜ
ଛେଦିଲେ ତାର ଏକ ଭୁଜ ।୩।
ପରିଘ ଘେନି ଆର କରେ
ଧାଇଁଲା ଇନ୍ଦ୍ରର ଉପରେ

ଦେବରାଜ ନିକଟେ ଯାଇ
ସମ୍ମୁଖେ ପ୍ରହାରିଲା ନେଇ
ଇନ୍ଦ୍ର ହସ୍ତ ବଜ୍ର ଖସିଲା
ଅଧୋଭୂମିରେ ସେ ପଡ଼ିଲା ।୪।
ଦେଖି ଅଦ୍ଭୁତ ବୃତ୍ର କର୍ମ
ସିଦ୍ଧ କିନ୍ନର ଦେବଗଣ
ସକଳେ କଲେ ଧନ୍ୟ ଧନ୍ୟ
ଇନ୍ଦ୍ର ସଙ୍କଟେ ଛନ୍ନମନ

ଯେତେକ ସୈନ୍ୟ ଇନ୍ଦ୍ରଙ୍କର
ସକଳେ କଲେ ହାହାକାର ।୫।
ଲଜ୍ଜାରେ ବୃତ୍ରର ଅଗ୍ରତେ
ଇନ୍ଦ୍ର ନ ଧରେ ବଜ୍ର ହସ୍ତେ
ଇନ୍ଦ୍ରକୁ ଚାହିଁ ବୃତ୍ରାସୁର
ବଚନ କହଇ ମଧୁର
ମନରେ ବିଷାଦ ନ କର
ବଜ୍ର ଉଦ୍ଧରି ବେଗେ ମାର ।୬।

ଯୁଯୁତ୍ସତାଂ କୁତ୍ରଶଚାତତାୟିନାଂ ଜୟଃ ସଦୈକତ୍ର ନ ବୈ ପରାତ୍ମନାମ୍ ।
ବିନୈକମୁତ୍ପତ୍ତିଲୟସ୍ଥିତୀଶ୍ୱରଂ ସର୍ବଜ୍ଞମାଦ୍ୟଂ ପୁରୁଷଂ ସନାତନମ୍ । ୭ ।
ଲୋକାଃ ସପାଲା ଯସ୍ୟେମେ ଶ୍ୱସନ୍ତି ବିବଶା ବଶେ ।
ଦ୍ୱିଜା ଇବା ଶିଚା ବଦ୍ଧାଃ ସ କାଳ ଇହ କାରଣମ୍ । ୮ ।
ଓଜଃ ସହୋ ବଳଂ ପ୍ରାଣମମୃତଂ ମୃତ୍ୟୁମେବ ଚ ।
ତମଜ୍ଞାୟ ଜନୋ ହେତୁମାତ୍ମାନଂ ମନ୍ୟତେ ଜଡ଼ମ୍ । ୯ ।
ଯଥା ଦାରୁମୟୀ ନାରୀ ଯଥା ପତ୍ରମୟୋ ମୃଗଃ ।
ଏବମ୍ଭୂତାନି ମଘବନ୍ନୀଶତନ୍ତ୍ରାଣି ବିଦ୍ଧି ଭୋଃ । ୧୦ ।
ପୁରୁଷଃ ପ୍ରକୃତିର୍ବ୍ୟକ୍ତମାତ୍ମା ଭୂତେନ୍ଦ୍ରିୟାଶୟାଃ ।
ଶକ୍ନୁବନ୍ତ୍ୟସ୍ୟ ସର୍ଗାଦୌ ନ ବିନା ଯଦନୁଗ୍ରହାତ୍ । ୧୧ ।

---

ଏକମାତ୍ର ସୃଷ୍ଟି, ସ୍ଥିତି, ପ୍ରଳୟକର୍ତ୍ତା, ସର୍ବଜ୍ଞ ସେହି ଆଦ୍ୟପୁରୁଷ ପରମେଶ୍ୱରଙ୍କ ବ୍ୟତୀତ ପରାଧୀନ ଯୁଦ୍ଧାଭିଳାଷୀ ଅସ୍ତ୍ରଧାରୀ ମାନଙ୍କ ମଧ୍ୟରେ କେହି ସର୍ବଦା ଜୟୀ ହୋଇ ନ ପାରେ, ସମୟ ଅନୁସାରେ ଜୟ ପରାଜୟ ଲାଗି ରହିଅଛି । ୭ ।

ଲୋକପାଳବର୍ଗଙ୍କ ସହିତ ଏହି ସମସ୍ତ ଲୋକ ଯାହାଙ୍କର ଅଧୀନରେ ଜାଲବଦ୍ଧ ପକ୍ଷୀଗଣ ତୁଲ୍ୟ ସ୍ୱାଧୀନତା ଶୂନ୍ୟ ହୋଇ ଜୀବନ ଯାପନ କରନ୍ତି, ସେହି କାଳରୂପୀ ଭଗବାନହିଁ ଜୟ ପରାଜୟର କାରଣ ।୮।

ତେଜ, ସାହସ, ବଳ ପ୍ରାଣ, ଅମରତ୍ୱ ଏବଂ ମୃତ୍ୟୁ ଏମାନ ଯାହାଙ୍କର ସ୍ୱରୂପ ସେହି କାଳରୂପୀ ଭଗବାନଙ୍କୁ କାରଣ ବୋଲି ନ ଜାଣି ଲୋକ ଜଡ଼ ଦେହକୁ କାରଣ ବୋଲି ମନେ କରେ । ୯ ।

ହେ ଇନ୍ଦ୍ର ! କାଷ୍ଠ ନିର୍ମିତ ନାରୀ ଏବଂ ପତ୍ର ନିର୍ମିତ ମୃଗର କୌଣସି ସ୍ୱାଧୀନତା ନାହିଁ, ସେହିପରି ଭୂତବର୍ଗ ମଧ୍ୟ ସ୍ୱାଧୀନ ନୁହନ୍ତି, ସମସ୍ତେ ଭଗବାନଙ୍କର ଅଧୀନ । ୧୦ ।

ପୁରୁଷ, ପ୍ରକୃତି, ମହତ୍ତତ୍ତ୍ୱ, ଅହଙ୍କାର, ପଞ୍ଚଭୂତ, ଇନ୍ଦ୍ରିୟବର୍ଗ ଓ ମନ ଏମାନେ ଭଗବାନଙ୍କ ଅନୁଗ୍ରହ ବ୍ୟତିରେକେ ଜଗତରେ କୌଣସି ବସ୍ତୁର ସୃଷ୍ଟି ସମ୍ବନ୍ଧେ ଅସମର୍ଥ । ୧୧ ।

---

ଯୁଦ୍ଧ ଇଚ୍ଛଇ ଯେଉଁ ପୁର
ଜୟ ଦୁସ୍ତର ଟି ତାହାର
ଯେ ଜନ ରଣେ ଜିତ ହୋଇ
ଜୟର ଲେଶ ତାର ନାହିଁ
ଉତ୍ପତ୍ତି ପାଳନ ସଂହାର
ଯେ ପ୍ରଭୁ ଏହାଙ୍କ ଈଶ୍ୱର
ସର୍ବଜ୍ଞ ଆଦ୍ୟ ସନାତନ
ଅଖିଳ ପୁରୁଷ ପୁରାଣ

ତା ବିନୁ ଜୟ ବା ଅଜୟ
କାହାର ବୋଲେ ହୋଇ କହ । ୭
ଯେ ପ୍ରଭୁ ଅଖିଳର ଈଶ
ଅଖିଳ ଲୋକ ଯାର ବଶ
କାଳ ସ୍ୱରୂପ ସେ ଈଶ୍ୱର
ମୃତ୍ୟୁ ଅମୃତ୍ୟୁ ରୂପଧର
ସକଳ ହେତୁ ସେ ଅଟଇ
ତାହାଙ୍କୁ ଅଜ୍ଞ ନ ଜାଣଇ ।

କାଷ୍ଠର ପିତୁଳି ଯେସନ
ଜଗତ ତାହାର ଭିଆଣ
ଯେମନ୍ତ ପତ୍ରମୟ ମୃଗ
ପ୍ରାଣୀ ତା ବଶେ ମହାଭାଗ । ୮-୧୦
ପ୍ରକୃତି ପୁରୁଷ ଯେ ଦୁଇ
ତା ବିନୁ ଜଡ଼ପ୍ରାୟ ହୋଇ
ସୃଷ୍ଟି କରିବା ଅବା କେହି
ତା ବିନୁ ଯେବେକ ଅଛଇ

ଅବଦ୍ୱାନେବମାତ୍ମାନଂ ମନ୍ୟତେଽନୀଶମୀଶ୍ୱରମ୍ ।
ଭୂତୈଃ ସୃଜତି ଭୂତାନି ଗ୍ରସତେ ତାନି ତୈଃ ସ୍ୱୟମ୍ । ୧୨ ।
ଆୟୁଃ ଶ୍ରୀଃ କୀର୍ତ୍ତିରୈଶ୍ୱର୍ଯ୍ୟମାଶିଷଃ ପୁରୁଷସ୍ୟ ଯାଃ ।
ଭବନ୍ତ୍ୟେବ ହି ତତ୍‌କାଲେ ଯଥାନିଚ୍ଛୋର୍ବିପର୍ଯ୍ୟୟାଃ । ୧୩ ।
ତସ୍ମାଦକୀର୍ତ୍ତିଯଶସୋର୍ଜୟାପଜୟୟୋରପି ।
ସମଃ ସ୍ୟାତ୍ ସୁଖଦୁଃଖାଭ୍ୟାଂ ମୃତ୍ୟୁଜୀବିତୟୋସ୍ତଥା । ୧୪ ।
ସତ୍ତ୍ୱଂ ରଜସ୍ତମ ଇତି ପ୍ରକୃତେର୍ନାତ୍ମନୋ ଗୁଣାଃ ।
ତତ୍ର ସାକ୍ଷିଣମାତ୍ମାନଂ ଯୋ ବେଦ ସ ନ ବଧ୍ୟତେ । ୧୫ ।
ପଶ୍ୟ ମାଂ ନିର୍ଜିତଂ ଶତ୍ରୁ ବୃକ୍ଣାୟୁଧଭୁଜଂ ମୃଧେ ।
ଘଟମାନଂ ଯଥାଶକ୍ତି ତବ ପ୍ରାଣଜିହୀର୍ଷୟା । ୧୬ ।

---

ସୃଷ୍ଟି ତତ୍ତ୍ୱବିଷୟରେ ଅନଭିଜ୍ଞ ବ୍ୟକ୍ତି ଈଶ୍ୱର ନିରପେକ୍ଷ ସ୍ୱଭାବରେ କେବଳ ଜୀବକୁ ସ୍ୱାଧୀନ କର୍ତ୍ତା ବୋଲି ମନେ କରନ୍ତି । ପ୍ରକୃତ ପକ୍ଷରେ ସ୍ୱୟଂ ଭଗବାନହିଁ ଭୂତଦ୍ୱାରା ଭୂତ ସୃଷ୍ଟି କରିଥାଆନ୍ତି ଏବଂ ଭୂତଦ୍ୱାରା ଭୂତକୁ ବିନଷ୍ଟ କରିଥାଆନ୍ତି । ୧୨ ।

ଆୟୁ, ସୌନ୍ଦର୍ଯ୍ୟ, କୀର୍ତ୍ତି, ଐଶ୍ୱର୍ଯ୍ୟ ପ୍ରଭୃତି ଯାହା ଲୋକ ପକ୍ଷରେ ବାଞ୍ଛନୀୟ, ଉପଯୁକ୍ତ କାଳରେ ଯେପରି ତତ୍‌ସମୁଦାୟ ହୋଇଥାଏ, କିନ୍ତୁ ସେଥିରେ ଅନିଚ୍ଛୁକ ହେଲେ ବିପରୀତ ଫଳ ଘଟିଥାଏ । ୧୩ ।

ଯେତେବେଳେ ସମସ୍ତ ଈଶ୍ୱରାଧୀନ ସେତେବେଳେ ଯଶ, ଅପଯଶ, ଜୟ, ପରାଜୟ, ସୁଖ ଦୁଃଖ, ଜୀବନ ମରଣ ପ୍ରଭୃତି ସମସ୍ତ ଅବସ୍ଥାରେ ସମାନ ଅର୍ଥାତ୍ ହର୍ଷ ବିଷାଦ ରହିବା ଉଚିତ୍ । ୧୪ ।

ସତ୍ତ୍ୱ, ରଜଃ, ତମଃ, ଏହି ତିନୋଟି ଗୁଣ ପ୍ରକୃତିର ସ୍ୱରୂପ, ଆତ୍ମାର ନୁହେଁ, ଯେଉଁ ବ୍ୟକ୍ତି ଆତ୍ମାକୁ ସେହି ତ୍ରିଗୁଣାତ୍ମିକା ପ୍ରକୃତିର ସାକ୍ଷୀ ବୋଲି ଜାଣେ, ତାହାକୁ ହର୍ଷ ବିଷାଦ ପ୍ରଭୃତି ସାଂସାରିକ ବନ୍ଧନରେ ବଧ ହେବାକୁ ହୁଏ ନାହିଁ । ୧୫ ।

ହେ ଇନ୍ଦ୍ର ! ଯୁଦ୍ଧରେ ମୋର ଅସ୍ତ୍ର ଓ ବାହୁ ଛିନ୍ନ ହୋଇଅଛି, ମୁଁ ପ୍ରାୟ ପରାଜିତ, ଅଥଚ, ତୁମ୍ଭର ପ୍ରାଣ ନାଶ ନିମନ୍ତେ, ମୁଁ ଯଥା ଶକ୍ତି ଚେଷ୍ଟା କରୁଅଛି, ଏହା ଦେଖ । ୧୬ ।

---

ସକଳ ଆତ୍ମା ରୂପ ସେହି
ଅଜ୍ଞାନୀ ଜାଣିବ ତା କାହିଁ
ସେହି ପ୍ରାଣିଙ୍କ ସୃଷ୍ଟିକରି
ପ୍ରତିପାଳନକୁ ଆଚରି
ଗ୍ରାସଇ କାଳରୂପ ହୋଇ
ଧର୍ମ ଅଧର୍ମ ରୂପ ସେହି ।୧୧,୧୨
ଆୟୁ ସମ୍ପଦ କୀର୍ତ୍ତି ଯେତେ
ପ୍ରାଣୀର ହୁଅଇ ଯୁଗତେ

ସେ ଯାକୁ ପ୍ରସନ୍ନ ହୁଅଇ
ଅଷ୍ଟ ଐଶ୍ୱର୍ଯ୍ୟ ତାର ହୋଇ
ସୁଖ ଦୁଃଖ ମୃତ୍ୟୁ ଜୀବତ
ଏ ସର୍ବ ଈଶ୍ୱର ଆୟତ୍ତ
ଏ ବୋଲି ଇନ୍ଦ୍ର ସମ ହୁଅ
ହର୍ଷ ବିଷାଦକୁ ନ ପାଅ ।୧୩,୧୪
ଯେ ସତ୍ତ୍ୱ ରଜ ତମ ଜାଣ
ପ୍ରକୃତି ଗୁଣ ଏ ପ୍ରମାଣ

ଆତ୍ମାଟି ସାକ୍ଷୀ ବୋଲି ଜାଣ
ସେ ଯାକୁ ହୁଅଇ ପ୍ରସନ୍ନ
ସଂସାରେ ବଧ ସେ ନୁହଇ
ସକଳ ପାପୁଁ ସେ ତରଇ
ରଣରେ କ୍ଷୀଣ ଭୁଜ ହୋଇ
ହେ ଇନ୍ଦ୍ର ! ଦେଖ ମୁଁ ଅଛଇ
ଜୟ ବା ଅଜୟ କାହାର
ଜାଣିବ କେ ବିନା ଈଶ୍ୱର ।୧୫,୧୬

ପ୍ରାଣଗ୍ଲହୋଽୟଂ ସମର ଇଷ୍ୱକ୍ଷୋ ବାହନାସନଃ ।
ଅତ୍ର ନ ଜ୍ଞାୟତେଽମୁଷ୍ୟ ଜୟୋଽମୁଷ୍ୟ ପରାଜୟଃ । ୧୭ ।
ଶ୍ରୀଶୁକ ଉବାଚ ।
ଇନ୍ଦ୍ରୋ ବୃତ୍ରବଚଃଶ୍ରୁତ୍ୱା ଗତାଲୀକମପୂଜୟତ୍ ।
ଗୃହୀତବଜ୍ରଃ ପ୍ରହସଂସ୍ତମାହ ଗତବିସ୍ମୟଃ । ୧୮ ।
ଅହୋ ଦାନବ ସିଦ୍ଧୋଽସି ଯସ୍ୟ ତେ ମତିରୀଦୃଶୀ ।
ଭକ୍ତଃ ସର୍ବାତ୍ମନାତ୍ମାନଂ ସୁହୃଦଂ ଜଗଦୀଶ୍ୱରମ୍ । ୧୯ ।
ଭବାନତାର୍ଷୀନ୍ମାୟାଂ ବୈ ବୈଷ୍ଣବୀଂ ଜନମୋହିନୀମ୍ ।
ଯଦ୍‌ବିହାୟାସୁରଂ ଭାବଂ ମହାପୁରୁଷତାଂ ଗତଃ । ୨୦ ।
ଖଲ୍ୱିଦଂ ମହଦାଶ୍ଚର୍ଯ୍ୟଂ ଯଦ୍ରଜଃ ପ୍ରକୃତେସ୍ତବ ।
ବାସୁଦେବେ ଭଗବତି ସତ୍ତ୍ୱାତ୍ମନି ଦୃଢ଼ା ମତିଃ । ୨୧ ।

---

ଏହି ଯୁଦ୍ଧ ବ୍ୟାପାର ଗୋଟିଏ ଦ୍ୟୂତ କ୍ରୀଡ଼ାପରି, ଏଥିରେ ପ୍ରାଣହିଁ ପରସ୍ପର ପରସ୍ପର ମଧ୍ୟରେ ପଣ, ବାଣ ଗୁଡ଼ିକ ପଶାକାଠି, ହସ୍ତି ଅଶ୍ୱ ପ୍ରଭୃତି ବାହନମାନ ଫଳକ ବା ଗୋଟି, ଯୁଦ୍ଧରୂପ ଦ୍ୟୂତକ୍ରୀଡ଼ାରେ କିଏ ଜୟୀ କିଏ ପରାଜୟୀ ହେବ, କୁହା ଯାଇ ନ ପାରେ । ୧୭ ।

ଶ୍ରୀଶୁକଦେବ କହିଲେ :—

ଇନ୍ଦ୍ର ବୃତ୍ରାସୁରର ଅକପଟ ବାକ୍ୟ ଶ୍ରବଣକରି ବିସ୍ମୟାନ୍ୱିତ ହୋଇ ତାହାକୁ ପ୍ରଶଂସା କରିଥିଲେ ଏବଂ ହାସ୍ୟ ପୂର୍ବକ, ପୁନର୍ବାର ବଜ୍ର ଗ୍ରହଣ କରି ତାହାକୁ କହିଲେ । ୧୮ ।

ହେ ଦାନବ ! ତୁମ୍ଭର ଉତ୍ତମ ବୁଦ୍ଧି ହେତୁ ତୁମ୍ଭେ ନିଶ୍ଚୟ ସିଦ୍ଧି ଲାଭ କରିଅଛ, ତୁମ୍ଭେ ସମସ୍ତଙ୍କର ସୁହୃଦ୍, ଅନ୍ତର୍ଯାମୀ, ଜଗଦୀଶ୍ୱରଙ୍କୁ ସର୍ବାନ୍ତଃକରଣରେ ସେବା କରିଅଛ । ୧୯ ।

ଲୋକର ମୋହ ଜନନୀ ବୈଷ୍ଣବୀମାୟା, ତୁମ୍ଭେ ନିଶ୍ଚୟ ସେହି ମାୟାପାଶରୁ ଉତ୍ତୀର୍ଣ୍ଣ ହୋଇଅଛ । ଯେହେତୁ ତୁମ୍ଭେ ଆସୁରୀ ଭାବ ପରିତ୍ୟାଗ କରି ମହାପୁରୁଷ ଭାବ ଲାଭ କରିଅଛ । ୨୦ ।

ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ଯେ ତୁମ୍ଭେ ରାଜସିକ ଭାବ ସମ୍ପନ୍ନ ଅସୁର ହେଲେ ମଧ୍ୟ ନିର୍ମଳ ସତ୍ତ୍ୱ ସ୍ୱରୂପ ଭଗବାନ୍ ଶ୍ରୀହରିଙ୍କ ପ୍ରତି ତୁମ୍ଭର ଅଚଳା ବୁଦ୍ଧି । ୨୧ ।

---

ଶର ସମୂହ ପଶାକାଠି
ଏ ଚତୁରଙ୍ଗ ବଳ ଗୋଟି
ଜୀବନ ହିତ ଯୁଆ ରଣେ
କେ ଜାଣି କେ ହାରେ କ୍ଷଣେ ।୧୭।

ଶ୍ରୀଶୁକ ଉବାଚ—

ଶୁଣ କହିବା ନୃପମଣି
ବୃତ୍ରର ବାକ୍ୟ ଇନ୍ଦ୍ର ଶୁଣି
ବୃତ୍ରକୁ ଧନ୍ୟ ଧନ୍ୟ କରି
ହସି କହିଲେ ବଜ୍ରଧାରୀ
ଅହୋ ଦାନବ ସିଦ୍ଧ ତୁହି
ଯେତେଣ ତୁ ସିଦ୍ଧମତି ହୋଇ
ସକଳ ଆତ୍ମା ଯେ ଈଶ୍ୱର
ଭଜିଲୁ ଚରଣ ତାଙ୍କର
ଜନମୋହିନୀ ବିଷ୍ଣୁମାୟା
ଦାନବ ଛେଦିଲୁ ତୁ ଯାହା
ଅସୁର ଭାବ କରି ଦୂର
କଲୁ ତୁ ସ୍ୱର୍ଲୋକ ଆଶ୍ରର
ଅହୋ ଆଶ୍ଚର୍ଯ୍ୟ ବଡ଼ ମୋର
ସ୍ୱଭାବେ ରଜ ଗୁଣ ତୋର
ଅଖିଳ ବ୍ରହ୍ମାଣ୍ଡର ପତି
ତହିଁ ତୋହର ଦୃଢ଼ମତି
ପରମ ବ୍ରହ୍ମ ହରି ଯେହି
ତା ତହିଁ ଯାର ଭକ୍ତି ହୋଇ

ଯସ୍ୟ ଭକ୍ତିର୍ଭଗବତି ହରୌ ନିଃଶ୍ରେୟସେଶ୍ୱରେ ।
ବିକ୍ରୀଡ଼ତୋଽମୃତାମ୍ଭୋଧୌ କିଂ କ୍ଷୁଦ୍ରୈଃ ଖାତକୋଦକୈଃ ।୨୨।

ଶ୍ରୀଶୁକ ଉବାଚ ।
ଇତି ବ୍ରୁବାଣାବନ୍ୟୋନ୍ୟଂ ଧର୍ମଜିଜ୍ଞାସୟା ନୃପ ।
ଯୁଯୁଧାତେ ମହାବୀର୍ଯ୍ୟାବିନ୍ଦ୍ରବୃତ୍ରୌ ଯୁଧାଂ ପତୀ ।୨୩।
ଆବିଧ୍ୟ ପରିଘଂ ବୃତ୍ରଃ କାର୍ଷ୍ଣାୟସମରିନ୍ଦମଃ ।
ଇନ୍ଦ୍ରାୟ ପ୍ରାହିଣୋଦ୍‌ଘୋରଂ ବାମହସ୍ତେନ ମାରିଷ ।୨୪।
ସ ତୁ ବୃତ୍ରସ୍ୟ ପରିଘଂ କରଞ୍ଚ ପରିଘୋପମମ୍ ।
ଚିଚ୍ଛେଦ ଯୁଗପଦ୍ଦେବୋ ବଜ୍ରେଣ ଶତପର୍ବଣା ।୨୫।
ଦୋର୍ଭ୍ୟାମୁତ୍କୃତ୍ତମୂଳାଭ୍ୟାଂ ବଭୌ ରକ୍ତସ୍ରବୋଽସୁରଃ ।
ଛିନ୍ନପକ୍ଷୋ ଯଥା ଗୋତ୍ରଃ ଖାଦ୍‌ଭ୍ରଷ୍ଟୋ ବଜ୍ରିଣା ହତଃ ।୨୬।

---

ଯେ ପରମମଙ୍ଗଳର ଅଧିପତି, ସେହି ଭଗବାନ୍ ଶ୍ରୀହରିଙ୍କ ପ୍ରତି ଯାହାଙ୍କର ଭକ୍ତି ଅଛି, ସେ ଅମୃତ ସାଗରରେ ବିହାର କରନ୍ତି । ସେମାନଙ୍କ ପକ୍ଷରେ ତୁଚ୍ଛ ଗର୍ତ୍ତ ଜଳ ସଦୃଶ ସ୍ୱର୍ଗାଦିରେ କି ପ୍ରୟୋଜନ ? ।୨୨।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ଯୋଦ୍ଧାମାନଙ୍କ ମଧ୍ୟରେ ପ୍ରଧାନ ବଳଶାଳୀ ଇନ୍ଦ୍ର ଓ ବୃତ୍ରାସୁର, ପରସ୍ପର ମଧ୍ୟରେ ଏହିପରି ଧର୍ମ ବୁଦ୍ଧିରେ କଥୋପକଥନ କରୁ କରୁ ପୁନର୍ବାର ଯୁଦ୍ଧ ଆରମ୍ଭ କଲେ । ୨୩

ଶତ୍ରୁ ଦମନଶୀଳ ବୃତ୍ର ବାମହସ୍ତରେ କୃଷ୍ଣବର୍ଣ୍ଣ ଲୌହ ନିର୍ମିତ ପରିଘ ନାମକ ଭୀଷଣ ଅସ୍ତ୍ର ଘୂର୍ଣ୍ଣାୟମାନ କରି ଇନ୍ଦ୍ରଙ୍କ ପ୍ରତି ନିକ୍ଷେପ କଲା ।୨୪।

ଦେବରାଜ ଇନ୍ଦ୍ର ଶତପର୍ବ ଯୁକ୍ତ ବଜ୍ର ଦ୍ୱାରା ବୃତ୍ରଙ୍କର ସେହି ପରିଘ ଅସ୍ତ୍ର ଏବଂ ତତ୍ସଦୃଶ ହସ୍ତ ଦ୍ୱୟକୁ ଏକକାଳରେ ଛେଦନ କରିଥିଲେ ।୨୫।

ବୃତ୍ରାସୁରର ବାହୁ ଦ୍ୱୟ ଖଣ୍ଡିତ ହେବାରୁ ଅଜସ୍ର ରକ୍ତଧାର ବୋହିଲା, ତହୁଁ ସେହି ଅସୁର ଇନ୍ଦ୍ର ବଜ୍ରରେ ଛିନ୍ନ ପକ୍ଷ ହୋଇ ପର୍ବତ ଆକାଶରୁ ଭୂତଳରେ ପତିତ ହେଲପରି ପତିତ ହୋଇଥିଲା ।୨୬।

---

ଅମୃତ ସିନ୍ଧୁରେ ସେ ଜନ
କ୍ରୀଡ଼ା କରଇ ଅନୁକ୍ଷଣ
କି କାର୍ଯ୍ୟ କୂପ ତଡ଼ାଗ ତାର
ଯେ ସ୍ୱର୍ଗ ଭୋଗଟି ଅସାର ।୧୮-୨୨

ଶ୍ରୀବାଦରାୟଣିରୁବାଚ—

ଅନ୍ୟୋନ୍ୟାଽନ୍ୟ ଧର୍ମକୁ କହିଲେ
ପୁଣିହିଁ ଯୁଦ୍ଧ ଆରମ୍ଭିଲେ
ଅଶ୍ରାନ୍ତ ଭାର ଦୁଇ ଜଣ
କରି ଲଗିଲେ ଘୋର ରଣ ।୨୩।
ବୃତ୍ର ପରିଘ କରେ ଲଇ
ଇନ୍ଦ୍ରକୁ ପ୍ରହାରିଲା ନେଇ
ପରିଘ ଘେନି ବାମ କରେ
ଶବଦ କଲା ମହା ଘୋରେ
କର ପରିଘ ଏକାବେଳେ
ଇନ୍ଦ୍ର ଛେଦିଲେ ଅବହେଳେ ୨୪,୨୫
ବୃତ୍ରର ଗଳି ଦୁଇକର
ରକତ ହୋଇ ଜର ଜର
ପକ୍ଷ ଛିଡ଼ନ୍ତେ ବଜ୍ର ଘାତେ
ଯେସନେ ପଡ଼ନ୍ତି ପର୍ବତେ ।୨୬।

କୃତ୍ୱାଧରାଂ ହନୁଂ ଭୂମୌ ଦୈତ୍ୟୋ ଦିବ୍ୟୁତ୍ତରାଂ ହନୁମ୍ ।
ନଭୋଗମ୍ଭୀରବକ୍ତ୍ରେଣ ଲେଲିହୋଲ୍ବଣଜିହ୍ୱୟା । ୨୭ ।
ଦଂଷ୍ଟ୍ରାଭିଃ କାଲକଳ୍ପାଭିର୍ଗ୍ରସନ୍ନିବ ଜଗତ୍ତ୍ରୟମ୍ ।
ଅତିମାତ୍ରମହାକାୟ ଆକ୍ଷିପଂସ୍ତରସା ଗିରୀନ୍ । ୨୮ ।
ଗିରିରାଟ୍ ପାଦଚାରୀବ ପଦ୍ଭ୍ୟାଂ ନିର୍ଜରୟନ୍ମହୀମ୍ ।
ଜଗ୍ରାସ ସ ସମାସାଦ୍ୟ ବଜ୍ରିଣଂ ସହବାହନମ୍ । ୨୯ ।
ମହାପ୍ରାଣୋ ମହାବୀର୍ଯ୍ୟୋ ମହାସର୍ପ ଇବ ଦ୍ୱିପମ୍ ।
ବୃତ୍ରଗ୍ରସ୍ତଂ ତମାଲୋକ୍ୟ ସପ୍ରଜାପତୟଃ ସୁରାଃ-
ହା କଷ୍ଟମିତି ନିର୍ବିଣ୍ଣାଶ୍ଚୁକ୍ରୁଶୁଃ ସମହର୍ଷୟଃ । ୩୦ ।
ନିଗୀର୍ଣ୍ଣୋଽପ୍ୟସୁରେନ୍ଦ୍ରେଣ ନ ମମାରୋଦରଂ ଗତଃ ।
ମହାପୁରୁଷସନ୍ନଦ୍ଧୋ ଯୋଗମାୟାବଲେନ ଚ । ୩୧ ।

---

ଅତ୍ୟନ୍ତ ବିଶାଳ ଦେହ ସମ୍ପନ୍ନ ବୃତ୍ରାସୁରର ହନୁ ଦେଶର ନିମ୍ନତମ ଦେଶ ଭୂତଳରେ ଏବଂ ଊର୍ଦ୍ଧ୍ୱତନ ଅଂଶ ସ୍ୱର୍ଗରେ ସଂଯୋଜିତ ହୋଇ ମୃତ୍ୟୁ ତୁଲ୍ୟ ଭୟଙ୍କର ଦନ୍ତ ପଂକ୍ତିଦ୍ୱାରା ତ୍ରିଭୁବନକୁ ଚର୍ବଣ କରିବାକୁ ଲାଗିଲା, ତାହାର ଅସାଧାରଣ ବେଗରେ ପର୍ବତ ଗୁଡ଼ିକ କମ୍ପିତ ହେଲା, ତାହାକୁ ଦେଖି ମନେ ହେଲା ଯେପରି ପର୍ବତରାଜ ହିମାଳୟ ପଦସଞ୍ଚରଣ କରୁଅଛି, ଏପରି ସେହି ଅସୁର ଐରାବତ ହସ୍ତୀସହ ଇନ୍ଦ୍ରଙ୍କୁ ସର୍ପତୁଲ୍ୟ ଲକ୍ଷଣ ଜିହ୍ୱା ଦ୍ୱାରା ଟାଣି ନେଇ ଆକାଶ ତୁଲ୍ୟ ମହା ବିସ୍ତୃତ ମୁଖ ମଧ୍ୟରେ ଗ୍ରାସ କଲା ।୨୭-୨୯।

ମହା ବଳଶାଳୀ, ମହା ପ୍ରଭାବସମ୍ପନ୍ନ, ମହାସର୍ପ ଯେପରି ହସ୍ତୀକୁ ଭକ୍ଷଣ କରେ ବୃତ୍ର ମଧ୍ୟ ସେହିପରି ଐରାବତ ସହ ଇନ୍ଦ୍ରଙ୍କୁ ଭକ୍ଷଣ କରିଥିଲା । ମହର୍ଷି ଓ ପ୍ରଜାପତିମାନେ ଏହା ଦେଖି ଅତ୍ୟନ୍ତ କ୍ଷୁର୍ଣ୍ଣ ହୋଇ ବିଳାପ କରିଥିଲେ । ୩୦ ।

ଇନ୍ଦ୍ର ମହାସୁର ବୃତ୍ର କର୍ତ୍ତୃକ ଭକ୍ଷିତ ହୋଇ ତାହାଙ୍କର ଉଦର ମଧ୍ୟରେ ପ୍ରବିଷ୍ଟ ହେଲେ ମଧ୍ୟ କବଚରୂପୀ ନାରାୟଣ କର୍ତ୍ତୃକ ସୁରକ୍ଷିତ ହୋଇ ଭଗବଦ୍ ମାୟା ଓ ସ୍ୱୀୟ ଯୋଗ ଶକ୍ତି ବଳରେ ବିନଷ୍ଟ ହୋଇ ନ ଥିଲେ । ୩୧ ।

---

ଅଧର ହନୁ ତା ଭୂମିରେ
ଉପର ହନୁ ତା ସ୍ୱର୍ଗରେ
ଆକାଶ ଗମ୍ଭୀର ମୁଖରେ
ଲହଲ କଠୋର ଜିହ୍ୱାରେ
କାଳର ପ୍ରାୟେକ ଦଂଷ୍ଟ୍ରାମାନ
ଗ୍ରାସିବ ଯେସନେ ତ୍ରିଭୁବନ
ଅତ୍ୟନ୍ତ ଶରୀର ବିସ୍ତାର
ଯେସନେ ଧାଇଲ ମହାଗିରି

ପାଦେ ଅବନୀ କମ୍ପାଇଲା
ଇନ୍ଦ୍ରର ନିକଟେ ମିଳିଲା
ଇନ୍ଦ୍ରକୁ ଗଜେନ୍ଦ୍ର ସହିତ
ଗିଳିଲା ବୃତ୍ର ମହାଦୈତ୍ୟ ।୨୭-୨୯
ସ୍ୱଚ୍ଛେ ଗିଳିଲା ଅସୁର
ଗଜକୁ ଯେସନେ ସର୍ପବର
ଦେଖି ଇନ୍ଦ୍ରକୁ ଗିଳିବାର
ବ୍ରହ୍ମାଦି ଯେତେ ସୁର ନର

ସକଳେ କଲେ ହାହାକାର
ଇନ୍ଦ୍ରକୁ ଗିଳିଲା ଅସୁର । ୩୦ ।
ଅସୁର ଉଦରେଣ ଥାଇ
ନାଶ ନୋହିଲେ ସୁର ସାଇଁ
ମହାପୁରୁଷ ବର୍ମେ କରି
ଯେଣୁ ଯୋଗମାୟା ଆବୋରି
ବଜ୍ରେ ଛେଦିଲେ ପେଟ ତାର
ଗର୍ଭରୁ ହୋଇଲେ ବାହାର

ଭିତ୍ତ୍ୱା ବଜ୍ରେଣ ତତ୍କୁକ୍ଷିଂ ନିଷ୍କ୍ରମ୍ୟ ବଲଭିଦ୍‌ବିଭୁଃ ।
ଉଚ୍ଚକର୍ତ୍ତ ଶିରଃ ଶତ୍ରୋର୍ଗିରିଶୃଙ୍ଗମିବୌଜସା । ୩୨ ।
ବଜ୍ରସ୍ତୁ ତତ୍କନ୍ଧର ମାଶୁବେଗଃ କୃନ୍ତନ୍ ସମନ୍ତାତ୍ ପରିବର୍ତ୍ତମାନଃ ।
ନ୍ୟପାତୟତ୍ ତାବଦହର୍ଗଣେନ ଯୋ ଜ୍ୟୋତିଷାମୟନେ ବାର୍ତ୍ରହତ୍ୟେ ।୩୩।
ତଦା ଚ ଖେ ଦୁନ୍ଦୁଭୟୋ ବିନେଦୁର୍ଗନ୍ଧର୍ବସିଦ୍ଧାଃ ସମହର୍ଷିସଂଘାଃ ।
ବାର୍ତ୍ରଘ୍ନଲିଙ୍ଗୈ ସ୍ତମଭିଷ୍ଟୁବାନା ମନ୍ତ୍ରୈର୍ମୁଦା କୁସୁମୈରଭ୍ୟବର୍ଷନ୍ । ୩୪ ।
ବୃତ୍ରସ୍ୟ ଦେହାନ୍ନିଷ୍କ୍ରାନ୍ତମାତ୍ମଜ୍ୟୋତିରରିନ୍ଦମ ।
ପଶ୍ୟତାଂ ସର୍ବଦେବାନାମଲୋକଂ ସମପଦ୍ୟତ । ୩୫ ।
ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ବୃତ୍ରବଧୋ ନାମ ଦ୍ୱାଦଶୋଽଧ୍ୟାୟଃ । ୧୨ ।

---

ପ୍ରଭାବଶାଳୀ ଇନ୍ଦ୍ର ବଜ୍ର ଦ୍ୱାରା ବୃତ୍ରାସୁରର ଉଦର ବିଦାରଣ କରି ବହିର୍ଗତ ହେଲେ ଏବଂ ସ୍ୱୀୟ ବଳରେ ପର୍ବତଶୃଙ୍ଗ ତୁଲ୍ୟ ଶତ୍ରୁର ମସ୍ତକ ଛେଦନ କରିଥିଲେ । ୩୨ ।

ଇନ୍ଦ୍ରଙ୍କର ବଜ୍ର ଅତ୍ୟନ୍ତ ବେଗବାନ୍ ହେଲେ ମଧ୍ୟ ବୃତ୍ରାସୁର ହତ୍ୟା ନିମିତ୍ତ ଚତୁର୍ଦ୍ଦିଗରେ ଘୂର୍ଣ୍ଣାୟମାନ ହୋଇ ତାହାର ଗଳଦେଶ ଛେଦନ କରି ସୂର୍ଯ୍ୟଙ୍କର ଉତ୍ତରାୟଣ ଓ ଦକ୍ଷିଣାୟନ ରୂପ କାଳବ୍ୟାପୀ ପୂର୍ଣ୍ଣ ସମ୍ବତ୍ସରମୂଳକ କାଳରେ ତଦୀୟ ମସ୍ତକ ଭୂପତିତ କରିଥିଲା । ୩୩ ।

ସେତେବେଳେ ଆକାଶରେ ଦୁନ୍ଦୁଭି ବାଜି ଉଠିଲା, ମହର୍ଷି ଗନ୍ଧର୍ବ, ସିଦ୍ଧଗଣ ବୃତ୍ରହନ୍ତାର ଖ୍ୟାତିପ୍ରକାଶକ ମନ୍ତ୍ର ଦ୍ୱାରା ଇନ୍ଦ୍ରଙ୍କୁ ସ୍ତବକରି ଆନନ୍ଦରେ ପୁଷ୍ପ ବୃଷ୍ଟି କରି ତାହାଙ୍କୁ ଅଭିନନ୍ଦନ କରିଥିଲେ ।୩୪।

ହେ ଶତ୍ରୁ ଦମନ ଶୀଳ ମହାରାଜ ପରୀକ୍ଷିତ, ଦେବତାମାନେ ଏମନ୍ତ ସମୟରେ ଦେଖିଲେ ଯେ ବୃତ୍ରର ଦେହରୁ ଜ୍ୟୋତିଃ ସ୍ୱରୂପ ଆତ୍ମା ବହିର୍ଗତ ହୋଇ ସର୍ବ ଲୋକାତୀତ ଭଗବାନଙ୍କ ଦେହରେ ମିଶିଗଲା ।୩୫।

---

ଆପଣା ବଜ୍ରେ ଦେବବର
ବଜ୍ରେଛେଦିଲେ ଶିର ତାର ।୩୧,୩୨
ବଜ୍ର ହି ଅତି ବେଗେ ଗଲା
କନ୍ଧରୁ ଶିର ତା କାଟିଲା
ଇନ୍ଦ୍ର ଅଙ୍ଗରୁ ଅବହେଳେ
ତକ୍ଷଣେ ସକାଇଲା ତଳେ
ଆକାଶେ ଦୁନ୍ଦୁଭି ତକ୍ଷଣେ
ବାଦ୍ୟ କରନ୍ତି ଦେବଗଣେ

ଗନ୍ଧର୍ବ ସିଦ୍ଧ ଋଷିଗଣ
ଆନନ୍ଦେ ହରଷିତ ମନ
ବୃତ୍ର ଶତ୍ରୁକୁ ସ୍ତୁତିକଲେ
ହରଷେ ପୁଷ୍ପ ବରଷିଲେ ।୩୩,୩୪
ବୃତ୍ରର ତହୁଁ ଜ୍ୟୋତିରୂପ
ବାହାର ହୋଇଲା ହେ ନୃପ
ସକଳେ ଦେଖୁଥିଲେ ରହି
ସାଲୋକ୍ୟ ପାଇଲା ସେ ତହିଁ ।୩୫।

ବୋଲଇ ବିପ୍ର ଜଗନ୍ନାଥ
ଇନ୍ଦ୍ର ବୃତ୍ର ଯୁଦ୍ଧ ବୃତ୍ତାନ୍ତ
ଷଷ୍ଠସ୍କନ୍ଧରେ ଯାହା ଭଣି
ସଂସାର ତାରଣ ଏ ବାଣୀ ।



**ଭାବାର୍ଥ :—**

ବୃତ୍ରାସୁର ଦାନବ ହେଲେ ମଧ୍ୟ ତାହାର ବୁଦ୍ଧି ଅସାଧାରଣ ଓ ଧର୍ମ ମାର୍ଗରେ ପରିଚାଳିତ, ସେ ସର୍ବନିୟନ୍ତା ଭଗବାନଙ୍କଠାରେ ପରମ ବିଶ୍ୱାସୀ । ତେଣୁ ଇନ୍ଦ୍ରଙ୍କ କର୍ତ୍ତୃକ ପରାଜିତ ହେଲେ ମଧ୍ୟ ନିଜର ବିଶ୍ୱାସ ବଳରେ ଅଚଳ, ଅଟଳ ରହି ଇନ୍ଦ୍ରଙ୍କୁ ବିବିଧ ଧର୍ମୋପଦେଶ ପ୍ରଦାନ କରିଥିଲା । ଇନ୍ଦ୍ର ନାରାୟଣ-କବଚ ଧାରଣ କରି ଭଗବତ୍ କୃପା ଲାଭ କରିଥିଲେ ତେଣୁ ସେ ବୃତ୍ରାସୁରକୁ ବଧ କରିବାକୁ ସମର୍ଥ ହୋଇଥିଲେ । ଭଗବଦ୍ ଶକ୍ତିରେ ବିଶ୍ୱାସ ହେତୁ ବୃତ୍ରାସୁରର ଆତ୍ମା ଜ୍ୟୋତିଃସ୍ୱରୂପ ହୋଇ ଭଗବାନଙ୍କର ଅସୀମ ଶକ୍ତି ମଧ୍ୟରେ ମିଶିଗଲା ।

---

## ତ୍ର ୟୋ ଦ ଶ ଅ ଧ୍ୟା ୟ ।

**ତ୍ରୟୋଦଶେ ତୁ ବୃତ୍ରାଖ୍ୟବ୍ରହ୍ମହତ୍ୟାହତପ୍ରଭମ୍ ।**
**ଶରଂ ନଷ୍ଟୋଦକଃ ଶକ୍ରୋ ବିଷ୍ଣୁନେତି ନିରୁପ୍ୟତେ ।୦।** (ଶ୍ରୀଧରସ୍ୱାମୀ)

**ଶ୍ରୀଶୁକ ଉବାଚ ।**

**ବୃତ୍ରେ ହତେ ତ୍ରୟୋ ଲୋକା ବିନା ଶକ୍ରେଣ ଭୂରିଦ ।**
**ସପାଲା ହ୍ୟଭବନ୍ ସଦ୍ୟୋ ବିଜ୍ୱରା ନିର୍ବୃତେନ୍ଦ୍ରିୟାଃ । ୧ ।**
**ଦେବର୍ଷିପିତୃଭୂତାନି ଦୈତ୍ୟାଃ ଦେବାନୁଗାଃ ସ୍ୱୟମ୍ ।**
**ପ୍ରତିଯଗ୍ମୁଃ ସ୍ୱଧିଷ୍ଣ୍ୟାନି ବ୍ରହ୍ମେଶେନ୍ଦ୍ରାଦୟସ୍ତତଃ । ୨ ।**

---

### ଇନ୍ଦ୍ରଙ୍କର ପଳାୟନ ଓ ବିଷ୍ଣୁଙ୍କ କର୍ତ୍ତୃକ ରକ୍ଷା ।

ତ୍ରୟୋଦଶ ଅଧ୍ୟାୟରେ ଇନ୍ଦ୍ର ବୃତ୍ରକୁ ବଧ କରନ୍ତେ ବ୍ରହ୍ମହତ୍ୟା ଜନିତ ପାପରେ ନିଷ୍ପ୍ରଭ ହୋଇଥିଲେ । ଭଗବାନ୍ ତାହାଙ୍କୁ ମୁକ୍ତ କରିବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ବୃତ୍ର ହତ ହୁଅନ୍ତେ ଇନ୍ଦ୍ରଙ୍କ ଭିନ୍ନ ତ୍ରିଲୋକସ୍ଥ ସମସ୍ତ ଲୋକ ଏବଂ ଲୋକପାଳଗଣ ନିଶ୍ଚିନ୍ତ ଓ ଶାନ୍ତ ହୋଇଥିଲେ । ୧ ।

ଦେବଗଣ, ଋଷିଗଣ, ପିତୃଗଣ ଭୂତଗଣ, ଦୈତ୍ୟଗଣ,ଦେବାନୁଚର, ସିଦ୍ଧ, ବିଦ୍ୟାଧର ପ୍ରଭୃତି ସମସ୍ତେ ନିଜ ନିଜ ଇଚ୍ଛାନୁସାରେ ସ୍ୱ ସ୍ୱ ସ୍ଥାନକୁ ଚାଲିଗଲେ, ବ୍ରହ୍ମା, ମହାଦେବ, ଓ ଇନ୍ଦ୍ର ପ୍ରଭୃତି ପ୍ରଧାନ ପ୍ରଧାନ କତିପୟ ଦେବତା ପରେ ଗମନ କରିଥିଲେ । ୨ ।

---

ବୃତ୍ରକୁ ମାରି ଶଚୀସାଇଁ, ଲୁଚନ୍ତେ ତେଜହୀନ ହୋଇ । ବିଷ୍ଣୁ ରଖିଲେ ତା ଜୀବନ, ତ୍ରୟୋଦଶର ବିବରଣ ॥

ଶ୍ରୀବାଦରାୟଣିରୁବାଚ—
ବୃତ୍ର ହୋଇଲା ଯହୁଁ ହତ
ଶୁଣି ହରଷ ତ୍ରିଜଗତ
ଇନ୍ଦ୍ରର ବିନୁ ଯେତେ ଜନ
ହରଷ ହୋଇଲେ ସୁଜନ
ଅମରଦେବ ଋଷିଗଣ
ପିତୃ ଦୈବତ ଯେତେ ପୁଣ
ବ୍ରହ୍ମା ଶଙ୍କର ବଜ୍ରଧର
ଗଲେ ସେ ଯେ ଯାହାର ପୁର ।୧,୨

ଶ୍ରୀରାଜୋବାଚ ।

ଇନ୍ଦ୍ରସ୍ୟାନର୍ବୃତେର୍ହେତୁଂ ଶ୍ରୋତୁମିଚ୍ଛାମି ଭୋ ମୁନେ ।
ଯେନାସନ୍ ସୁଖିନୋ ଦେବା ହରେର୍ଦୁଃଖଂ କୁତୋଽଭବେତ୍ । ୩ ।

ଶ୍ରୀଶୁକ ଉବାଚ ।

ବୃତ୍ରବିକ୍ରମସଂବିଗ୍ନାଃ ସର୍ବେ ଦେବାଃ ସହର୍ଷିଭିଃ ।
ତଦ୍‌ବଧାୟାର୍ଥୟନ୍ନିନ୍ଦ୍ରଂ ନୈଚ୍ଛଦ୍‌ଭୀତୋ ବୃହଦ୍‌ବଧାତ୍ । ୪ ।

ଶ୍ରୀଇନ୍ଦ୍ର ଉବାଚ ।

ସ୍ତ୍ରୀଭୂଦ୍ରୁମଜଲୈରେନୋ ବିଶ୍ୱରୂପବଧୋଦ୍‌ଭବମ୍ ।
ବିଭକ୍ତମନୁଗୃହ୍ଣଦ୍‌ଭିର୍ବୃତ୍ରହତ୍ୟାଂ କ୍ୱ ମାର୍ଜ୍ମ୍ୟହମ୍ ।୫।

---

ଶ୍ରୀରାଜା କହିଲେ :—

ହେ ମୁନେ ! ବୃତ୍ର ବଧରେ ତ୍ରିଲୋକବାସୀ ସମସ୍ତେ ସୁଖୀ ହେଲେ, ମାତ୍ର ଇନ୍ଦ୍ରଙ୍କର ଅଶାନ୍ତି ହେଲା, ଏହାର କାରଣ କଣ ମୁଁ ଶୁଣିବାକୁ ଇଚ୍ଛା କରେ । ୩ ।

ଶ୍ରୀ ଶୁକଦେବ କହିଲେ :—

ଦେବତା ଓ ଋଷିଗଣ ବୃତ୍ରାସୁରର ପରାକ୍ରମ ଦର୍ଶନକରି ଉଦ୍‌ବିଗ୍ନ ହୋଇ ତାହାର ବଧ ନିମନ୍ତେ ଇନ୍ଦ୍ରଙ୍କ ନିକଟରେ ପ୍ରାର୍ଥନା କରିଥିଲେ । କିନ୍ତୁ ଇନ୍ଦ୍ର ବ୍ରହ୍ମହତ୍ୟା ଭୟରେ ସେଥିରେ ଅନିଚ୍ଛୁକ ହୋଇଥିଲେ । ୪ ।

ଶ୍ରୀଇନ୍ଦ୍ର କହିଲେ :—

ବିଶ୍ୱରୂପଙ୍କୁ ବଧକରି ଯେଉଁ ପାପ ଅର୍ଜ୍ଜନ କରିଥିଲି ସ୍ତ୍ରୀ, ଭୂମି, ବୃକ୍ଷ, ଜଳ ଏମାନେ ଅନୁଗ୍ରହକରି ସେହି ପାପ ବାଣ୍ଟି ନେଇଥିଲେ । ବୃତ୍ରକୁ ବଧ କଲେ ସେ ପାପ ମୁଁ କାହାକୁ ଦେବି ? । ୫ ।

---

ଶ୍ରୀରାଜୋବାଚ—

ହେ ମୁନି ଶୁଣ ସାବଧାନ
ଏହା ଶୁଣିବା ମୋର ମନ
ସର୍ବେ ହରଷ ହେଲେଣେ
ଇନ୍ଦ୍ର ବିଷାଦ କି କାରଣେ
କହିବା ଏଥିର କାରଣ
ନମଇଁ ତୁମ୍ଭର ଚରଣ ।୩।

ଶ୍ରୀବାଦରାୟଣିରୁବାଚ—

ବୃତ୍ର ବିକ୍ରମ ଦେଖି ଦେବେ
ମହତ ଋଷି ଆଦି ସର୍ବେ
ଭୟେ ଉଦ୍‌ବେଗ ମନ ହୋଇ
କହିଲେ ଇନ୍ଦ୍ରକୁ ସେ ଯାଇ
ହେ ଦେବ ଦେବଙ୍କ ଈଶ୍ୱର
ବୃତ୍ର ଅସୁରକୁ ସଂହର
ଇନ୍ଦ୍ର ତା ନ କଲେ ସ୍ୱୀକାର
ବ୍ରାହ୍ମଣ ବଧେ ପାପ ଘୋର ।୪।

ଶ୍ରୀ ଇନ୍ଦ୍ରଉବାଚ—

ଯେବେ ମାରିଲି ବିଶ୍ୱରୂପ
ଘେନିଲି ବ୍ରହ୍ମ-ହତ୍ୟା ପାପ
ଭୂ ଜଳ ସ୍ତ୍ରୀ ଦ୍ରୁମମାନେ
ପାପ ଘେନିଲେ ସର୍ବମାନେ
ଏବେ ବୃତ୍ରକୁ ବିନାଶିବି
କେମନ୍ତେ ପାପୁଁ ତରିଯିବି ।୫।

ଶ୍ରୀଶୁକ ଉବାଚ । ଋଷୟସ୍ତଦୁପାକର୍ଣ୍ଣ୍ୟ ମହେନ୍ଦ୍ରମିଦମବ୍ରୁବନ୍ ।
ଯାଜୟିଷ୍ୟାମ ଭଦ୍ରଂ ତେ ହୟମେଧେନ ମାସ୍ମଭୈଃ । ୬ ।
ହୟମେଧେନ ପୁରୁଷଂ ପରମାତ୍ମାନମୀଶ୍ୱରମ୍ ।
ଇଷ୍ଟ୍ୱା ନାରାୟଣଂ ଦେବଂ ମୋକ୍ଷ୍ୟସେଽପି ଜଗଦ୍‌ବଧାତ୍ । ୭ ।
ବ୍ରହ୍ମହା ପିତୃହା ଗୋଘ୍ନୋ ମାତୃହାଚାର୍ଯ୍ୟହାଘବାନ୍ ।
ଶ୍ୱାଦଃ ପୁଲ୍‌କଶକୋ ବାପି ଶୁଧ୍ୟେରନ୍ ଯସ୍ୟ କୀର୍ତ୍ତନାତ୍ । ୮ ।
ତମଶ୍ୱମେଧେନ ମହାମଖେନ ଶ୍ରଦ୍ଧାନ୍ୱିତୋଽସ୍ମାଭିରନୁଷ୍ଠିତେନ ।
ହତ୍ୱାପି ସ ବ୍ରହ୍ମ ଚରାଚରଂ ତ୍ୱଂ ନ ଲିପ୍ୟସେ କିଂ ଖଲନିଗ୍ରହେଣ । ୯ ।
ଶ୍ରୀଶୁକ ଉବାଚ । ଏବଂ ସଞ୍ଚୋଦିତୋ ବିପ୍ରୈର୍ମରୁତ୍ୱାନହନଦ୍ରିପୁମ୍ ।
ବ୍ରହ୍ମହତ୍ୟା ହତେ ତସ୍ମିନ୍ନାସସାଦ ବୃଷାକପିମ୍ । ୧୦ ।

---

ଶ୍ରୀଶୁକ କହିଲେ :—

ଇନ୍ଦ୍ରଙ୍କର ସେହି କଥା ଶୁଣି ଋଷିମାନେ ମହେନ୍ଦ୍ରଙ୍କୁ କହିଲେ, "ଆମ୍ଭେମାନେ ଆପଣଙ୍କୁ ଅଶ୍ୱମେଧ ଯଜ୍ଞ କରାଇବୁ । ତାହେଲେ ଆପଣଙ୍କର ମଙ୍ଗଳ ହେବ, ଆପଣ ଭୀତ ହେଉନ୍ତୁ ନାହିଁ" । ୬ ।

ଅଶ୍ୱମେଧ ଯଜ୍ଞଦ୍ୱାରା ସେହି ପରମାର୍ଥ ସ୍ୱରୂପ ପରମପୁରୁଷ ଶ୍ରୀ ଭଗବାନ୍ ନାରାୟଣଙ୍କର ଆରାଧନା କଲେ ସମସ୍ତ ଜଗତର ବଧ ଜନିତ ପାପରୁ ମୁକ୍ତ ହୋଇ ପାରାଯାଏ । ୭ ।

ବ୍ରହ୍ମହତ୍ୟାକାରୀ, ପିତୃ ହତ୍ୟାକାରୀ, ଗୋ ହତ୍ୟାକାରୀ, ଗୁରୁ ହତ୍ୟାକାରୀ ଏବଂ ମାତୃହନ୍ତା ଓ କୁକ୍କୁର ଭୋଜୀ, ଅଧମ, ଚଣ୍ଡାଳ ମଧ୍ୟ ଭଗବାନଙ୍କର ନାମ କୀର୍ତ୍ତନ କରି ପାପମୁକ୍ତ ହୋଇପାରେ । ୮ ।

ଆପଣ ଆମ୍ଭମାନଙ୍କର ଅନୁଷ୍ଠିତ ଅଶ୍ୱମେଧ ଯଜ୍ଞ ଦ୍ୱାରା ଶ୍ରୀ ଭଗବାନଙ୍କ ପ୍ରତି ଶ୍ରଦ୍ଧାନ୍ୱିତ ହୋଇ ସମଗ୍ର ବିଶ୍ୱସଂହାର କଲେ ମଧ୍ୟ ପାପଲିପ୍ତ ହେବେ ନାହିଁ । ଏହି ଦୁଷ୍ଟ ବୃତ୍ରାସୁରର ହତ୍ୟା କଥା କଣ କହିବା । ୯

ଶ୍ରୀଶୁକଦେବ କହିଲେ :—

ଋଷିମାନେ ଏହିପରି ଉତ୍ସାହିତ କରନ୍ତେ ଇନ୍ଦ୍ର ବୃତ୍ରାସୁରକୁ ବଧ କରିଥିଲେ । ବୃତ୍ର ନିହତ ହେବା ମାତ୍ରେ ବ୍ରହ୍ମହତ୍ୟା ମୂର୍ତ୍ତିମତୀ ହୋଇ ତାହାଙ୍କୁ ଆକ୍ରମଣ କରିଥିଲା । ୧୦ ।

---

ଶ୍ରୀ ଶୁକ ଉବାଚ—
ଇନ୍ଦ୍ର ବଚନେ ଋଷିଗଣ
ଶୁଣି ସେ କହନ୍ତି ବଚନ
ଅଶ୍ୱମେଧ-ଯଜ୍ଞରେ କରି
ପାପରୁ ନାଶିବୁ ତୁମ୍ଭରି
ମହାପୁରୁଷ ଆତ୍ମାପରି
ଅଖିଳ ଜଗତ ଈଶ୍ୱରି
ଯେ ଦେବ ପ୍ରଭୁ ନାରାୟଣ
ଯଜ୍ଞରେ କରାଇ ପ୍ରସନ୍ନ
ବୃତ୍ରର ବଧୂ ଦେବବର !
ଅବହେଳାରେ ହେବୁ ପାର
ବ୍ରାହ୍ମଣ ଗୋରୁ ପିତାମାତା
ଯେ ଜନ ଆଚାର୍ଯ୍ୟର ହନ୍ତା
ଶ୍ୱାନକୁ ଖାଇ ଅବା ଯେହୁ
ଶୁଣ କହିବା ମହାବାହୁ
ନାମ କୀର୍ତ୍ତନ ଯେହୁ କରେ
ଏ ସର୍ବ ପାପୁଁ ସେହୁ ତରେ
ମହାଯଜ୍ଞକୁ କରି ତୁହି
ଜପିବୁ ପ୍ରଭୁ ହରିନାହିଁ
ତାଙ୍କ ପ୍ରସନ୍ନେ ଦେବବର
ବୃତ୍ରକ କେତେକ ମାତର । ୬-୯
ଶ୍ରୀଶୁକ ଉବାଚ—
ଶୁଣି ଋଷିଙ୍କର ବଚନ
ଶତ୍ରୁ ମାରିଲେ ମଘବାନ
ତକ୍ଷଣେ ବ୍ରହ୍ମହତ୍ୟା ଗଲା
ଇନ୍ଦ୍ରଦେବଙ୍କୁ ଆକ୍ରମିଲା । ୧୦ ।

ତସ୍ମେନ୍ଦ୍ରଃ ସ୍ମାସହତ୍ ତାପଂ ନିର୍ବୃତିର୍ନାମୁମାବିଶତ୍ ।
ହ୍ରୀମନ୍ତଂ ବାଚ୍ୟତାଂ ପ୍ରାପ୍ତଂ ସୁଖୟନ୍ତ୍ୟପି ନୋ ଗୁଣାଃ । ୧୧ ।
ତାଂ ଦଦର୍ଶାନୁଧାବନ୍ତୀଂ ଚାଣ୍ଡାଲୀମିବ ରୂପିଣୀମ୍ ।
ଜରୟା ବେପମାନାଙ୍ଗୀଂ ଯକ୍ଷ୍ମଗ୍ରସ୍ତାମସୃକ୍ ପଟାମ୍ । ୧୨ ।
ବିକୀର୍ଯ୍ୟ ପଲିତାନ୍ କେଶାଂସ୍ତିଷ୍ଠ ତିଷ୍ଠେତି ଭାଷିଣୀମ୍ ।
ମୀନଗନ୍ଧ୍ୟସୁଗନ୍ଧେନ କୁର୍ବତୀଂ ମାର୍ଗଦୂଷଣମ୍ । ୧୩ ।
ନଭୋ ଗତୋ ଦିଶଃ ସର୍ବାଃ ସହସ୍ରାକ୍ଷୋ ବିଶାମ୍ପତେ ।
ପ୍ରାଗୁଦୀଚୀଂ ଦିଶଂ ତୂର୍ଣ୍ଣଂ ପ୍ରବିଷ୍ଟୋ ନୃପ ମାନସମ୍ । ୧୪ ।
ସ ଆବସତ୍ ପୁଷ୍କରନାଳତନ୍ତୂନଲବ୍ଧଭୋଗୋ ଯଦିହାଗ୍ନିଦୂତଃ ।
ବର୍ଷାଣି ସାହସ୍ରମଲକ୍ଷିତୋଽନ୍ତଃ ସଞ୍ଚିନ୍ତୟନ୍ ବ୍ରହ୍ମବଧାଦ୍ବିମୋକ୍ଷମ୍ । ୧୫ ।

---

ସେହି ବ୍ରହ୍ମହତ୍ୟାର ଆକ୍ରମଣକୁ ଇନ୍ଦ୍ର ସନ୍ତପ୍ତ ହୋଇ ସହ୍ୟ କରିଥିଲେ । ତେଣୁ ତାହାଙ୍କ ହୃଦୟରେ ଆନନ୍ଦ ପ୍ରବେଶ କରି ନ ଥିଲା । ଯେଉଁ ବ୍ୟକ୍ତି ନିନ୍ଦା ପ୍ରାପ୍ତେ ବଶତଃ ଲଜ୍ଜ୍ୟାଯୁକ୍ତ ହୁଏ, ତାହାର ଧୈର୍ଯ୍ୟାଦି ଗୁଣ ଥିଲେ ମଧ୍ୟ ସେ ସୁଖୀ ହୋଇ ନ ପାରେ । ୧୧ ।

ଇନ୍ଦ୍ର ଦେଖିଲେ ବ୍ରହ୍ମହତ୍ୟା ଚଣ୍ଡାଳୀ ମୂର୍ତ୍ତି ଧାରଣକରି ତାହାଙ୍କ ପଛେ ପଛେ ଆସୁଅଛି, ବାର୍ଦ୍ଧକ୍ୟ ହେତୁ ତାହାର ଦେହ କମ୍ପିତ ହେଉଅଛି, ସେ ଯକ୍ଷ୍ମା ରୋଗରେ ପୀଡ଼ିତ, ସେ ରକ୍ତ ରଞ୍ଜିତ ବସ୍ତ୍ର ପରିଧାନ କରିଅଛି । ତାହାର ପକ୍ୱକେଶ ଆଲୁଳାୟିତ, 'ରୁହ, ରୁହ,' ଏହା ସେ ପୁନଃ ପୁନଃ ଉଚ୍ଚାରଣ କରୁଅଛି । ତାହାର ନିଶ୍ୱାସ ବାୟୁ ମତ୍ସ୍ୟ ଗନ୍ଧ ତୁଲ୍ୟ ଦୁର୍ଗନ୍ଧଯୁକ୍ତ, ତଦ୍ଦ୍ୱାରା ପଥ ପର୍ଯ୍ୟନ୍ତ ଦୂଷିତ ହେଉଅଛି ।୧୨,୧୩।

ହେ ମହାରାଜ ! ଇନ୍ଦ୍ର ଆକାଶରେ ଏବଂ ଅନ୍ୟାନ୍ୟ ସମସ୍ତ ଦିଗରେ ଗମନ କଲେ ମଧ୍ୟ ସେହି ମୂର୍ତ୍ତି ତାହାଙ୍କୁ ଅନୁସରଣ କଲା । ସେ ଈଶାନ କୋଣକୁ ଧାବିତ ହୋଇ ମାନସ ସରୋବରରେ ପ୍ରବେଶ କଲେ । ୧୪ ।

ଇନ୍ଦ୍ର ମାନସ ସରୋବରର ଜଳ ମଧ୍ୟରେ ପଦ୍ମନାଡ଼ରେ ଅବସ୍ଥିତ ସୂତ୍ରକୁ ଆଶ୍ରୟ କରି ଅଲକ୍ଷିତ ଭାବରେ ବ୍ରହ୍ମହତ୍ୟା ପାପରୁ ନିଷ୍କୃତି ଲାଭ କରିବାର ଉପାୟ ଚିନ୍ତା କରିଥିଲେ । ସେତେବେଳେ ସେ ଅନାହାରରେ ଥିଲେ କାରଣ ତାହାଙ୍କର ଭୋଗ୍ୟବସ୍ତୁ ଆନୟନକାରୀ ଅଗ୍ନିଦେବ ସେଠାରେ ପ୍ରବେଶ କରି ପାରି ନ ଥିଲେ । ୧୫ ।

---

ତାହାଙ୍କ ଦେଖି ଦୁଃଖ ପାଇ
ଦେବେନ୍ଦ୍ର ଗଲେ ସେ ପଳାଇ
ଚଣ୍ଡାଳୀ ରୂପେକ ଧଇଲା
ଇନ୍ଦ୍ରର ପଛେ ଗୋଡ଼ାଇଲା
ବୃଦ୍ଧାରୂପକୁ ଧରି ସେହି
ଯକ୍ଷ୍ମା ରୋଗରେ ଗ୍ରସ୍ତ ହୋଇ
ଶୋଣିତ ପ୍ରାୟେ ବସ୍ତ୍ର ତାର
ଧବଳ କେଶ ମସ୍ତକର

ରହ ରହ ବୋଲି ଡ଼ାକଇ
ଆମିଷ ଗନ୍ଧ ତାର ଦେହୀ ।୧୧-୧୩।
ଆକାଶ ସକଳ ଦିଗରେ
ଇନ୍ଦ୍ର ପଳାନ୍ତି ଖରତରେ
ଉତ୍ତର ଦିଗକୁ ସେ ଗଲେ
ମାନସସରରେ ଲୁଚିଲେ ।୧୪।

ପୁଷ୍କର ନାଳେ ଦେବବର
ରହିଁଲ-ମନ କରି ସ୍ଥିର
ସହସ୍ର ସମ୍ବତ୍ସର ତହିଁ
ବ୍ରହ୍ମ ଭାବନେ ମନ ଦେଇ
ବ୍ରହ୍ମ ବଧରୁ ମୋକ୍ଷ ପାଇଁ
ରହିଲେ ନିରାହାର ହୋଇ ।୧୫

ତାବତ୍ ତ୍ରିଣାକଂ ନହୁଷଃ ଶଶାସ ବିଦ୍ୟାତପୋଯୋଗବଲାନୁଭାବଃ ।
ସ ସମ୍ପଦୈଶ୍ୱର୍ଯ୍ୟମଦାନ୍ଧବୁଦ୍ଧିର୍ନୀତସ୍ତିରଶ୍ଚାଂ ଗତିମିନ୍ଦ୍ରପତ୍ନ୍ୟାଃ ।୧୬ ।
ତତୋ ଗତୋ ବ୍ରହ୍ମଗିରୋପହୂତ ଋତମ୍ଭରଧ୍ୟାନନିବାରିତାଘଃ ।
ପାପସ୍ତୁ ଦିଗ୍‌ଦେବତୟା ହତୌଜାସ୍ତଂ ନାଭ୍ୟଭୂଦବିତଂ ବିଷ୍ଣୁପତ୍ନ୍ୟା ।୧୭ ।
ତଂ ଚ ବ୍ରହ୍ମର୍ଷୟୋଽଭ୍ୟେତ୍ୟ ହୟମେଧେନ ଭାରତ ।
ଯଥାବଦ୍ଦୀକ୍ଷୟାଞ୍ଚକ୍ରୁଃ ପୁରୁଷାରାଧନେନ ହ ।୧୮ ।

ନହୁଷ ବିଦ୍ୟା, ତପସ୍ୟା ଓ ଯୋଗ ବଳରେ ଉପଯୁକ୍ତ ହୋଇ ତତ୍କାଳରେ ସ୍ୱର୍ଗରାଜ୍ୟ ଶାସନ କରିଥିଲେ କିନ୍ତୁ ସମ୍ପଦ ଓ ଆଧିପତ୍ୟ ଗର୍ବରେ ତାହାଙ୍କର ବୁଦ୍ଧି ମୋହାଚ୍ଛନ୍ନ ହେବାରୁ ଇନ୍ଦ୍ର ପତ୍ନୀ ଶଚୀ ତାହାଙ୍କୁ ସର୍ପଯୋନି ପ୍ରାପ୍ତ କରାଇଥିଲେ ।୧୬ ।

ସତ୍ୟ ପାଳକ ଭଗବାନ୍ ଶ୍ରୀହରିଙ୍କୁ ଧ୍ୟାନ କରୁ କରୁ ଇନ୍ଦ୍ରଙ୍କର ପାପ ସହସ୍ରବର୍ଷ ଭିତରୁ ଦୂରୀଭୂତ ହୋଇଥିଲା । ତଦନନ୍ତର ସେ ଋଷିମାନଙ୍କର ଆହ୍ୱାନରେ ସ୍ୱର୍ଗକୁ ଗମନ କରିଥିଲେ, ସେଠାରେ ପଦ୍ମବନର ଅଧିଷ୍ଠାତ୍ରୀ ଲକ୍ଷ୍ମୀଦେବୀ ଏବଂ ଈଶାନକୋଣର ଅଧିପତି ରୁଦ୍ରଦେବ ଇନ୍ଦ୍ରଙ୍କୁ ରକ୍ଷା କରିବାରୁ ବ୍ରହ୍ମହତ୍ୟା ତାହାଙ୍କୁ ସ୍ପର୍ଶ କରି ପାରିଲା ନାହିଁ ।୧୭ ।

ହେ ଭରତ ବଂଶଧର ! ବ୍ରହ୍ମର୍ଷିମାନେ ଆସି ଯେଉଁ ଅଶ୍ୱମେଧ ଯଜ୍ଞରେ ଭଗବାନ ଶ୍ରୀହରିଙ୍କର ଆରାଧନାହିଁ ପ୍ରଧାନ; ସେହି ଅଶ୍ୱମେଧ ଯଜ୍ଞଦ୍ୱାରା ଇନ୍ଦ୍ରଙ୍କୁ ପ୍ରାୟଶ୍ଚିତ୍ତରେ ବ୍ରତୀ କରିଥିଲେ ।୧୮ ।

ତାବତ ନହୁଷ ରାଜନ
ସ୍ୱର୍ଗରେ କଲେ ଇନ୍ଦ୍ରପଣ
ବିଦ୍ୟା ଯୋଗବଳରୁ କରି
ସ୍ୱର୍ଗ ସମ୍ପଦ ଭୋଗକରି
ସମ୍ପଦ ଐଶ୍ୱର୍ଯ୍ୟ ମଦରେ
ନହୁଷ ମଦାନ୍ଧ ବୁଦ୍ଧିରେ
ଇନ୍ଦ୍ର ପତ୍ନୀକି ଇଚ୍ଛା କଲା
ସ୍ୱର୍ଗ ଲୋକରୁ ଚ୍ୟୁତ ହେଲା
ନହୁଷ ସ୍ୱର୍ଗ ଇନ୍ଦ୍ର ହୋଇ
ବାର୍ତ୍ତା ଇନ୍ଦ୍ରାଣୀରେ ଦେଇ
ଇନ୍ଦ୍ର ମୁଁ ସ୍ୱର୍ଗ ଭୁବନରେ
ମୋତେ ତୁମ୍ଭେ ଭଜ ହିତରେ
ଇନ୍ଦ୍ରାଣୀ ଗୁରୁଙ୍କୁ କହିଲେ
ପ୍ରତି ଉତ୍ତର ଗୁରୁ ଦେଲେ
ଗୁରୁ ଏମନ୍ତ ବିଚାରିଲେ
ଅତି ଅସମ୍ଭବ ବୋଇଲେ
ଅନେକ ତପସ୍ୟାର ଫଳେ
ମନୁଷ୍ୟ ହୋଇ ଦେବପାଳେ
ବ୍ରାହ୍ମଣ କୋପ ଶାମୁଁ କରି
ହତ ହୋଇବ ଏହା ଶେଷ
ନହୁଷେ ଏମନ୍ତ କହିବ
ଋଷିଙ୍କ କାନ୍ଧେ ଦୋଳା ଥିବ
ତୁମ୍ଭେ ଦୋଳାରେ ବସିଥିବ
ଆମ୍ଭର ପୁରକୁ ଆସିବ
ତେବେ ସେ ତୁମ୍ଭଙ୍କୁ ଭଜିବୁ
ସ୍ୱର୍ଗ ଇନ୍ଦ୍ର ବୋଲି ଜାଣିବୁ
ଏମନ୍ତ ଗୁରୁ ଆଜ୍ଞା ଶୁଣି
ନହୁଷେ କହିଲେ ଇନ୍ଦ୍ରାଣୀ
ଋଷିମାନଙ୍କୁ ଆଣିକରି
ଋଷିଙ୍କ କାନ୍ଧେ ଦୋଳା ଧରି
ସେ ଦୋଳା ଉପରେ ନହୁଷ
ଆସନ୍ତେ ହୋଇଣ ହରଷ
ଚଳଇ ଦୋଳା ମନ୍ଦଗତି
ତା ଦେଖି କୁପିତ ନୃପତି
"ସର୍ପ, ସର୍ପ" ବୋଲି ବୋଇଲା
ପାଦେ ଅଗସ୍ତ୍ୟଙ୍କୁ ମାଇଲା
ଅଗସ୍ତ୍ୟ କ୍ରୋଧଭରି ହୋଇ
ନହୁଷକୁ ସେ ଶାପ ଦେଇ
ତୁ "ସର୍ପ" ହୁଅ ବେଗ ହୋଇ
ଯେଣୁ ସଙ୍କଟ ଦେଲୁ ତୁହି
ଏ ହେତୁ ନହୁଷ ସ୍ୱର୍ଗରୁ
ଚ୍ୟୁତ ହୋଇଲା ସେ ଶାପରୁ ।୧୬।
ପରମେଶ୍ୱର ଧ୍ୟାନ କରି
ବ୍ରହ୍ମହତ୍ୟା ପାପରୁ ତରି
ସ୍ୱର୍ଗରେ ଇନ୍ଦ୍ର ପୁନର୍ବାର
ଦେବଙ୍କୁ ଘେନି ସେ ବିହାର ।୧୭
ଇନ୍ଦ୍ରଙ୍କୁ ଦେବ ଋଷିମାନେ
ଅଶ୍ୱମେଧ ଯାଗ ବିଧାନେ
ମହାପୁରୁଷ ଆରାଧନ
ଦୀକ୍ଷା କରାଇଲେ ରାଜନ ।୧୮ ।

ଅଥୈଜ୍ୟମାନେ ପୁରୁଷେ ସର୍ବଦେବମୟାତ୍ମନି ।
ଅଶ୍ୱମେଧେ ମହେନ୍ଦ୍ରେଣ ବିତତେ ବ୍ରହ୍ମବାଦିଭିଃ । ୧୯ ।
ସ ବୈ ତ୍ୱାଷ୍ଟ୍ରବଧୋ ଭୂୟାନପି ପାପଚୟୋ ନୃପ ।
ନୀତସ୍ତେନୈବ ଶୂନ୍ୟାୟ ନୀହାର ଇବ ଭାନୁନା । ୨୦ ।
ସ ବାଜିମେଧେନ ଯଥୋଦିତେନ ବିତାୟମାନେନ ମରୀଚିମିଶ୍ରୈଃ ।
ଇଷ୍ଟ୍ୱାଧିଯଜ୍ଞଂ ପୁରୁଷଂ ପୁରାଣମିନ୍ଦ୍ରୋ ମହାନାସ ବିଧୂତପାପଃ । ୨୧ ।
ଇଦଂ ମହାଖ୍ୟାନମଶେଷପାପ୍ମନାଂ ପ୍ରକ୍ଷାଳନଂ ତୀର୍ଥପଦାନୁକୀର୍ତ୍ତନମ୍ ।
ଭକ୍ତ୍ୟୁଚ୍ଛ୍ରୟଂ ଭକ୍ତଜନାନୁବର୍ଣ୍ଣନଂ ମହେନ୍ଦ୍ରମୋକ୍ଷଂ ବିଜୟଂ ମରୁତ୍ୱତଃ ।୨୨।

---

ହେ ରାଜନ୍ ! ତଦନନ୍ତର ବ୍ରହ୍ମଜ୍ଞାନୀ ଋଷିମାନେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରି ସେହି ଯଜ୍ଞରେ ସର୍ବଦେବମୟ ଶ୍ରୀ ଭଗବାନଙ୍କୁ ଆରାଧନା କରିବାରେ ଇନ୍ଦ୍ର ବ୍ରତୀ ହୋଇଥିଲେ । ସେହି ବୃତ୍ରବଧ ଜନିତ ପାପରାଶି ଅତି ଗୁରୁତର ହେଲେ ମଧ୍ୟ ସୂର୍ଯ୍ୟଙ୍କ କର୍ତ୍ତୃକ ତୁଷାର ସମୂହ ଯେପରି ବିନଷ୍ଟ ହୁଏ, ତାହା ସେହିପରି ଭଗବାନଙ୍କ କର୍ତ୍ତୃକ ବିନଷ୍ଟ ହୋଇଥିଲା । ୧୯,୨୦ ।

ମରୀଚି ପ୍ରଭୃତି ଋଷିମାନେ ଯେଉଁ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରିଥିଲେ, ତହିଁରେ ଇନ୍ଦ୍ର ସେହି ଆଦିପୁରୁଷ ଯଜ୍ଞେଶ୍ୱର ଭଗବାନଙ୍କୁ ଆରାଧନା କରି ପାପ ମୁକ୍ତ ହୋଇ ଲୋକ ସମାଜରେ ପୂର୍ବପରି ସମ୍ମାନ ପ୍ରାପ୍ତ ହୋଇଥିଲେ । ୨୧ ।

ଇନ୍ଦ୍ରଙ୍କର ବୃତ୍ରଜୟ ଓ ପାପମୁକ୍ତି ବିଷୟକ ଏହି ବିସ୍ତୃତ ଉପାଖ୍ୟାନରେ ଭଗବାନଙ୍କର ମହିମା କୀର୍ତ୍ତନ ଓ ଭକ୍ତଜନମାନଙ୍କର ସଦ୍‌ଗତି ଲାଭ ବର୍ଣ୍ଣନା କରାଯାଇଅଛି । ସୁତରାଂ ଏହା ପାଠକଲେ ଭକ୍ତି ପରିବର୍ଦ୍ଧିତ ହୁଏ ଏବଂ ଏହା ସମୂହ ପାପ ନିବାରଣରେ ସମର୍ଥ । ୨୨ ।

---

ଏ ଅନନ୍ତରେ ଦେବମୟ
ସର୍ବାତ୍ମା ପୁରୁଷ ଅବ୍ୟୟ
ଇନ୍ଦ୍ର ବ୍ରହ୍ମଋଷି ସହିତେ
ଆରାଧି ଅଶ୍ୱମେଧ ମତେ
ବ୍ରହ୍ମବଧ ପାତକ ଭୟ
ଯଜ୍ଞରୁ କରି ହେଲା କ୍ଷୟ
ରବି କିରଣେ ହିମ ପ୍ରାୟେ
ସକଳ ପାପ ହେଲା କ୍ଷୟେ ।୧୯,୨୦

ଅଶ୍ୱମେଧରୁ କରି ଇନ୍ଦ୍ର
ମରୀଚି ଆଦି ମୁନିବୃନ୍ଦ
ଆରାଧି ପୁରୁଷ ପୁରାଣ
ସ୍ୱର୍ଗରେ ବସିଲେ ରାଜନ
ଯଜ୍ଞର ପ୍ରସାଦରୁ କରି
ନିଷ୍ପାପ ହୋଇ ବଜ୍ରଧାରୀ ।୨୧।
ଅଶେଷ ପ୍ରାଣିମାନଙ୍କର
ପାପକୁ କରଇ ଯେ ଦୂର

ଏ ମହାଖ୍ୟାନ ଜ୍ଞାନମୟୀ
ଯେ ଜନ ଶ୍ରଦ୍ଧାରେ ଶୁଣଇ
ଭକତ ଜନର ବର୍ଣ୍ଣନ
ଇନ୍ଦ୍ର ଜୟ ମୋକ୍ଷ କାରଣ
ଯେ ପ୍ରାଣୀ ପ୍ରୀତିରେ ପଢଇ
ଶ୍ରଦ୍ଧାରେ କରି ଯେ ଶୁଣଇ
ଗାୟନ କରି ପ୍ରତିଦିନ
ସର୍ବ ସିଦ୍ଧି ଲଭେ ସେ ଜନ

**ପଠେୟୁରାଖ୍ୟାନମିଦଂ ସଦା ବୁଧାଃ ଶୃଣ୍ୱନ୍ତ୍ୟଥୋ ପର୍ବଣି ପର୍ବଣୀନ୍ଦ୍ରିୟମ୍ ।**
**ଧନ୍ୟଂ ଯଶସ୍ୟଂ ନିଖିଳାଘମୋଚନଂ ରିପୁଞ୍ଜୟଂ ସ୍ୱସ୍ତ୍ୟୟନଂ ତଥାୟୁଷମ୍ ।୨୩।**

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଇନ୍ଦ୍ରବିଜୟୋ ନାମ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

ପଣ୍ଡିତମାନେ ଏହି ଉପାଖ୍ୟାନ ସର୍ବଦା ପାଠ କରିଥାନ୍ତି ଏବଂ ଶ୍ରବଣ କରିଥାନ୍ତି । ଏଥିରେ ଇନ୍ଦ୍ରିୟର ପଟୁତା, ଧନ ଓ ଯଶ ଲାଭହୁଏ, ସର୍ବପାପ ବିନଷ୍ଟ ହୁଏ ଏବଂ ଶତ୍ରୁମାନଙ୍କୁ ଜୟ କରାଯାଏ ଏବଂ ଆୟୁ ବୃଦ୍ଧି ହୁଏ, ସୁତରାଂ ଏହା ପରମ ମଙ୍ଗଳ ମୟ । ୨୩ ।

---

**ଶତ୍ରୁରୁ ଜୟ, ଧନ ଯଶ**
**ପାପ ମୋଚନ ଦୀର୍ଘାୟୁଷ**
**ସର୍ବ କଲ୍ୟାଣ ତାର ହୋଇ**
**ଧନ ଧାନ୍ୟ ଯଶ ଲଭଇ ।୨୨,୨୩**

**ବୋଲଇ ଜଗନ୍ନାଥ ଦାସ**
**ଇନ୍ଦ୍ର ଯେ ଜିଣି ପାପନାଶ**
**ହରି କୀର୍ତ୍ତନ ସର୍ବ ହୋଇ**
**କଳିରେ ଆନ ଗତି ନାହିଁ ।**



**ଭାବାର୍ଥ —**

ଇନ୍ଦ୍ର ବୃତ୍ରାସୁରଙ୍କୁ ବଧ କଲା ପରେ ତ୍ରିଲୋକବାସୀ ସମସ୍ତେ ଓ ଦିଗପାଳମାନେ ଆନନ୍ଦିତ ହୋଇଥିଲେ ମଧ୍ୟ ଇନ୍ଦ୍ର ଶାନ୍ତି ବା ଆନନ୍ଦ ଲାଭ କରି ପାରିଲେ ନାହିଁ । ବ୍ରହ୍ମହତ୍ୟା ଜନିତ ପାପର ଭୀତି ତାହାଙ୍କ ହୃଦୟକୁ ଆନ୍ଦୋଳିତ କରୁଥିଲା । ବ୍ରହ୍ମହତ୍ୟା ଭୀଷଣ ମୂର୍ତ୍ତି ଧାରଣ କରି ତାହାଙ୍କ ପଶ୍ଚାତ୍ ଅନୁଧାବନ କରୁଥିଲା । ସେହି ବ୍ରହ୍ମହତ୍ୟା ଭୟରେ ଇନ୍ଦ୍ର ଈଶାନ ଦିଗସ୍ଥ ମାନସ ସରୋବରରେ ପଦ୍ମନାଡ଼ ମଧ୍ୟସ୍ଥିତ ସୂକ୍ଷ୍ମ ମଧ୍ୟରେ ଲୁକ୍କାୟିତ ହୋଇଥିଲେ । ଲକ୍ଷ୍ମୀ ଓ ରୁଦ୍ର ସେହି ପଦ୍ମବନରେ ତାହାଙ୍କୁ ରକ୍ଷା କରୁଥିଲେ । ଏହି ଅଧ୍ୟାୟରେ ଭଗବଦ୍ ଭକ୍ତ ପ୍ରଭାବ ଓ ଭଗବଦ୍ ନାମ କୀର୍ତ୍ତନର ମାହାତ୍ମ୍ୟ ମଧ୍ୟ ପ୍ରଦର୍ଶିତ ହୋଇଅଛି । ତଦ୍ଦ୍ୱାରା ସର୍ବପାପ ବିନଷ୍ଟ ହୁଏ, ବ୍ରହ୍ମହତ୍ୟା କିବା କଥା । ଇନ୍ଦ୍ର ଏହିପରି ଭାବରେ ପଦ୍ମବନରେ ଲୁକ୍କାୟିତ ଥିବା ଅବସ୍ଥାରେ ମର୍ତ୍ତ୍ୟର ରାଜା ନହୁଷ ମାନବ ହେଲେ ମଧ୍ୟ ନିଜର ଜ୍ଞାନ, ତପସ୍ୟା ଓ ଯୋଗ ବଳରେ ସ୍ୱର୍ଗ ରାଜ୍ୟରେ ଇନ୍ଦ୍ରରୂପେ ରାଜତ୍ୱ କରିଥିଲେ । ମାତ୍ର ସ୍ୱର୍ଗ ସମ୍ପଦ ଓ ଆଧିପତ୍ୟ ଲାଭ କରି ଶଚୀଦେବୀଙ୍କୁ ସଙ୍ଗିନୀ କରିବାକୁ ପ୍ରସ୍ତାବ କରିଥିଲେ । ନିଃସହାୟା ଶଚୀଦେବୀ ବୃହସ୍ପତିଙ୍କ ପରାମର୍ଶରେ ନହୁଷଙ୍କୁ କହିଲେ ତୁମ୍ଭେ ବ୍ରାହ୍ମଣମାନଙ୍କୁ ଭାରବାହୀ କରି ମୋ ନିକଟକୁ ଆସ । ସେ ତାହାଙ୍କ କଥାରେ ଅଗସ୍ତି ପ୍ରଭୃତି ବ୍ରାହ୍ମଣ ମାନଙ୍କ ସ୍କନ୍ଧରେ ଆରୋହଣ କରି ଅତ୍ୟଧିକ ଔତ୍ସୁକ୍ୟ ହେତୁ "ସର୍ପ" "ସର୍ପ" ଅର୍ଥାତ୍ ଶୀଘ୍ର ଯାଅ, ଶୀଘ୍ର ଯାଅ ଏହା କହିଥିଲେ ଏବଂ ଅଗସ୍ତିମୁନିଙ୍କ ଦେହରେ ପଦାଘାତ କରିଥିଲେ । ଅଗସ୍ତିମୁନିଙ୍କ ଅଭିଶାପରେ ସେ ସ୍ୱର୍ଗରାଜ୍ୟରୁ ବିଚ୍ୟୁତ ହୋଇ ସର୍ପ ହୋଇଥିଲେ । ମାନସ ସରୋବରରେ ଇନ୍ଦ୍ର ସହସ୍ର ବର୍ଷକାଳ ରହି ଭଗବାନଙ୍କ ଆରାଧନା କରି ବ୍ରହ୍ମହତ୍ୟା ପାପରୁ ମୁକ୍ତ ହୋଇଥିଲେ ।

## ଚ ତୁ ର୍ଦ୍ଦ ଶ ଅ ଧ୍ୟା ୟ ।

ଚତୁର୍ଦ୍ଦଶେତୁ ସହସା କୃଚ୍ଛ୍ରଲବ୍‌ଧେ ସୁତେ ମୃତେ ।
ଚନ୍ଦ୍ରକେତୋରଭସ୍ନେହାଦଭଶୋକୋ ନରୂପ୍ୟତେ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀପରୀକ୍ଷିଦୁବାଚ ।

ରଜସ୍ତମଃସ୍ୱଭାବସ୍ୟ ବ୍ରହ୍ମନ୍ ବୃତ୍ରସ୍ୟ ପାପ୍ମନଃ ।
ନାରାୟଣେ ଭଗବତି କଥମାସୀଦ୍ଦୃଢ଼ା ମତିଃ । ୧ ।
ଦେବାନାଂ ଶୁଦ୍ଧସତ୍ତ୍ୱାନାମୃଷୀଣାଞ୍ଚାମଲାତ୍ମନାମ୍ ।
ଭକ୍ତି ର୍ମୁକୁନ୍ଦଚରଣେ ନ ପ୍ରାୟେଣୋପଜାୟତେ । ୨ ।
ରଜୋଭିଃ ସମସଂଖ୍ୟାତାଃ ପାର୍ଥିବୈରିହ ଜନ୍ତବଃ ।
ତେଷାଂ ଯେ କେଚନେହନ୍ତେ ଶ୍ରେୟୋ ବୈ ମନୁଜାଦୟଃ । ୩ ।

---

### ବୃତ୍ରାସୁରର ପୂର୍ବଜନ୍ମ ବୃତ୍ତାନ୍ତ ଓ ପୁତ୍ରମରଣ ହେତୁ ରାଜା ଚିତ୍ରକେତୁଙ୍କର ଶୋକ ।

ଚତୁର୍ଦ୍ଦଶ ଅଧ୍ୟାୟରେ ବୃତ୍ରାସୁରର ପୂର୍ବଜନ୍ମ ବୃତ୍ତାନ୍ତ ଛଳରେ ଚିତ୍ରକେତୁଙ୍କର ଉପାଖ୍ୟାନ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀପରୀକ୍ଷିତ କହିଲେ :—

ହେ ମୁନିବର ! ବୃତ୍ରାସୁର ରଜ ଓ ତମଗୁଣ ସମ୍ପନ୍ନ ଥିଲା, ଶ୍ରୀଭଗବାନ୍ ନାରାୟଣଙ୍କ ପ୍ରତି ତାହାର ପ୍ରଗାଢ଼ ଭକ୍ତି ହେଲା କିପରି ? । ୧ ।

ଶୁଦ୍ଧସତ୍ତ୍ୱଗୁଣ ସମ୍ପନ୍ନ ଦେବତାମାନଙ୍କର ଏବଂ ନିର୍ମଳ ଚିତ୍ତ ଋଷିମାନଙ୍କର ସୁଦ୍ଧା ଶ୍ରୀ ଭଗବତ୍ ପାଦପଦ୍ମରେ ଭକ୍ତି ଜନ୍ମେ ନାହିଁ । ୨ ।

ଏ ସଂସାରରେ ଧୂଳିକଣା ତୁଲ୍ୟ ଅସଂଖ୍ୟ ଜୀବ ଅଛନ୍ତି, ସେମାନଙ୍କ ମଧ୍ୟରେ ମନୁଷ୍ୟ ପ୍ରଭୃତି କତିପୟ ଜୀବ ଧର୍ମ କାମନା କରନ୍ତି । ୩ ।

---

ବୃତ୍ରର ପୂର୍ବଜନ୍ମ କଥା, ଏ ସ୍କନ୍ଧଅଧ୍ୟାର ବ୍ୟବସ୍ଥା । ଚିତ୍ରକେତୁର ଉପାଖ୍ୟାନ, ଚତୁର୍ଦ୍ଦଶରେ ନିରୂପଣ ।୦।

ଶ୍ରୀ ଶୁକୋବାଚ—

ହେ ମୁନି ଅସମ୍ଭବ କଥା
ବୃତ୍ର ଅସୁରର ବ୍ୟବସ୍ଥା
ରଜ ତାମସ ସ୍ୱଭାବ ତାର
ପାପୀ ଅଟଇ ବୃତ୍ରାସୁର
ଅଖିଳ ହେତୁ ଭଗବାନେ
ତାହାର ମତି ବା କେସନେ
ସତ୍ତ୍ୱ ପ୍ରଧାନ ଦେବଗଣ
ନିର୍ମ୍ମଳ ମନ ମୁନିଜନ
ମୁକୁନ୍ଦ ପାଦପଙ୍କଜର
ଏହାଙ୍କ ମନ ନୋହେ ସ୍ଥିର ।୧,୨
ଧୂଳି ସଂଖ୍ୟାରେ ଜନ୍ତୁ ହୋଇ
ମନୁଷ୍ୟ କେତେ ବା ଅଛଇ
ଏହାଙ୍କ ମଧ୍ୟେ କେହି ଜନ
ଶ୍ରେୟ କରଇ ଆଚରଣ । ୩ ।

ପ୍ରାୟେୋ ମୁମୁକ୍ଷବସ୍ତେଷାଂ କେଚନୈବ ଦ୍ୱିଜୋତ୍ତମ ।
ମୁମୁକ୍ଷୂଣାଂ ସହସ୍ରେଷୁ କଶ୍ଚିନ୍ମୁଚ୍ୟେତ ସିଦ୍ଧ୍ୟତି । ୪ ।
ମୁକ୍ତାନାମପି ସିଦ୍ଧାନାଂ ନାରାୟଣପରାୟଣଃ ।
ସୁଦୁର୍ଲଭଃ ପ୍ରଶାନ୍ତାତ୍ମା କୋଟିଷ୍ୱପି ମହାମୁନେ । ୫ ।
ବୃତ୍ରସ୍ତୁ ସ କଥଂ ପାପଃ ସର୍ବଲୋକୋପତାପନଃ ।
ଇତ୍ଥଂ ଦୃଢ଼ମତିଃ କୃଷ୍ଣ ଆସୀତ୍ ସଂଗ୍ରାମ ଉଲ୍ୱଣେ । ୬ ।
ଅତ୍ର ନଃ ସଂଶୟୋ ଭୂୟାନ୍ ଶ୍ରୋତୁଂ କୌତୂହଳଂ ପ୍ରଭୋ ।
ଯଃ ପୌରୁଷେଣ ସମରେ ସହସ୍ରାକ୍ଷମତୋଷୟତ୍ । ୭ ।
ଶ୍ରୀସୂତ ଉବାଚ । ପରୀକ୍ଷିତୋଽଥ ସଂପ୍ରଶ୍ନଂ ଭଗବାନ୍ ବାଦରାୟଣିଃ ।
ନିଶମ୍ୟଶ୍ରଦ୍ଦଧାନସ୍ୟ ପ୍ରତିନନ୍ଦ୍ୟ ବଚୋଽବ୍ରବୀତ୍ । ୮ ।

---

ହେ ଦ୍ୱିଜୋତ୍ତମ ! ସେହି ଧର୍ମ ପରାୟଣ ମନୁଷ୍ୟମାନଙ୍କ ମଧ୍ୟରେ ଅଳ୍ପ ସଂଖ୍ୟକ ବ୍ୟକ୍ତି ମୁକ୍ତି ପ୍ରାର୍ଥୀ । ପୁଣି ମୁକ୍ତି ପ୍ରାର୍ଥୀମାନଙ୍କ ମଧ୍ୟରେ ହଜାରରେ ପ୍ରାୟ ଜଣେ ଦୁଇଜଣ ତତ୍ତ୍ୱଜ୍ଞାନ ଲାଭ କରିଥାନ୍ତି ଏବଂ ବିଷୟ ସଙ୍ଗରୁ ମୁକ୍ତି ପା'ନ୍ତି । ୪ ।

ହେ ମହର୍ଷି ! ଯେଉଁମାନେ ବିଷୟାସକ୍ତି ଶୂନ୍ୟ, ତତ୍ତ୍ୱଜ୍ଞାନାଦି ସମ୍ପନ୍ନ ସେହିପରି କୋଟିବ୍ୟକ୍ତିଙ୍କ ମଧ୍ୟରେ ଭଗବାନଙ୍କ ପ୍ରତି ତନ୍ମୟ, ସ୍ଥିର ଚିତ୍ତ ବ୍ୟକ୍ତି ଅତ୍ୟନ୍ତ ଦୁର୍ଲଭ । ୫ ।

କିନ୍ତୁ ପାପାତ୍ମା, ତ୍ରିଭୁବନର ପୀଡ଼ନକାରୀ ବୃତ୍ରାସୁର ପ୍ରଚଣ୍ଡ ଯୁଦ୍ଧରେ କି ହେତୁ ଭଗବାନଙ୍କ ପ୍ରତି ଏପରି ଅଟଳ ଭକ୍ତି ସମ୍ପନ୍ନ ବ୍ୟକ୍ତି ହୋଇଥିଲା । ୬ ।

ହେ ପ୍ରଭୋ ! ଯେଉଁ ବୃତ୍ରାସୁର ଯୁଦ୍ଧରେ ନିଜର ବୀରତ୍ୱ ଦ୍ୱାରା ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କରିଥିଲା ତାହା ସମ୍ବନ୍ଧେ ଭଗବତ୍ ଭକ୍ତି ବିଷୟରେ ମୋର ବିଶେଷ ସଂଶୟ ଜନ୍ମିଅଛି । ସୁତରାଂ ସମସ୍ତ ବିଷୟ ଶୁଣିବା ନିମିତ୍ତ ମୋର କୌତୂହଳ ଜନ୍ମିଅଛି । ୭ ।

ଶ୍ରୀସୂତ କହିଲେ :—

ତଦନନ୍ତର ଭଗବାନ୍ ଶ୍ରୀ ଶୁକଦେବ ଶ୍ରଦ୍ଧାନ୍ୱିତ ରାଜା ପରୀକ୍ଷିତଙ୍କର ଏପରି ସୁସଙ୍ଗତ ପ୍ରଶ୍ନ ଶ୍ରବଣ କରି ତାହାଙ୍କୁ ପ୍ରଶଂସା କରି ପ୍ରତ୍ୟୁତ୍ତର ଦେଇଥିଲେ । ୮ ।

---

ଏହାଙ୍କ ମଧ୍ୟେ କେହି ନରେ
ମୋକ୍ଷ ବାଞ୍ଛନ୍ତି ଏ ସଂସାରେ
ତାହାଙ୍କ ମଧ୍ୟ କେହି ଜନ
କଷ୍ଟେ ଲଭନ୍ତି ଭଗବାନ
ଦୁର୍ଲଭ ମୁନିମାନଙ୍କର
ବିଷ୍ଣୁ-ଭକତ ଯେଉଁ ନର
କୋଟିକେ ଗୋଟିଏ ସେ ଥାଇ
ଶୁଣିମା ସାବଧାନ ହୋଇ ।୪,୫।

ସ୍ୱଭାବେ ବୃତ୍ର ଅତି ପାପ
ଲୋକଙ୍କୁ ଦିଏ ଅତି ତାପ
କେମନ୍ତେ ମହାଘୋର ରଣେ
ମତି ହୋଇଲା ନାରାୟଣେ
କହିବା ମୋତେ ମୁନିବର
ଏତେଣ ସଂଶୟ ମନ ମୋର
ଯେ ବୃତ୍ର ଘୋର ସଂଗ୍ରାମରେ
ବଳେ ତୋଷିଲା ବଜ୍ରଧରେ ।୬,୭

ଶ୍ରୀସୂତ ଉବାଚ—

ପରୀକ୍ଷିତେ ରାଜା ପ୍ରଶ୍ନ ଶୁଣି
ଆନନ୍ଦେ ସେ ବାଦରାୟଣି
ହରଷ ହୋଇ ମୁନିବର
ବଚନ କହନ୍ତି ମଧୁର ।୮।

ଶ୍ରୀଶୁକ ଉବାଚ ।
ଶୃଣୁଷ୍ୱାବହିତୋ ରାଜନ୍ନିତିହାସମିମଂ ଯଥା ।
ଶ୍ରୁତଂ ଦ୍ୱୈପାୟନମୁଖାନ୍ନାରଦାଦ୍ଦେବଲାଦପି । ୯ ।
ଆସୀଦ୍ରାଜା ସାର୍ବଭୌମଃ ଶୂରସେନେଷୁ ବୈ ନୃପ ।
ଚିତ୍ରକେତୁରିତି ଖ୍ୟାତୋ ଯସ୍ୟାସୀତ୍ କାମଧୁଙ୍‌ମହୀ । ୧୦ ।
ତସ୍ୟ ଭାର୍ଯ୍ୟାସହସ୍ରାଣାଂ ସହସ୍ରାଣି ଦଶାଭବନ୍ ।
ସାନ୍ତାନକଶ୍ଚାପି ନୃପୋ ନ ଲେଭେ ତାସୁ ସନ୍ତତିମ୍ । ୧୧
ରୂପୌଦାର୍ଯ୍ୟବୟୋଜନ୍ମବିଦ୍ୟୈଶ୍ୱର୍ଯ୍ୟଶ୍ରିୟାଦିଭିଃ ।
ସମ୍ପନ୍ନସ୍ୟ ଗୁଣୈଃ ସର୍ବୈଶ୍ଚିନ୍ତା ବନ୍ଧ୍ୟାପତେରଭୂତ୍ । ୧୨ ।
ନ ତସ୍ୟ ସମ୍ପଦଃ ସର୍ବା ମହିଷ୍ୟୋ ବାମଲୋଚନାଃ ।
ସାର୍ବଭୌମସ୍ୟ ଭୂଶ୍ଚେୟମଭବନ୍ ପ୍ରୀତିହେତବଃ । ୧୩ ।

---

ଶ୍ରୀଶୁକଦେବ କହିଲେ :—

ହେ ମହାରାଜ ! ବ୍ୟାସଦେବ, ନାରଦ ଓ ଦେବଳ ପ୍ରଭୃତିଙ୍କଠାରୁ ମୁଁ ବୃତ୍ର ସମ୍ବନ୍ଧେ ଯେଉଁ ବୃତ୍ତାନ୍ତ ଶୁଣି ଅଛି, ଆପଣ ତାହା ମନଯୋଗ ପୂର୍ବକ ଶ୍ରବଣ କରନ୍ତୁ । ୯ ।

ହେ ରାଜନ୍ ! ଶୂରସେନ ଦେଶରେ ଚିତ୍ରକେତୁ ନାମକ ଜଣେ ବିଖ୍ୟାତ ସମ୍ରାଟ ଥିଲେ । ପୃଥିବୀ ଦେବୀ ସ୍ୱୟଂ ତାହାଙ୍କର ଅଭିଳଷିତ ବର ପ୍ରଦାନ କରୁଥିଲେ । ୧୦ ।

ସେହି ଚିତ୍ରକେତୁଙ୍କର କୋଟି ସଂଖ୍ୟକ ଭାର୍ଯ୍ୟା ଥିଲେ ଏବଂ ସେ ସ୍ୱୟଂ ସନ୍ତାନୋତ୍ପାଦନ କ୍ଷମ ଥିଲେ ମଧ୍ୟ ସେହି ପତ୍ନୀମାନଙ୍କ ଗର୍ଭରେ ତାହାଙ୍କର ସନ୍ତାନ ଜନ୍ମିଲ ନାହିଁ । ୧୧ ।

ରୂପ, ଉଦାରତା, ଯୌବନ, ବଂଶମର୍ଯ୍ୟାଦା, ବିଦ୍ୟା, ପ୍ରଭୁତ୍ୱ, ସମ୍ପଦ ଇତ୍ୟାଦି ସର୍ବପ୍ରକାର ଗୁଣ ଥିଲେ ମଧ୍ୟ ସେ ବନ୍ଧ୍ୟାମାନଙ୍କର ପତି ହେବାରୁ ଅତ୍ୟନ୍ତ ଚିନ୍ତାଗ୍ରସ୍ତ ହୋଇଥିଲେ । ୧୨ ।

ସର୍ବପ୍ରକାର ସମ୍ପଦ, ରୂପସୀ ମହିଷୀଗଣ, ରାଜ୍ୟ, ଭୂମି, କିଛିହିଁ ତାହାଙ୍କର ଆନନ୍ଦ ଦାୟକ ହେଲା ନାହିଁ । ୧୩ ।

---

ଶ୍ରୀଶୁକ ଉବାଚ—
ଶୁଣ ରାଜନ ଏକମନ
ଯେ ଇତିହାସ ପୁରାତନ
ବେଦବ୍ୟାସଙ୍କ ମୁଖୁଁ ମୁହିଁ
ନାରଦ ଠାରୁଁ ଶୁଣିଛଇଁ । ୯ ।
ପୂର୍ବେ ଶୂରସେନ ଦେଶରେ
ଥିଲା ଯେ ଏକ ନୃପବରେ

ଚିତ୍ରକେତୁ ନାମ ତାହାର
କାମଧେନୁ ପୃଥ୍ୱୀ ଯାହାର ।୧୦।
ଦଶସହସ୍ର ପତ୍ନୀ ତାର
ରୂପେ କ ଦେବା ସଂସାରର
ଯେତେକ ଥିଲେ ତାର ନାରୀ
ପୁତ୍ର ନୋହିଲ ସେ କାହାର ।୧୧
ରୂପ ସୁନ୍ଦର ମନୋହର
ବିଦ୍ୟା ସମ୍ପଦ ମତ ଧୀର

ଏ ସର୍ବ ଗୁଣ ଯେ ତାହାର
ସୁତ ନ ଲଭି ଚିନ୍ତାତୁର ।୧୨।
ଅମାତ୍ୟ ସମ୍ପଦ ସହିତେ
ପଟ୍ଟମହିଷୀ ତାର ଯେତେ
କାମଦୁଘାର ପ୍ରାୟ ମହୀ
ସୁଖ ନୋହିଲେ ତାର କେହି ।୧୩

ତଦ୍ୟୈକଦା ତୁ ଭବନମଙ୍ଗିରା ଭଗବାନୃଷିଃ ।
ଲୋକାନନୁଚରନ୍ନେତାନୁପାଗଚ୍ଛଦ୍‌ଯଦୃଚ୍ଛୟା । ୧୪ ।
ତଂ ପୂଜୟିତ୍ୱା ବିଧିବତ୍ ପ୍ରତ୍ୟୁତ୍ଥାନାର୍ହଣାଦିଭିଃ ।
କୃତାତିଥ୍ୟମୁପାସୀଦତ୍ ସୁଖାସୀନଂ ସମାହିତଃ । ୧୫ ।
ମହର୍ଷିସ୍ତମୁପାସୀନଂ ପ୍ରଶ୍ରୟାବନତଂ କ୍ଷିତୌ ।
ପ୍ରତିପୂଜ୍ୟ ମହାରାଜ ସମାଭାଷ୍ୟେଦମବ୍ରବୀତ୍ । ୧୬ ।
ଶ୍ରୀଅଙ୍ଗିରା ଉବାଚ ।
ଅପି ତେଽନାମୟଂ ସ୍ୱସ୍ତି ପ୍ରକୃତୀନାଂ ତଥାତ୍ମନଃ ।
ଯଥା ପ୍ରକୃତିଭିର୍ଗୁପ୍ତଃ ପୁମାନ୍ ରାଜା ଚ ସପ୍ତଭିଃ । ୧୭ ।
ଆତ୍ମାନଂ ପ୍ରକୃତିଷ୍ୱଦ୍ଧା ନିଧାୟ ଶ୍ରେୟ ଆପ୍ନୁୟାତ୍ ।
ରାଜ୍ଞା ତଥା ପ୍ରକୃତୟୋ ନରଦେବାହିତାଧୟଃ । ୧୮ ।

---

ଏକଦା ଭଗବାନ୍ ଅଙ୍ଗିରା ଋଷି ମର୍ତ୍ତ୍ୟଲୋକରେ ଭ୍ରମଣ କରୁ କରୁ ହଠାତ୍ ଚନ୍ଦ୍ରକେତୁଙ୍କ ଗୃହରେ ଉପସ୍ଥିତ ହୋଇଥିଲେ । ୧୪ ।

ଚନ୍ଦ୍ରକେତୁ ଅଙ୍ଗିରା ଋଷିଙ୍କୁ ସମ୍ମାନ ପ୍ରଦର୍ଶନ, ପାଦ୍ୟ, ଅର୍ଘ୍ୟ ଦ୍ୱାରା ଅର୍ଚ୍ଚନା ଇତ୍ୟାଦି ଯଥୋଚିତ ଆତିଥ୍ୟ ସତ୍କାର କରି ତାହାଙ୍କୁ ଉପବେଶନ କରାଇ ନିଜେ ତାହାଙ୍କ ନିକଟରେ ବସିଥିଲେ । ୧୫ ।

ହେ ମହାରାଜ ପରୀକ୍ଷିତ ! ବିନୟାବନତ ଓ ମୃତ୍ତିକାରେ ଉପବିଷ୍ଟ ରାଜା ଚନ୍ଦ୍ରକେତୁଙ୍କୁ ମହର୍ଷି ଅଙ୍ଗିରା ପ୍ରତ୍ୟଭିବାଦନ କରି କହିଥିଲେ । ୧୬ ।

ଶ୍ରୀଅଙ୍ଗିରା କହିଲେ :—

ଆପଣଙ୍କର ନିଜର ଏବଂ ପ୍ରଜାମାନଙ୍କର କୁଶଳ ତ ? ଅହଙ୍କାର, ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦ ଏହି ସପ୍ତପ୍ରକୃତି ଦ୍ୱାରା ଜୀବ ସର୍ବଦା ରକ୍ଷିତ ହୋଇଥାଏ । ସେହିପରି ରାଜା ମଧ୍ୟ ଗୁରୁ, ମନ୍ତ୍ରୀ, ଜନପଦ, ଦୁର୍ଗ, ଧନ, ଦଣ୍ଡ ଓ ମିତ୍ର ଏହି ସପ୍ତ ପ୍ରକୃତି ଦ୍ୱାରା ସର୍ବଦା ରକ୍ଷିତ ହୋଇଥାନ୍ତି । ୧୭ ।

ରାଜା ସେହି ପ୍ରକୃତିବର୍ଗଙ୍କର ଅନୁବର୍ତ୍ତୀ ହୋଇ ମଙ୍ଗଳ ଲାଭ କରିଥାନ୍ତି ଏବଂ ପ୍ରକୃତିବର୍ଗ ମଧ୍ୟ ରାଜା ସେମାନଙ୍କର ସକଳ ଭାର ଗ୍ରହଣ କରିବାରୁ ମଙ୍ଗଳ ଲାଭ କରିଥାନ୍ତି । ୧୮ ।

---

ଶୁଣ ରାଜନ ଏକ ଦିନେ
ସେ ଚନ୍ଦ୍ରକେତୁର ଭୁବନେ
ଅଙ୍ଗିରଋଷି ବ୍ରହ୍ମସୁତ
ମିଳିଲେ ରାଜାର ଅଗ୍ରତ
ସ୍ୱଇଚ୍ଛା ଲୋକରେ ବିହାର
ମିଳିଲେ ଚନ୍ଦ୍ରକେତୁ ପୁର । ୧୪ ।
ତାହାଙ୍କୁ ଦେଖି ସେ ରାଜନ
ତତକ୍ଷଣେ ଛାଡ଼ିଲେ ଆସନ

ଉତ୍ତମ ଆସନେ ବସାଇ
ପୂଜିଲେ ପାଦ୍ୟ ଅର୍ଘ୍ୟ ଦେଇ
ସୁଖେ ଆସନେ ବସି ଋଷି
ଚନ୍ଦ୍ରକେତୁଙ୍କୁ ପରଶଂସି
ଭକତି ଦେଖିଣ ରାଜାର
ଆନନ୍ଦ ହୋଇ ଋଷିବର
ରାଜାଙ୍କୁ କରି ଆରାଧନ
କହନ୍ତି ମଧୁର ବଚନ ।୧୫,୧୬।

ଶ୍ରୀ ଅଙ୍ଗିରା ଉବାଚ—
ହେ ରାଜା ଚନ୍ଦ୍ରକେତୁ ଶୁଣ
ତୁମ୍ଭର ପରମ କଲ୍ୟାଣ
ତୁମ୍ଭର ପାତ୍ର ମନ୍ତ୍ରୀ ଯେତେ
କୁଶଳଟିକି ଏ ସମସ୍ତେ ?
ଦାରା ତନୟ ଭୃତ୍ୟ ଯେତେ
ସୁହୃଦ ପରଜା ସହିତେ

ଅପି ଦାରାଃ ପ୍ରଜାମାତ୍ୟା ଭୃତ୍ୟାଃ ଶ୍ରେଣ୍ୟୋଽଥ ମନ୍ତ୍ରିଣଃ ।
ପୌରା ଜାନପଦା ଭୂପା ଆତ୍ମଜା ବଶବର୍ତ୍ତିନଃ । ୧୯ ।
ଯସ୍ୟାତ୍ମାନୁବଶଶ୍ଚେତ୍ ସ୍ୟାତ୍ ସର୍ବେ ତଦ୍‌ବଶଗା ଇମେ ।
ଲୋକାଃ ସପାଲା ଯଚ୍ଛନ୍ତି ସର୍ବେ ବଲିମତନ୍ଦ୍ରିତାଃ । ୨୦ ।
ଆତ୍ମନଃ ପ୍ରୀୟତେ ନାତ୍ମା ପରତଃ ସ୍ୱତ ଏବ ବା ।
ଲକ୍ଷୟେଽଲବ୍ଧକାମଂ ତ୍ୱାଂ ଚିନ୍ତୟା ଶବଲଂ ମୁଖମ୍ । ୨୧ ।
ଏବଂ ବିକଳ୍ପିତୋ ରାଜନ୍ ବିଦୁଷା ମୁନିନାପି ସଃ ।
ପ୍ରଶ୍ରୟାବନତୋଽଭ୍ୟାହ ପ୍ରଜାକାମସ୍ତତୋ ମୁନିମ୍ । ୨୨ ।

ଶ୍ରୀଚିତ୍ରକେତୁରୁବାଚ ।

ଭଗବନ୍ କିଂ ନ ବିଦିତଂ ତପୋଜ୍ଞାନସମାଧିଭିଃ ।
ଯୋଗିନାଂ ଧ୍ୱସ୍ତପାପାନାଂ ବହିରନ୍ତଃ ଶରୀରିଷୁ । ୨୩ ।

---

ଆପଣାର ପତ୍ନୀ, ପ୍ରଜା, ଅମାତ୍ୟ, ଭୃତ୍ୟ, ବଣିକ ପ୍ରଭୃତି ମନ୍ତ୍ରୀ ପୁରବାସୀ, ବିଭିନ୍ନ ଦେଶବାସୀ, ଅଧୀନସ୍ଥ ନୃପତିଗଣ ଏବଂ ପୁତ୍ରଗଣ ଏମାନେ ସମସ୍ତେ ଆପଣଙ୍କର ବଶୀଭୂତ ଅଛନ୍ତି ତ ? । ୧୯ ।

ଯେ କୌଣସି ବ୍ୟକ୍ତି ଯଦି ନିଜର ମନକୁ ବଶୀଭୂତ କରିପାରେ ତେବେ ପୂର୍ବୋକ୍ତ ପତ୍ନୀ ପ୍ରଭୃତି ସମସ୍ତେ ତାହାର ବଶୀଭୂତ ହୁଅନ୍ତି ଏବଂ ସମସ୍ତ ଲୋକ ଓ ଲୋକପାଳଗଣ ଉତ୍ସାହରେ ତାହାକୁ ପୂଜୋପହାର ପ୍ରଦାନ କରିଥାନ୍ତି । ୨୦ ।

ଆପଣ ନିଜର ବିଷୟରେ ସନ୍ତୁଷ୍ଟ ନୁହନ୍ତି ବୋଲି ମନେ ହୁଏ । ଏଥିର କାରଣ କଅଣ ? ଆପଣଙ୍କର ମୁଖ ମଣ୍ଡଳ ଚିନ୍ତାଯୁକ୍ତ ସୁତରାଂ ଆପଣ କୌଣସି ବାଞ୍ଛିତ ଫଳରୁ ବଞ୍ଚିତ ହୋଇ ଅଛନ୍ତି କି ? । ୨୧ ।

ଅଙ୍ଗିରା ମୁନି ସର୍ବଜ୍ଞ ହେଲେ ମଧ୍ୟ ଏହିପରି ସଂଶୟ ପ୍ରକାଶ କରି ପ୍ରଶ୍ନ କରିଥିଲେ । ତେଣୁ ଏହି ପୁତ୍ରାଭିଳାଷୀ ରାଜା ଚିତ୍ରକେତୁ ବିନୟାବନତ ଭାବରେ ତାହାଙ୍କୁ କହିଲେ । ୨୨ ।

ଶ୍ରୀଚିତ୍ରକେତୁ କହିଲେ :—

ହେ ଭଗବନ୍ ! ନିଷ୍ପାପ ଯୋଗୀମାନଙ୍କୁ ତପସ୍ୟା, ଜ୍ଞାନ ଓ ସମାଧି ବଳରେ ପ୍ରାଣୀ ବର୍ଗଙ୍କର ବାହ୍ୟିକ ଓ ଆଭ୍ୟନ୍ତରୀଣ କୌଣସି ଅବସ୍ଥା ଅପରିଜ୍ଞାତ ଥାଏ କି ? । ୨୩ ।

---

ଯାହାର ଆତ୍ମା ଆତ୍ମବଶ
ତାହାର ବଶ ଏ ଅଶେଷ
ଯାହାର ଆତ୍ମା ବଶ ହୋଇ
ସର୍ବତ୍ର ପୂଜ୍ୟ ସେ ଅଟଇ । ୧୯-୨୦
ଆତ୍ମସମ୍ପଦ ତୋର ଯେତେ
ଅମାତ୍ୟ ପୁରବାସୀ ଯେତେ

ତୁମ୍ଭର ପ୍ରିୟ ନୋହେ କେହି
ଏମନ୍ତ ପ୍ରାୟ ମୁଁ ମଣଇଁ
ଚିନ୍ତା-ମଳିନ ମୁଖ ତୋର
ଅଲବ୍ଧ କାମେ ନୃପବର । ୨୧ ।
ରାଜା ଏମନ୍ତ ବାକ୍ୟ ଶୁଣି
ଶୁଣ ପରୀକ୍ଷ ନୃପମଣି

ସାଦରେ ପୁତ୍ର-କାମୀ ହୋଇ
ହରଷେ ମୁନିଙ୍କୁ କହଇ । ୨୨ ।

ଶ୍ରୀଚିତ୍ରକେତୁରୁବାଚ—

ହେମୁନି ତୁମ୍ଭ ଅଗୋଚର
କି ଅବା ଅଛି ଏ ସଂସାର

ତଥାପି ପୃଚ୍ଛତୋ ବ୍ରୂୟାଂ ବ୍ରହ୍ମନ୍ନାତ୍ମନ ଚିନ୍ତିତମ୍ ।
ଭବତୋ ବିଦୁଷଶ୍ଚାପି ଶ୍ରେଦିତସ୍ତ୍ୱଦନୁଜ୍ଞୟା । ୨୪ ।
ଲୋକପାଲୈରପି ପ୍ରାର୍ଥ୍ୟାଃ ସାମ୍ରାଜ୍ୟୈଶ୍ୱର୍ଯ୍ୟସମ୍ପଦଃ ।
ନ ନନ୍ଦୟନ୍ତ୍ୟପ୍ରଜଂ ମାଂ କ୍ଷୁତ୍ତୃଟ୍‌କାମମିବାପରେ । ୨୫ ।
ତନ୍ନଃ ପାହି ମହାଭାଗ ପୂର୍ବୈଃ ସହ ଗତଂ ତମଃ ।
ଯଥା ତରେମ ଦୁଷ୍ପାରଂ ପ୍ରଜୟା ତଦ୍‌ବିଧେହି ନଃ । ୨୬ ।
ଶ୍ରୀଶୁକ ଉବାଚ ।
ଇତ୍ୟର୍ଥିତଃ ସ ଭଗବାନ୍ କୃପାଳୁର୍ବ୍ରହ୍ମଣଃ ସୁତଃ ।
ଶ୍ରପୟିତ୍ୱା ଚରୁଂ ତ୍ୱାଷ୍ଟ୍ରଂ ତ୍ୱଷ୍ଟାରମଯଜଦ୍‌ବିଭୁଃ । ୨୭ ।

---

ହେ ମୁନିବର ! ତଥାପି ଆପଣ ଯେତେବେଳେ ପ୍ରଶ୍ନ କରୁଅଛନ୍ତି ସେତେବେଳେ ଆପଣ ଅବଗତ ଥିଲେ ମଧ୍ୟ ମୁଁ ଆପଣଙ୍କ ଆଦେଶ ପାଳନ କରି ମୋ ମନୋଗତ ଚିନ୍ତାର ବିଷୟ କହୁଅଛି ଶ୍ରବଣ କରନ୍ତୁ । ୨୪।

ଯେଉଁ ବ୍ୟକ୍ତି କ୍ଷୁଧା ଓ ତୃଷ୍ଣାରେ କାତର ହୋଇ ଅନ୍ନଜଳ ପାଇଁ ବ୍ୟାକୁଳ ହେଉଥାଏ ତାହାର ଯେପରି ମାଲ୍ୟ ଚନ୍ଦନ ପ୍ରଭୃତି ଅନ୍ୟ ଭୋଗ୍ୟବସ୍ତୁ ସୁଖୋତ୍ପାଦନ କରି ନ ପାରେ ମୋର ସେହିପରି ଲୋକପାଳଗଣଙ୍କର ସ୍ପୃହଣୀୟ ରାଜ୍ୟ, ଐଶ୍ୱର୍ଯ୍ୟ ଏବଂ ସମ୍ପଦ ଥିଲେ ମଧ୍ୟ ସନ୍ତାନ ଅଭାବରୁ ସେ ସବୁ ମୋର ଶାନ୍ତି ବିଧାନ କରି ପାରୁନାହିଁ । ୨୫ ।

ହେ ମହାମୁନ୍ ! ଆପଣ ମୋତେ ରକ୍ଷା କରନ୍ତୁ । ପୁତ୍ରାଭାବ ହେତୁ ମୋ ଭାଗ୍ୟରେ ଯେଉଁ ଅଲଙ୍ଘନୀୟ ନରକ ଭୋଗ ଅଛି ପୁତ୍ରୋତ୍ପାଦନ ଦ୍ୱାରା ମୁଁ କପରି ପୂର୍ବପୁରୁଷ ମାନଙ୍କ ସହିତ ସେହି ନରକରୁ ଉଦ୍ଧାର ପାଇବି ତହିଁର ବିଧାନ କୁହନ୍ତୁ । ୨୬ ।

ଶ୍ରୀଶୁକଦେବ କହିଲେ :—

ସାମର୍ଥ୍ୟଶାଳୀ, ଦୟାର୍ଦ୍ରଚିତ୍ତ, ବ୍ରହ୍ମାପୁତ୍ର ଭଗବାନ୍ ଅଙ୍ଗିରା ଚିତ୍ରକେତୁଙ୍କର ଏହି ପ୍ରାର୍ଥନାରେ ତ୍ୱଷ୍ଟୃଦୈବତ ନାମକ ଚରୁ ପ୍ରସ୍ତୁତ କରି ତଦ୍ୱାରା ତ୍ୱଷ୍ଟା ଯାଗ କରିଥିଲେ । ୨୭ ।

---

ପ୍ରାଣିର ଅନ୍ତର ବାହାରେ
ଦେଖ ତପସ୍ୟା ପ୍ରଭାବରେ
ତୁମ୍ଭର ଆଜ୍ଞା ପରମାଣେ
କହିବି ଶୁଣ ସାବଧାନେ
ମନରେ ଚିନ୍ତା ଯେ ମୋହର
ପ୍ରଶ୍ନ ଯେ କଲ ମୁନିବର । ୨୩, ୨୪
ଦେବଗଣଙ୍କ ଯେ ଦୁର୍ଲ୍ଲଭ
ସାମ୍ରାଜ୍ୟ ସମ୍ପଦ ବିଭବ

ପୁତ୍ର ବିହୀନେ ମୋର ଦେଖି
ସୁଖ କେବେହେଁ ନ ଭଜଇ
କ୍ଷୁଧା-ତୃଷାରେ ଖିନ୍ନ ଜନ
ନ ଲୋଡ଼େ ବିନୁ ଅନ୍ନପାନ । ୨୫ ।
ହେ ମହାଭାଗ ମୁନିବର
କେମନ୍ତେ ତରିଇ ସଂସାର
ପିତୃ ଋଣରୁ ମୋତେ ପାର
କରିବା ତୁମ୍ଭ ବ୍ୟବହାର

ପୁତ୍ର ଯେମନ୍ତେ ମୋର ହୋଇ
ସଂସାର ଦୁଃଖରୁ ତରଇ । ୨୬ ।

ଶ୍ରୀଶୁକ ଉବାଚ—

ରାଜାର ଶୁଣି ଏ ବଚନ
କୃପାଳୁ ବ୍ରହ୍ମାଙ୍କ ନନ୍ଦନ
ଯଜ୍ଞ କରିଣ ମୁନିବର
ଆରାଧି ଅଖିଳ ଈଶ୍ୱର

ଜ୍ୟେଷ୍ଠା ଶ୍ରେଷ୍ଠା ଚ ଯା ରାଜ୍ଞୋ ମହିଷୀଣାଂ ଚ ଭାରତ ।
ନାମ୍ନା କୃତଦ୍ୟୁତିସ୍ତସ୍ୟୈ ଯଜ୍ଞୋଚ୍ଛିଷ୍ଟମଦାଦ୍‌ଦ୍ୱିଜଃ । ୨୮ ।
ଅଥାହ ନୃପତିଂ ରାଜନ୍ ଭବିତୈକସ୍ତବାତ୍ମଜଃ ।
ହର୍ଷଶୋକପ୍ରଦସ୍ତୁଭ୍ୟମିତି ବ୍ରହ୍ମସୁତୋ ଯଯୌ । ୨୯ ।
ସା ପି ତତ୍ ପ୍ରାଶନାଦେବ ଚିତ୍ରକେତୋରଧାରୟତ୍ ।
ଗର୍ଭଂ କୃତଦ୍ୟୁତିର୍ଦେବୀ କୃତ୍ତିକାଗ୍ନେରିବାତ୍ମଜମ୍ । ୩୦ ।
ତସ୍ୟା ଅନୁଦିନଂ ଗର୍ଭଃ ଶୁକ୍ଳପକ୍ଷ ଇବୋଡୁପଃ ।
ବବୃଧେ ଶୂରସେନେଶତେଜସା ଶନକୈର୍ନୃପ । ୩୧ ।
ଅଥ କାଲ ଉପାବୃତ୍ତେ କୁମାରଃ ସମଜାୟତ ।
ଜନୟନ୍ ଶୂରସେନାନାଂ ଶୃଣ୍ୱତାଂ ପରମାଂ ମୁଦମ୍ । ୩୨ ।

---

ହେ ଭରତ ବଂଶଧର ! ଚିତ୍ରକେତୁଙ୍କର ମହିଷୀମାନଙ୍କ ମଧ୍ୟରେ ସର୍ବଜ୍ୟେଷ୍ଠା ଓ ଶ୍ରେଷ୍ଠା ପତ୍ନୀଙ୍କର ନାମ କୃତ ଦ୍ୟୁତି । ଅଙ୍ଗିରା ଯଜ୍ଞ ସମାପନ କରି ଚରୁ ଅନ୍ନକୁ ସେହି କୃତଦ୍ୟୁତିଙ୍କୁ ପ୍ରଦାନ କରିଥିଲେ । ୨୮ ।

ତଦନନ୍ତର ଅଙ୍ଗିରା ଚିତ୍ରକେତୁଙ୍କୁ କହିଲେ, ହେ ରାଜନ୍ ! ତୁମ୍ଭର ଗୋଟିଏ ପୁତ୍ର ଜନ୍ମିବ ଏବଂ ସେହି ପୁତ୍ର ହେତୁ ତୁମ୍ଭର ହର୍ଷ ଓ ଶୋକ ଉଭୟ ଜାତ ହେବ। ଏହା କହି ସେ ସ୍ୱସ୍ଥାନକୁ ଚାଲିଗଲେ । ୨୯

ଚିତ୍ର କେତୁଙ୍କର ମହିଷୀ କୃତଦ୍ୟୁତି ମଧ୍ୟ ସେହି ଚରୁ ଭକ୍ଷଣ ପରେ କୃତ୍ତିକା ଯେପରି ଅଗ୍ନି ନିକଟରୁ ପୁତ୍ର ପାଇଥାଏ ସେହିପରି ନିଜ ପତିଙ୍କ ନିକଟରୁ ଗର୍ଭଧାରଣ କରିଥିଲେ । ୩୦ ।

ହେ ରାଜନ୍ ! ଶୂରସେନାଧିପତି ଚିତ୍ରକେତୁଙ୍କ ଔରସରେ କୃତଦ୍ୟୁତିଙ୍କର ଯେଉଁ ଗର୍ଭଜାତ ହୋଇଥିଲା ତାହା ଶୁକ୍ଳ ପକ୍ଷୀୟ ଚନ୍ଦ୍ରତୁଲ୍ୟ ଦିନୁଦିନ ବର୍ଦ୍ଧିତ ହେଲା । ୩୧ ।

ତଦନନ୍ତର ସମୟ ଉପସ୍ଥିତ ହୁଅନ୍ତେ କୃତଦ୍ୟୁତିଙ୍କର ଗୋଟିଏ ପୁତ୍ର ଜନ୍ମିଲା । ଶୂରସେନ ବାସୀମାନେ ତାହା ଶ୍ରବଣ କରି ଅତ୍ୟନ୍ତ ଆନନ୍ଦିତ ହେଲେ । ୩୨ ।

---

ରାଜାର ଜ୍ୟେଷ୍ଠ ଯେହୁ ନାରୀ
କୃତଦ୍ୟୁତି ନାମ ତାହାର
ଚରୁ ତାହାକୁ ନେଇ ଦେଲେ
ରାଜାକୁ ଏମନ୍ତ କହିଲେ । ୨୭,୨୮
ହେ ଚିତ୍ରକେତୁ ନୃପବର
ହୋଇବ ଏକ ତୋ କୁମର
ହରଷ ଶୋକ ଦେବ ତୋତେ
କହିଣ ଗଲେ ମୁନିବରେ । ୨୯ ।

ଚିତ୍ରକେତୁରେ ତହୁଁ ସେହି
କୃତଦ୍ୟୁତି ଯେ ମହାଦେଈ
ଚରୁର ଭୋଜନ ମାତ୍ରକେ
ଗର୍ଭ ଧଇଲେ ସେହୁ ସୁଖେ
ଅଗ୍ନିରୁ କୃତିକା ଯେମନ୍ତ
ଗର୍ଭ ଧଇଲା ସେହି ମତ । ୩୦ ।
ତାହାର ଗର୍ଭ ପ୍ରତିଦିନେ
ଶୁକ୍ଳ ପକ୍ଷର ଚନ୍ଦ୍ର ଯେହ୍ନେ

ଚିତ୍ରକେତୁ ତେଜେ ରାଜନ
ଗର୍ଭ ବଢ଼ିଲା ଦିନୁଦିନ । ୩୧ ।
ଏ ଅନନ୍ତରେ ସମୟରେ
ଜନ୍ମିଲା ତାହାର କୁମରେ
ଶୂରସେନରେ ଯେତେ ଲୋକ
ହରଷ ଲଭିଲେ ଅନେକ । ୩୨।

ହୃଷ୍ଟୋ ରାଜା କୁମାରସ୍ୟ ସ୍ନାତଃ ଶୁଚିରଲଙ୍କୃତଃ ।
ବାଚୟିତ୍ୱାଶିଷୋ ବିପ୍ରୈଃ କାରୟାମାସ ଜାତକମ୍ । ୩୩ ।
ତେଭ୍ୟୋ ହିରଣ୍ୟଂ ରଜତଂ ବାସାଂସ୍ୟାଭରଣାନି ଚ ।
ଗ୍ରାମାନ୍ ହୟାନ୍ ଗଜାନ୍ ପ୍ରାଦାଦ୍ଧେନୂନାମର୍ବୁଦାନି ଷଟ୍ ।୩୪।
ବବର୍ଷ କାମାନନ୍ୟେଷାଂ ପର୍ଜନ୍ୟ ଇବ ଦେହିନାମ୍ ।
ଧନ୍ୟଂ ଯଶସ୍ୟମାୟୁଷ୍ୟଂ କୁମାରସ୍ୟ ମହାମନାଃ । ୩୫ ।
କୃଚ୍ଛ୍ରଲବ୍‌ଧେଽଥ ରାଜର୍ଷେସ୍ତନୟେଽନୁଦିନଂ ପିତୁଃ ।
ଯଥା ନିଃସ୍ୱସ୍ୟ କୃଚ୍ଛ୍ରାପ୍ତେ ଧନେ ସ୍ନେହୋଽନ୍ୱବର୍ଦ୍ଧତ । ୩୬ ।
ମାତୁସ୍ତ୍ୱତିତରାଂ ପୁତ୍ରେ ସ୍ନେହୋ ମୋହସମୁଦ୍‌ଭବଃ ।
କୃତଦ୍ୟୁତେଃ ସପତ୍ନୀନାଂ ପ୍ରଜାକାମଜ୍ୱରୋଽଭବତ୍ । ୩୭ ।

---

ରାଜା ଚିତ୍ରକେତୁ ଆନନ୍ଦିତ ଚିତ୍ତରେ ସ୍ନାନକରି, ପବିତ୍ର ଓ ଅଳଙ୍କୃତ ହୋଇ ବ୍ରାହ୍ମଣମାନଙ୍କ ଦ୍ୱାରା ନବଜାତ ପୁତ୍ର ପ୍ରତି ଆଶୀର୍ବାଦ କରାଇ ତାହାର ଜାତକର୍ମ ସମ୍ପାଦନ କରିଥିଲେ । ୩୩ ।

ରାଜା ସେହି ବ୍ରାହ୍ମଣମାନଙ୍କୁ ସ୍ୱର୍ଣ୍ଣ, ରୌପ୍ୟ, ବସ୍ତ୍ର, ଅଳଙ୍କାର, ଗ୍ରାମ, ଅଶ୍ୱ, ହସ୍ତୀ ଏବଂ ଛଅ ଅର୍ବୁଦ ଗାଈ ପ୍ରଦାନ କରିଥିଲେ । ୩୪ ।

ଉଦାର ଚେତା ରାଜା ମେଘ ପ୍ରାଣିମାନଙ୍କର ହିତାର୍ଥେ ଜଳ ବର୍ଷଣ କଲାପରି ଅକାତରରେ ଅନ୍ୟାନ୍ୟ ଲୋକମାନଙ୍କର ଇଚ୍ଛାନୁସାରେ ସେମାନଙ୍କୁ ପୁତ୍ରର ଧନ, ଯଶ, ଆୟୁ ବୃଦ୍ଧି କାମନାରେ ବିବିଧବସ୍ତୁ ପ୍ରଦାନ କରିଥିଲେ । ୩୫ ।

ତଦନନ୍ତର ରାଜର୍ଷି ଚିତ୍ରକେତୁଙ୍କର ଦରିଦ୍ରର କଷ୍ଟ ଅର୍ଜିତ ଧନ ପରି ଦିନୁ ଦିନ ମମତା ବୃଦ୍ଧି ପାଇଥିଲା । ୩୬ ।

ପୁତ୍ରପ୍ରତି ମାତା କୃତ ଦ୍ୟୁତିଙ୍କର ଏତେ ଅଧିକ ସ୍ନେହ ଜନ୍ମିଥିଲା ଯେ ଏବଂ ତାହାଙ୍କର ଏପରି ମୋହ ଜନ୍ମିଥିଲା ଯେ କୃତ ଦ୍ୟୁତିଙ୍କର ସପତ୍ନୀମାନଙ୍କର ହୃଦୟରେ ପୁତ୍ର କାମନାରେ ଅତ୍ୟନ୍ତ ସନ୍ତାପ ଉପସ୍ଥିତ ହୋଇଥିଲା । ୩୭ ।

---

ହରଷ ହୋଇ ସେ ରାଜନ
ତକ୍ଷଣେ କରି ସେ ସ୍ନାହାନ
ଶୁଚି ହୋଇଣ ନୃପବର
ଭୂଷଣ ହୋଇ ଅଳଙ୍କାର
ବ୍ରାହ୍ମଣ ଆଣି ବେଦ ଧର୍ମ
କଲେ ସେ ପୁତ୍ର ଜାତକର୍ମ ।୩୩।
ବ୍ରାହ୍ମଣେ ସୁବର୍ଣ୍ଣ ରଜତ
ଦେଲେ ସେ ଧେନୁ ଶତ ଶତ

ପୃଥିବୀ ଗଜ ହୟମାନ
ଦେଲେ ସେ ବିବିଧ ବସନ ।୩୪।
ଯେ ଯାହା ଲୋକେ ବାଞ୍ଛାକଲେ
ମନ ସନ୍ତୋଷେ ବହି ନେଲେ
ପ୍ରଜା ସନ୍ତୋଷେ ମଘବାନ
ବରଷା କରଇ ଯେସନ
ପୁତ୍ର ଆୟୁଷ ଯଶ ଧର୍ମ
ବଢ଼ିବା ଅର୍ଥେ ଦେଲେ ଦାନ ।୩୫।

କଷ୍ଟରେ ଲଭିଲେ ସେ ସୁତ
ତାଠାରେ ସ୍ନେହ ତା ବହୁତ
ନିର୍ଦ୍ଧନ ଯେତେକ ଧନପାଇ
ତେସନେ ସ୍ନେହତା ବଢ଼ଇ ।୩୬।
ମାତା ଯେ ଅତି ସ୍ନେହଭରେ
ମୋହ ହୋଇଲେ ପୁତ୍ରଠାରେ
କୃତଧ୍ୟୁତି ସପତ୍ନୀମାନେ
ଦୁଃଖିତ ସନ୍ତତି କାରଣେ ।୩୭।

ଚିତ୍ରକେତୋରତିପ୍ରୀତିର୍ଯଥା ଦାରେ ପ୍ରଜାବତି ।
ନ ତଥାନ୍ୟେଷୁ ସଞ୍ଜଜ୍ଞେ ବାଲଂ ଲାଳୟତୋଽନ୍ୱହମ୍ । ୩୮ ।
ତାଃ ପର୍ଯ୍ୟତପ୍ୟନ୍ନାତ୍ମାନଂ ଗର୍ହୟନ୍ତ୍ୟୋଽଭ୍ୟସୂୟୟା ।
ଆନପତ୍ୟେନ ଦୁଃଖେନ ରାଜ୍ଞଶ୍ଚାନାଦରେଣ ଚ । ୩୯ ।
ଧିଗପ୍ରଜାଂ ସ୍ତ୍ରିୟଂ ପାପାଂ ପତ୍ୟୁଶ୍ଚାଗୃହସମ୍ମତାମ୍ ।
ସୁପ୍ରଜାଭିଃ ସପତ୍ନୀଭିର୍ଦାସୀମିବ ତିରସ୍କୃତାମ୍ । ୪୦ ।
ଦାସୀନାଂ କୋଽନୁ ସନ୍ତାପଃ ସ୍ୱାମିନଃ ପରିଚର୍ଯ୍ୟୟା ।
ଅଭୀକ୍ଷ୍ଣଂ ଲବ୍‌ଧମାନାନାଂ ଦାସ୍ୟା ଦାସୀବ ଦୁର୍ଭଗାଃ । ୪୧ ।
ଏବଂ ସଂଦହ୍ୟମାନାନାଂ ସପତ୍ନ୍ୟାଃ ପୁତ୍ରସମ୍ପଦା ।
ରାଜ୍ଞୋଽସମ୍ମତବୃତ୍ତୀନାଂ ବିଦ୍ୱେଷୋ ବଲବାନଭୂତ୍ । ୪୨ ।

---

ଚିତ୍ରକେତୁ ସର୍ବଦା ଶିଶୁପୁତ୍ରର ଲାଳନପାଳନରେ ଆନନ୍ଦଲାଭ କରି ପୁତ୍ରବତୀ ଭାର୍ଯ୍ୟାଙ୍କ ପ୍ରତି ଯେପରି ସ୍ନେହ ପ୍ରବଣ ହୋଇଥିଲେ ଅନ୍ୟମାନଙ୍କ ପ୍ରତି ସେପରି ହୋଇ ନଥିଲେ । ୩୮ ।

ଚିତ୍ରକେତୁଙ୍କର ଅନ୍ୟ ପତ୍ନୀମାନେ ପୁତ୍ରାଭାବ ଜନିତ ଦୁଃଖରେ ଏବଂ ସ୍ୱାମୀଙ୍କର ଅନାଦର ଈର୍ଷାବଶତଃ ନିଜେ ନିଜେ ଆପଣା ଆପଣାର ନିନ୍ଦାକରି ପରିତାପ ଭୋଗ କରିଥିଲେ । ୩୯ ।

ଯେଉଁ ରମଣୀ ପୁତ୍ରହୀନା ସେ ଅତ୍ୟନ୍ତ ପାପିୟସୀ । ପତିଗୃହରେ ସେ ଆଦୃତ ହୁଏ ନାହିଁ, ପୁତ୍ରବତୀ ସପତ୍ନୀମାନେ ତାହାକୁ ଦାସୀ ତୁଲ୍ୟ ଘୃଣା କରନ୍ତି, ସୁତରାଂ ପୁତ୍ରହୀନା ନାରୀର ଜୀବନ ଧିକ୍ । ୪୦ ।

ସ୍ୱାମୀର ଦାସୀ ହୋଇ ରହିବାକୁ ଦୁଃଖ କଣ । ତାହାଙ୍କର ସେବା ଦ୍ୱାରା ସର୍ବଦା ସମ୍ମାନ ଲାଭ ହୋଇଥାଏ । ମାତ୍ର ଆମ୍ଭେମାନେ ଦାସୀ ତୁଲ୍ୟ ନିତାନ୍ତ ହତଭାଗ୍ୟା । ୪୧ ।

କୃତଦ୍ୟୁତିଙ୍କର ପୁତ୍ର ସମ୍ପଦ ଦର୍ଶନ କରି ସପତ୍ନୀମାନେ ଏହିପରି ଈର୍ଷାନଳରେ ଦଗ୍‌ଧ ହୋଇଥିଲେ ଏବଂ ସ୍ୱାମୀଙ୍କ ନିକଟରେ ମଧ୍ୟ ସେମାନଙ୍କର ଆଦର ବ୍ୟବହାର ଆବୃତ ହେଉ ନ ଥିଲା । ତେଣୁ ସେମାନଙ୍କ ହୃଦୟରେ ପ୍ରବଳ ବିଦ୍ୱେଷ ଜାତ ହେଲା । ୪୨ ।

---

ଚିତ୍ରକେତୁର ସ୍ନେହ ହୋଇ
ପୁତ୍ରବତୀ ଭାରିଯା ଠାଇଁ
ଅନ୍ୟ ଯେ ପତ୍ନୀମାନେ ଥାନ୍ତି
ସେ ଭାବେ ନାହିଁ ସ୍ନେହମତି ।୩୮
ଅପୂର୍ବ ଦୁଃଖ ତାହାଙ୍କର
ରାଜାର ଏଣେ ଅନାଦର
ସେମାନେ ମନେ ଦୁଃଖକରି
ଆତ୍ମାର ନିନ୍ଦାକୁ ଆଚରି ।୩୯।

ପାପିଷ୍ଠୀ ଏହୁ କୃତଦ୍ୟୁତି
ଧିକ ଏହାର ଏ ସନ୍ତତି
ଗୃହ ସମ୍ପଦ ଯେ ସ୍ୱାମିର
ଏ ଧିକ ହେଉ ଦୁରାଚାର
ଏହି ସପତ୍ନୀର ଚରଣେ
ଦାସୀ ହୋଇଲୁଁ ଆମ୍ଭେମାନେ ।୪୦
ଦାସୀର କି ଅବା ସନ୍ତାପ
ଯେ ସେବେ ସ୍ୱାମୀର ସମୀପ

ମାନ ନ ଲଭୁଁ ଆମ୍ଭେ କ୍ଷଣେ
ଦାସୀରଦାସୀହୋଇ ଯେଭ୍ଲେ ।୪୧
ସପତ୍ନୀ ପୁତ୍ର ବିଭୂତିରେ
ଅନ୍ଧ ହୋଇଲେ କ୍ରୋଧଭରେ
ସକଳେ ଏକଚିତ୍ତ ହେଲେ
ରାଜାର ହିଂସା ବିଚାରିଲେ ।୪୨।

ବଦ୍ଦ୍ୱେଷନଷ୍ଟମତୟଃ ସ୍ତ୍ରିୟୋ ଦାରୁଣଚେତସଃ ।
ଗରଂ ଦଦୁଃ କୁମାରାୟ ଦୁର୍ମର୍ଷା ନୃପତିଂ ପ୍ରତି । ୪୩ ।
କୃତଦ୍ୟୁତିରଜାନନ୍ତୀ ସପତ୍ନୀନାମଘଂ ମହତ୍ ।
ସୁପ୍ତ ଏବେତି ସଞ୍ଚିନ୍ତ୍ୟ ନିରୀକ୍ଷ୍ୟ ବ୍ୟଚରଦ୍‌ଗୃହେ । ୪୪ ।
ଶୟାନଂ ସୁଚିରଂ ବାଲମୁପଧାର୍ଯ୍ୟ ମନୀଷିଣୀ ।
ପୁତ୍ରମାନୟ ମେ ଭଦ୍ରେ ଇତି ଧାତ୍ରୀମଚୋଦୟତ୍ । ୪୫ ।
ସା ଶୟାନମୁପବ୍ରଜ୍ୟ ଦୃଷ୍ଟ୍ୱା ଚୋତ୍ତରଲୋଚନମ୍ ।
ପ୍ରାଣେନ୍ଦ୍ରିୟାତ୍ମଭିସ୍ତ୍ୟକ୍ତଂ ହତାସ୍ମୀତ୍ୟପତଦ୍‌ଭୁବି । ୪୬ ।

---

ସେହି ପ୍ରବଳ ବଦ୍ଦ୍ୱେଷ ବଶତଃ ସ୍ତ୍ରୀ ମାନଙ୍କର ବୁଦ୍ଧି ନିତାନ୍ତ କଳୁଷିତ ହେଲା ଏବଂ ସେମାନଙ୍କ ହୃଦୟରେ ନିତାନ୍ତ ନିର୍ଦ୍ଦୟ ଭାବ ଜାଗ୍ରତ ହେଲା । ସେମାନେ ସ୍ୱାମୀଙ୍କର ଓ ସପତ୍ନୀର ପୁତ୍ର ସୌଭାଗ୍ୟ ସହ୍ୟ କରି ନ ପାରି ଏହି ଶିଶୁ ପୁତ୍ରକୁ ବିଷ ପ୍ରଦାନ କରିଥିଲେ । ୪୩ ।

କୃତଦ୍ୟୁତି ସପତ୍ନୀମାନଙ୍କର ଏହି ମହାପାପ ବୃତ୍ତାନ୍ତ ଜାଣି ନ ପାରି ଗୃହ ଆଡ଼କୁ ଦୃଷ୍ଟିପାତ କରି ପୁତ୍ର ନିଦ୍ରିତ ଅଛି ଏହା ଭାବି କାର୍ଯ୍ୟାନ୍ତରରେ ଗମନ କରିଥିଲେ । ୪୪ ।

ମନସ୍ୱିନୀ କୃତଦ୍ୟୁତି ପୁତ୍ର ଅନେକ ବେଳୁ ଶୋଇଲାଣି ଭାବି ଧାଈକୁ ଡାକି କହିଲେ ଭଦ୍ରେ ! ପୁତ୍ରକୁ ମୋ ପାଖକୁ ଘେନି ଆସ । ୪୫ ।

ବାଳକ ଯେଉଁଠାରେ ଶୋଇଥିଲା ଧାଈ ସେଠାକୁ ଯାଇ ଦେଖିଲା ପିଲାଟିର ଚକ୍ଷୁର ତାରା ଉପରକୁ ଉଠିଅଛି, ଦେହରେ ପ୍ରାଣବାୟୁ ନାହିଁ, ଇନ୍ଦ୍ରିୟ ନିସ୍ପନ୍ଦ । ଏହା ଦେଖି ପିଲା ମରି ଯାଇଅଛି ବୋଲି ସେ କାନ୍ଦିଲା । ୪୬ ।

---

ଦାରୁଣ ଚିତ୍ତ ସ୍ତ୍ରୀଗଣ
କ୍ରୋଧେ ହୋଇଲେ ହତଜ୍ଞାନ
ସ୍ୱାମୀକୁ ଅତି କ୍ରୋଧ କଲେ
ଗରଳ କୁମରକୁ ଦେଲେ ।୪୩।
ଏହା ନ ଜାଣେ କୃତଦ୍ୟୁତି
ସପତ୍ନୀମାନଙ୍କର ଗତି
ପୁତ୍ର ଶୁଆଇଥିଲା ଘରେ
ଗଲା ସେ ଗୃହ ଅଭ୍ୟନ୍ତରେ ।୪୪।

ଅନେକ ବେଳ ସେ ଶୋଇଲା
ପୁତ୍ର ଆଣିବ ମନେ କଲା
ଧାଈକୁ ବୋଲଇ ଉତ୍ତର
ଭୋ ସଖି ! ପୁତ୍ର ଆଣ ମୋର ।୪୫।
ତାହାର ଆଜ୍ଞା ପାଇ ଧାଈ
ବାଳକ ନିକଟେ ମିଳଇ
ଦେଖିଲା ଶୋଇଅଛି ପୁତ୍ର
ନେଇଛି ପଡ଼ିଛି ତା ନେତ୍ର

ପ୍ରାଣ ଇନ୍ଦ୍ରିୟ ନାହିଁ ତାର
ଦେଖି ପଡ଼ିଲେ ସେ ଭୂମିର
ହତ ହୋଇଲି ବୋଲି ଧାଈ
ପଡ଼ିଲା ଅଚେତନ ହୋଇ
ବେନିକର ହୃଦରେ ତାଡ଼ି
ଆରତେ ପାଡ଼ିଲା ଯେ ରଡ଼ି ।୪୬।

**ତସ୍ୟାସ୍ତଦାକର୍ଣ୍ଣ୍ୟ ଭୃଶାତୁରଂ ସ୍ୱରଂ ଘ୍ନନ୍ତ୍ୟାଃ କରାଭ୍ୟାମୁର ଉଚ୍ଚକୈରପି ।**
**ପ୍ରବିଶ୍ୟ ରାଜ୍ଞୀ ତ୍ୱରୟାତ୍ମଜାନ୍ତିକଂ ଦଦର୍ଶ ବାଲଂ ସହସା ମୃତଂ ସୁତମ୍ ।୪୭।**
**ପପାତ ଭୂମୌ ପରିବୃଦ୍ଧୟା ଶୁଚା ମୁମୋହ ବିଭ୍ରଷ୍ଟଶିରୋରୁହାମ୍ବରା ।୪୮।**
**ତତୋ ନୃପାନ୍ତଃପୁରବର୍ତ୍ତିନୋ ଜନା ନରାଶ୍ଚ ନାର୍ଯ୍ୟଶ୍ଚ ନିଶମ୍ୟ ରୋଦନମ୍ ।**
**ଆଗତ୍ୟ ତୁଲ୍ୟବ୍ୟସନାଃ ସୁଦୁଃଖିତାସ୍ତାଶ୍ଚ ବ୍ୟଲୀକଂ ରୁରୁଦୁଃ କୃତାଗସଃ ।୪୯।**
**ଶ୍ରୁତ୍ୱା ମୃତଂ ପୁତ୍ରମଲକ୍ଷିତାନ୍ତକଂ ବିନଷ୍ଟଦୃଷ୍ଟିଃ ପ୍ରପତନ୍ ସ୍ଖଲନ୍ ପଥି ।**
**ସ୍ନେହାନୁବନ୍ଧୈଧିତୟା ଶୁଚା ଭୃଶଂ ବିମୂର୍ଚ୍ଛିତୋଽନୁପ୍ରକୃତିର୍ଦ୍ୱିଜୈର୍ବୃତଃ ।୫୦।**

---

ସେତେବେଳେ ଧାତ୍ରୀ ନିଜର ବକ୍ଷସ୍ଥଳରେ କରାଘାତ କରି କାତର ଭାବରେ ଉଚ୍ଚେସ୍ୱରରେ ରୋଦନ କରୁଥିଲା । ରାଣୀ କୃତଦ୍ୟୁତି ଦ୍ରୁତପଦରେ ସେଠାରେ ଉପସ୍ଥିତ ହୋଇ ଦେଖିଲେ, ଶିଶୁପୁତ୍ରର ହଠାତ୍ ମୃତ୍ୟୁ ହୋଇଅଛି । ୪୭ ।

ରାଣୀ କୃତଦ୍ୟୁତି ଗଭୀର ଶୋକରେ ଭୂତଳରେ ପତିତ ହେଲେ ଏବଂ ମୋହଗ୍ରସ୍ତା ହେଲେ । ସେତେବେଳ ତାହାଙ୍କର କେଶ ଓ ବସ୍ତ୍ରାଦି ସ୍ଖଳିତ ହୋଇଥିଲା । ୪୮ ।

ତଦନନ୍ତର ଅନ୍ତଃପୁରସ୍ଥା ସମସ୍ତ ରମଣୀ ଓ ପୁରୁଷମାନେ ରାଜାରାଣୀଙ୍କର ବିପଦକୁ ନିଜର ବିପଦ ବୋଲି ଜ୍ଞାନ କରି ଅତ୍ୟନ୍ତ ଦୁଃଖିତ ଚିତ୍ତରେ ରୋଦନ କରୁଥିଲେ । କୃତ ଦ୍ୟୁତିଙ୍କର ସେହି ଅପରାଧିନୀ ସପତ୍ନୀମାନେ ମଧ୍ୟ ସେଠାରେ ଉପସ୍ଥିତ ହୋଇ କପଟରେ ରୋଦନ କରୁଥିଲେ । ୪୯ ।

ରାଜା ଚିତ୍ରକେତୁ ଶୁଣିଲେ ପୁତ୍ରର ମୃତ୍ୟୁ ଘଟିଅଛି । କିନ୍ତୁ ମୃତ୍ୟୁର କାରଣ ବୁଝି ପାରିଲେ ନାହିଁ, ଏହା ଶୁଣିବା ମାତ୍ରେ ତାହାଙ୍କର ଦୃଷ୍ଟିଶକ୍ତି ଲୋପ ହେଲା, ସେ ମନ୍ତ୍ରୀବର୍ଗ, ପ୍ରଜାବର୍ଗ ଓ ବ୍ରାହ୍ମଣଗଣଙ୍କ ସହିତ ପୁତ୍ରକୁ ଦେଖିବାକୁ ଗଲେ । ପଥ ମଧ୍ୟରେ ଚରଣ ସ୍ଖଳିତ ହୋଇ ସେ ପଡ଼ିଗଲେ ଏବଂ ସ୍ନେହାକର୍ଷଣ ହେତୁ ତାହାଙ୍କର ଶୋକରେ ପୁନଃ ପୁନଃ ମୂର୍ଚ୍ଛା ହେଲା । ୫୦ ।

---

**ତା ଶୁଣି ପାଟ ମହାଦେଈ**
**ଧାଇଁଲା ଅସମ୍ଭାଳ ହୋଇ**
**ପୁତ୍ରର ନିକଟେ ମିଳିଲା**
**ମୃତ ପୁତ୍ରକୁ ସେ ଦେଖିଲା ।୪୭।**
**ମହା ପ୍ରବଳ ଶୋକଭରେ**
**ଭୂମିରେ ପଡ଼ିଲା ନିର୍ଭରେ**
**ତକ୍ଷଣେ ମୋହ ସେ ପାଇଲା**
**କେଶ-ବସନ ଖସିଗଲା । ୪୮ ।**
**ରାଜାର ଅନ୍ତଃପୁର ଜନ**
**ସ୍ତ୍ରୀଏ ପୁରୁଷ ହେ ସୁଜନ**

ରୋଦନ ଶୁଣି ତା ଧାଇଁଲେ
ତା ତୁଲେ ଶୋକକୁ ପାଇଲେ
କହିବା ଶୁଣ ନୃପବର
ଯେତେକ ସପତ୍ନୀ ତାହାର
ବାହାରେ ଶୋକ ଆଚରିଲେ
କପଟେ ରୋଦନ ସେ କଲେ ।୪୯।
ପୁତ୍ର ମରଣ ରାଜା ଶୁଣି
ମୃତ୍ୟୁର କାରଣ ନ ଜାଣି
ମୋହରେ ନ ଦିଶଇ ପଥ
ପାଦ ପାଦକେ ଜ୍ଞାନ ହତ

ସ୍ନେହ ବନ୍ଧନୁଁ ଶୋକ ବଢ଼ି
ମୂର୍ଚ୍ଛିତ ହୋଇ ପାଡ଼େ ରଡ଼ି
ଅମାତ୍ୟ ଆଦି ଯେତେ ଗଣ
ଦେଖୁଅଛନ୍ତି ହେ ସୁଜନ !
ମୃତ-ବାଳକ ପାଦତଳେ
ପଡ଼ିଲା ଯାଇଁ ମତି ଭୋଳେ
ଫିଟି ତା ପଡ଼ିଅଛି କେଶ
ବିଚିତ୍ର ପରିଧାନ ବାସ
ଦୀର୍ଘ ନିଶ୍ୱାସ ସେ ଛାଡ଼ଇ
ନୟନୁଁ ଅଶ୍ରୁଜଳ ବହି

ପପାତ ବାଳସ୍ୟ ସ ପାଦମୂଳେ ମୃତସ୍ୟ ବିସ୍ରସ୍ତଶିରୋରୁହାମ୍ବରଃ ।
ଦୀର୍ଘଂ ଶ୍ୱସନ୍ ବାଷ୍ପକଳୋପରୋଧତୋ ନିରୁଦ୍ଧକଣ୍ଠୋ ନ ଶଶାକ ଭାଷିତୁମ୍ ।୫୧।
ପତିଂ ନିରୀକ୍ଷ୍ୟୋରୁଶୁଚାର୍ପିତଂ ତଦା ମୃତଞ୍ଚ ବାଳଂ ସୁତମେକସନ୍ତତିମ୍ ।
ଜନସ୍ୟ ରାଜ୍ଞୀ ପ୍ରକୃତେଶ୍ଚ ହୃଦ୍ରୁଜଂ ସତୀ ଦଧାନା ବିଲଲାପ ଚିତ୍ରଧା । ୫୨ ।
ସ୍ତନଦ୍ୱୟଂ କୁଙ୍କୁମପଙ୍କମଣ୍ଡିତଂ ନିଷିଞ୍ଚତୀ ସାଞ୍ଜନବାଷ୍ପବିନ୍ଦୁଭିଃ ।
ବିକୀର୍ଯ୍ୟ କେଶାନ୍ ବିଗଳତ୍ସ୍ରଜଃ ସୁତଂ ଶୁଶୋଚ ଚିତ୍ରଂ କୁରରୀବ ସୁସ୍ୱରମ୍ ।୫୩।
ଅହୋ ବିଧାତସ୍ତ୍ୱମତୀବ ବାଲିଶୋ ଯସ୍ତ୍ୱାତ୍ମସୃଷ୍ଟ୍ୟପ୍ରତିରୂପମୀହସେ ।
ପରେ ନୁ ଜୀବତ୍ୟପରସ୍ୟ ଯା ମୃତିର୍ବିପର୍ଯ୍ୟୟଶ୍ଚେତ୍ ତ୍ୱମସି ଧ୍ରୁବଃ ପରଃ ।୫୪।

---

ସେ ମୃତ ବାଳକର ପାଦଦେଶରେ ପତିତ ହେଲେ, ତାହାଙ୍କର କେଶ ଓ ବସ୍ତ୍ର ଆଲୁଳାୟିତ ହୋଇ ପଡ଼ିଲା, ଦୀର୍ଘଶ୍ୱାସ ବହିଲା, ଅଶ୍ରୁରାଶି ଦ୍ୱାରା ପରିବ୍ୟାପ୍ତ ହୋଇ ତାହାଙ୍କର କଣ୍ଠ ରୋଧ ହେଲା । ସୁତରାଂ ସେ କିଛି କହି ପାରିଲେ ନାହିଁ । ୫୧ ।

ପତିବ୍ରତା ରାଜ ମହିଷୀ କୃତଦ୍ୟୁତି ସ୍ୱାମୀଙ୍କର ଏହି ଗମ୍ଭୀର ଶୋକ, ଏଣେ ଏକମାତ୍ର ଶିଶୁପୁତ୍ର ମୃତ୍ୟୁ ଦେଖି ନାନାପ୍ରକାର ବିଳାପ କଲେ । ଏଥିରେ ଅମାତ୍ୟ ପ୍ରଭୃତି ଅତ୍ୟନ୍ତ ଦୁଃଖିତ ହୋଇଥିଲେ ।୫୨।
ସେ କୁଙ୍କୁମ ଲେପନରେ ଶୋଭିତ ସ୍ତନଦ୍ୱୟରେ କଜ୍ଜ୍ୱଳାକ୍ତ ଅଶ୍ରୁ ବର୍ଷଣକରି ଆଲୁଳାୟିତ କେଶା ହୋଇ କୁରରୀ ତୁଲ୍ୟ ଉଚ୍ଚୈସ୍ୱରରେ ଏପରି ନାନାପ୍ରକାର ବିଳାପ କରିଥିଲେ ଯେ ତାହାଙ୍କର ମସ୍ତକସ୍ଥ ପୁଷ୍ପମାଳା ଖସି ପଡ଼ିଥିଲା । ୫୩ ।

ହେ ବିଧାତା ! ବୃଦ୍ଧ ଜୀବିତ ଥାଉ ଥାଉ ବାଳକର ମୃତ୍ୟୁ । ଏହା ତୁମ୍ଭର ସୃଷ୍ଟି ବ୍ୟାପାରର ପ୍ରତିକୂଳ ଏବଂ ତୁମ୍ଭର ନିତାନ୍ତ ମୂର୍ଖତା । ତୁମ୍ଭେ ନିଜ ସୃଷ୍ଟିର ବିପରୀତ କାର୍ଯ୍ୟ କରିଥିବାରୁ ଆମ୍ଭମାନଙ୍କର ଶତ୍ରୁ । ୫୪ ।

---

ନିରୋଧ କଣ୍ଠଦ୍ୱାର ହୋଇ
ବଚନ ନ ପାରଇ କହି ।୫୦,୫୧।
ପତିଙ୍କୁ ଦେଖି ଶୋକଭର
ମରଣ ଦେଖି କୁମରର
କୃତଦ୍ୟୁତି ଯେ ମହାଦେଈ
ବିବିଧ ବିଳାପ କରଇ ।୫୨।
ସ୍ତନ ଯୁଗଳ ଯେ ତାହାର
ମଣ୍ଡିତ କୁଙ୍କୁମ ପଙ୍କର

ଅଞ୍ଜନ ସହିତେ ଲୋତକ
ଧଉତ କଲା ତାର ବକ୍ଷ
କେଶ ହୋଇଲା ଅସମ୍ଭାଳ
ଖସି ପଡ଼ିଲା ପୁଷ୍ପମାଳ
କୁରରୀ ପ୍ରାୟେ ଶୋକଭରେ
ରୋଦନ କରେ ଉଚ୍ଚସ୍ୱରେ ।୫୩।
ହେ ବିଧି ! ଅତି ତୁ ଦାରୁଣ
ବାଳକ ପ୍ରାୟେ ଆଚରଣ

ଆପଣେ କରୁ ତୁ ରଞ୍ଜନ
କ୍ଷଣକେ କରୁ ତା ଭଞ୍ଜନ
ସାନ ମରଇ ବଡ଼ ଥାଇ
ଏହାର ନିଦାନ ନ ପାଇ
ଯେବେ ସଂସାର ପ୍ରାଣୀଙ୍କର
ଅନିୟମ ଜନ୍ମ ମରଣର
ସ୍ନେହ-ପାଶକୁ ବିଛାଇଣ
କିପାଇଁ କରୁ ରଣଭଣ

ନହ୍ୟକ୍ରମସ୍ତେଦହ ମୃତ୍ୟୁଜନ୍ମନୋଃ ଶରୀରିଣାମସ୍ତୁ ତଦାତ୍ମକର୍ମଭିଃ ।
ଯଃ ସ୍ନେହପାଶୋ ନିଜସର୍ଗବୃଦ୍ଧୟେ ସ୍ୱୟଂ କୃତସ୍ତେ ତମିମଂ ବିବୃଶ୍ଚସି ।୫୫।
ତ୍ୱଂ ତାତ ନାର୍ହସି ଚ ମାଂ କୃପଣାମନାଥାଂ ତ୍ୟକ୍ତୁଂ ବିଚକ୍ଷ୍ୱ ପିତରଂ ତବ ଶୋକତପ୍ତମ୍ ।
ଅଞ୍ଜସ୍ତରେମ ଭବତାପ୍ରଜଦୁସ୍ତରଂ ଯଦ୍ଧ୍ୱାନ୍ତଂ ନ ଯାହ୍ୟକରୁଣେନ ଯମେନ ଦୂରମ୍ ।୫୬।
ଉତ୍ତିଷ୍ଠ ତାତ ତ ଇମେ ଶିଶବୋ ବୟସ୍ୟାସ୍ତ୍ୱାମାହ୍ୱୟନ୍ତି ନୃପନନ୍ଦନ ସଂବିହର୍ତୁମ୍ ।
ସୁପ୍ତଶ୍ଚିରଂହ୍ୟଶନୟାଚଭବାନ୍ପରୀତୋ ଭୁଙ୍କ୍ଷ୍ୱସ୍ତନଂପିବଶୁଚୋହରନଃସ୍ୱକାନାମ୍ ।୫୭।
ନାହଂ ତନୂଜ ଦଦୃଶେ ହତମଙ୍ଗଳାତେ ମୁଗ୍ଧସ୍ମିତଂ ମୁଦିତବୀକ୍ଷଣମାନନାବ୍ଜମ୍ ।
କିଂବାଗତୋଽସ୍ୟପୁନରନ୍ୱୟମନ୍ୟଲୋକଂ ନୀତୋଽଘୃଣେନନଶୃଣୋମିକଳାଗିରସ୍ତେ ।୫୮

---

ଏ ସଂସାରରେ ପ୍ରାଣୀମାନଙ୍କର ମୃତ୍ୟୁ ଓ ଜନ୍ମର କ୍ରମ ଯଦି ସ୍ଥିର ନ ଥାଏ ତେବେ ସେମାନଙ୍କ କର୍ମ ଦ୍ୱାରା ଜନ୍ମାଦି ସାଧିତ ହେଉ ଏବଂ ନିଜର ସୃଷ୍ଟି ବିସ୍ତାର ନିମିତ୍ତ ତୁମ୍ଭେ ଯେଉଁ ସ୍ନେହ ବନ୍ଧନ ନିର୍ମାଣ କରିଅଛ ତାହା ମଧ୍ୟ ତୁମ୍ଭର ଇଚ୍ଛାରେ ଛିନ୍ନ ହୋଇ ଯାଉଅଛି । ୫୫ ।

ହେ ବତ୍ସ ! ମୁଁ ନିତାନ୍ତ କାତର ଓ ଅନାଥା । ତୁ ମୋତେ ଛାଡ଼ି କେଉଁ ଆଡ଼େ ଗଲୁ । ତୋର ପିତା ଶୋକରେ ଅତ୍ୟନ୍ତ ସନ୍ତପ୍ତ । ତାଙ୍କୁ ଦେଖ, ନିର୍ଦ୍ଦୟ ଯମ ସଙ୍ଗେ ଚାଲି ଯାଆନା, କାରଣ ପୁତ୍ରହୀନ ବ୍ୟକ୍ତି ପକ୍ଷରେ ନରକରୁ ଉଦ୍ଧାର ପାଇବା ଅସମ୍ଭବ । ତୋ ସାହାଯ୍ୟରେ ଏହି ନରକରୁ ଆମ୍ଭେମାନେ ଉଦ୍ଧାର ପାଇବୁ ବୋଲି ଆଶା କରିଅଛୁ । ୫୬ ।

ରେ ବତ୍ସ ! ଉଠ ! ରେ ପୁତ୍ର ! ତୋର ସଙ୍ଗୀ ବାଳକମାନେ ଖେଳିବା ପାଇଁ ତୋତେ ଡାକୁ ଅଛନ୍ତି । ତୁ ଅନେକ ବେଳୁ ଶୋଇଲୁଣି, କ୍ଷୁଧାରେ ଅତ୍ୟନ୍ତ କାତର ହୋଇ ଅଛୁ । କିଛି ଖା । ମୋର ସ୍ତନ୍ୟ ପାନ କର, ତୋର ଆତ୍ମୀୟମାନଙ୍କର ଶୋକ ବିଦୁରିତ କର । ୫୭ ।

ରେ ପୁତ୍ର ! ମୁଁ ଅତି ଭାଗ୍ୟହୀନା । ମୁଁ ତୋର ଏହି ମୁଦ୍ରିତ ନୟନ ସମ୍ପନ୍ନ ମୁଖପଦ୍ମ ଓ ସୁନ୍ଦର ହାସ୍ୟ ଯୁକ୍ତ ମୁଖ ଦେଖୁ ନାହିଁ, ତୋର ଅବ୍ୟକ୍ତ ମଧୁର ବାକ୍ୟ ଶୁଣୁ ନାହିଁ, ତା ହେଲେ ତୁ କଣ ନିର୍ଦ୍ଦୟ ଯମ ସଙ୍ଗେ ଲୋକାନ୍ତରକୁ ଚାଲି ଯାଇ ଅଛୁ । ୫୮ ।

---

ଏମନ୍ତେ ସୃଷ୍ଟି ତୋ ଉଆଣ
ଅଙ୍କନା ପରିଣୀ ଯେସନ ।୫୪।୫୫
ହେ ତାତ ତନୟ ମୋହର
ଦେଖୁ କି ନାହୁଁ ତୋ ପିଅର ?
ଶୋକ ସାଗରେ ମୋତେ ଥୋଇ
ଛାଡ଼ିଣ ନ ଯା ବାବୁ ତୁହି
ମୁଁ ଯେ ପାପୀଷ୍ଠୀ ଦୁଃଖୀ ହୋଇ
ମୋତେ ଛାଡ଼ିଣ ନ ଯା ତୁହି
ତୋହରେ କରି ବାବୁ ମୁହିଁ
ଦୁସ୍ତର ତମରୁ ତରିବି
ଦାରୁଣ ଯମ ବଶ ହୋଇ
ଦୂରକୁ ନ ଯା ଛାଡ଼ି ତୁହି ।୫୬।
ଉଠ ହେ। ନୃପତି ନନ୍ଦନ
ଆନନ୍ଦେ କର ସ୍ତନ ପାନ
ସମ ବୟସ ଯେ ତୁମରେ
ଡାକୁ ଅଛନ୍ତି ବାବୁ ତୋରେ
ବାଳକ ସଙ୍ଗତେ ବିହର
ବହୁ ନିଦ୍ରାକୁ ଦୂର କର
ମୋହର ଶୋକ ଦୂର କର
ରେ ନିନ୍ଦ୍ର ତୋହର ପିଅର ।୫୭।
ହରଷ ଆନନ ପଙ୍କଜ
ତୋହର ନ ଦେଖି ତନୁଜ
ଦାରୁଣ ଯମ କି ତୋହରେ
ଘେନାଇ ଗଲା ନିଜ ପୁରେ
ଏଣୁ ତୋ କୋମଳ ବଚନ
ଶୁଣଇ ନାହିଁ ମୋ ନନ୍ଦନ ।୫୮।

ଶ୍ରୀଶୁକ ଉବାଚ ।

ବିଲପନ୍ତ୍ୟା ମୃତଂ ପୁତ୍ରମିତି ଚିତ୍ରବିଲାପନୈଃ ।
ଚିତ୍ରକେତୁର୍ଭୃଶଂ ତପ୍ତୋ ମୁକ୍ତକଣ୍ଠୋ ରୁରୋଦ ହ । ୫୯ ।
ତୟୋର୍ବିଲପତୋଃ ସର୍ବେ ଦମ୍ପତ୍ୟୋସ୍ତଦନୁବ୍ରତାଃ ।
ରୁରୁଦୁଃ ସ୍ମ ନରା ନାର୍ଯ୍ୟଃ ସର୍ବମାସୀଦଚେତନମ୍ । ୬୦ ।
ଏବଂ କଶ୍ମଲମାପନ୍ନଂ ନଷ୍ଟସଂଜ୍ଞମନାୟକମ୍ ।
ଜ୍ଞାତ୍ୱାଙ୍ଗିରା ନାମ ଋଷିରାଜଗାମ ସନାରଦଃ । ୬୧ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଚିତ୍ରକେତୂପାଖ୍ୟାନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

ରାଣୀଙ୍କର ଏହି ପୁତ୍ର ଶୋକ ଶୁଣି ରାଜା ଚିତ୍ରକେତୁ ମଧ୍ୟ ନାନାପ୍ରକାରେ ବିଳାପ କରିବାକୁ ଲାଗିଲେ । ୫୯ ।

ସ୍ୱାମୀ ଓ ସ୍ତ୍ରୀ ଉଭୟ ବିଳାପ କରନ୍ତେ ତାହାଙ୍କର ଅନୁଗତ ନାରୀମାନେ ମଧ୍ୟ ରୋଦନ କଲେ । ସେହି ନଗରସ୍ଥ ଯେପରି ଚେତନାହୀନ ହୋଇ ପଡ଼ିଲା, ରାଜା ଶୋକରେ ଅଭିଭୂତ ହୋଇ ଜ୍ଞାନହୀନ ହେଲେ । ତାହାଙ୍କୁ ସାନ୍ତ୍ୱନା ଦେବାର ଉପାୟ ନ ଥିଲା, ଅଙ୍ଗିରା ଋଷି ଏହା ଜାଣିପାରି ନାରଦଙ୍କ ସହିତ ସେଠାରେ ଉପସ୍ଥିତ ହେଲେ । ୬୦, ୬୧ ।

---

ଶ୍ରୀଶୁକ ଉବାଚ—

ମୃତ ପୁତ୍ରରଠାରେ ତାର
ବିଳାପ ଶୁଣି ନୃପବର
ଚିତ୍ରକେତୁ ମଗ୍ନ ଶୋକରେ
ରୋଦନ କଲା ଉଚ୍ଚସ୍ୱରେ । ୫୯ ।
ବିଳାପ ପତ୍ନୀର ସହିତେ
ନପର ଦେଖିଣ ସମସ୍ତେ
ଯେତେ ଅମାତ୍ୟ ଆଦି ତାର
ରୋଦନ କଲେ ଉଚ୍ଚସ୍ୱର
ସ୍ତ୍ରୀ ପୁରୁଷ ଯେତେ ଜନ
ସକଳେ ହୋଇ ଅଚେତନ । ୬୦ ।
ଏମନ୍ତେ ଶୁଣ ନୃପବର
ସକଳେ ଅତି ଦୁଃଖତର
ଦୁଃଖୀ ରାଜନ ଦେଖି ମୁନି
ଅଙ୍ଗିରା ନାରଦଙ୍କୁ ଘେନି
ଶୀଘ୍ରେଣ ଦୁହେ ଚଳିଗଲେ
ରାଜାର ପୁରେ ସେ ମିଳିଲେ । ୬୧
ବୋଲଇ ବିପ୍ର ଜଗନ୍ନାଥ
ଚିତ୍ରକେତୁ ଶୋକ ଚରିତ ।





ଭାବାର୍ଥ—

ଶୂରସେନ ଦେଶର ନରପତି ଚିତ୍ରକେତୁ ବହୁ ଧନ ରତ୍ନ, ଦାସ, ଦାସୀ ଓ ବହୁ ସ୍ତ୍ରୀଙ୍କର ସ୍ୱାମୀ ଥିଲେ ମଧ୍ୟ ଅପୁତ୍ରିକ ହେତୁ ଭାଗ୍ୟହୀନ ଥିଲେ । ହିନ୍ଦୁଶାସ୍ତ୍ର ଓ ହିନ୍ଦୁର ବିଶ୍ୱାସ ଅନୁସାରେ ପୁତ୍‌ ନାମକ ନରକରୁ ଉଦ୍ଧାର ପାଇବା ଓ ପିତୃଋଣ ପରିଶୋଧ କରିବା ନିମନ୍ତେ ପୁତ୍ର ପ୍ରୟୋଜନ । ହିନ୍ଦୁ ସହଧର୍ମିଣୀଙ୍କୁ ବିଳାସ-ସଙ୍ଗିନୀ ବା ବିଳାସଉପଭୋଗ୍ୟ ବସ୍ତୁ ବୋଲି ମନେ କରେ ନାହିଁ । ପୁତ୍ରୋତ୍ପାଦନ ଲାଗି ଭାର୍ଯ୍ୟାର ପ୍ରୟୋଜନ-- ଏହାହିଁ ହିନ୍ଦୁର ଆଦର୍ଶ । ରାଜା ଚିତ୍ରକେତୁ ଏହି ଅଭାବ ହେତୁରୁ ଅତ୍ୟନ୍ତ ଅନୁତପ୍ତ ହେଉଥିଲେ । ହଠାତ୍ ମହର୍ଷି ଅଙ୍ଗିରା ତାହାଙ୍କ ଭବନରେ ଉପସ୍ଥିତ ହୋଇ ଚିତ୍ରକେତୁଙ୍କର ଗଭୀର ଦୁଃଖ କାହାଣୀ ଶୁଣି ତାହାଙ୍କର ପୁତ୍ରଲାଭ ନିମିତ୍ତ ଚରୁଅନ୍ନ ପ୍ରଦାନ କରିଥିଲେ । ଜ୍ୟେଷ୍ଠା ମହିଷୀ ତାହା ଗ୍ରହଣ କରି ଯଥାକାଳରେ ଗୋଟିଏ ପୁତ୍ର ସନ୍ତାନ ପ୍ରସବ କରିଥିଲେ । ସେହି ପୁତ୍ରସନ୍ତାନ ଜାତହେବା ଦିନରୁ ଜ୍ୟେଷ୍ଠା ମହିଷୀ ରାଜାଙ୍କର ଅତ୍ୟନ୍ତ ପ୍ରିୟତମା ହୋଇଥିଲେ । ଏଥିରେ ଅନ୍ୟାନ୍ୟ କନିଷ୍ଠା ରାଣୀମାନଙ୍କର ହିଂସା ବା ବିଦ୍ୱେଷ ବଢିଲା । ନାରୀ ବୁଦ୍ଧି ହିଂସା ପ୍ରଣୋଦିତ ହେଲେ ତାହା ଧର୍ମାଧର୍ମ ବିଚାର ଶକ୍ତିହୀନ ହୋଇପଡ଼େ । ସେମାନେ ହିଂସା ପ୍ରଣୋଦିତ ହୋଇ ନିର୍ଦ୍ଦୋଷ ଶିଶୁଟିର ପ୍ରାଣନାଶ କରିବାକୁ ସୁଦ୍ଧା କୁଣ୍ଠିତ ହୋଇ ନ ଥିଲେ । ସେମାନେ ବିଷ ପ୍ରୟୋଗକରି ସୁପ୍ତ ଶିଶୁଟିର ପ୍ରାଣନାଶ କରିଥିଲେ । ଜ୍ୟେଷ୍ଠା ରାଣୀ ଶିଶୁଟି ଅନେକ କ୍ଷଣ ଶୋଇଅଛି ଭାବି ତାହାକୁ ଉଠାଇ ଘେନି ଆସିବାକୁ ଧାତ୍ରୀକୁ ଆଦେଶ ଦେଇଥିଲେ । ଧାତ୍ରୀ ଶିଶୁର ନିଦ୍ରାଭଙ୍ଗ କରାଇବାକୁ ଯାଇ ତାହାର ମୃତାବସ୍ଥା ଦେଖି ସେ ଶୋକ ବିହ୍ୱଳ ହୋଇ ପଡ଼ିଥିଲା । ରାଣୀ ପୁତ୍ରର ମୃତ୍ୟୁ ବିଷୟ ଜାଣିପାରି ଉଚ୍ଚୈସ୍ୱରରେ କ୍ରନ୍ଦନ କରିଥିଲେ । କ୍ରମେ ଏ କ୍ରନ୍ଦନ ରୋଳ ଏପରି ବ୍ୟାପିଲା ଯେ ରାଜା, ରାଣୀ, ମନ୍ତ୍ରୀ, ଅମାତ୍ୟ, ଦାସ, ଦାସୀ, ପ୍ରଜାବର୍ଗ ସମସ୍ତେ ସମବେଦନା ଅନୁଭବ କଲେ ଓ ସମସ୍ତେ ବିଳାପ କରିବାକୁ ଲାଗିଲେ । ସେହି ଦୁଷ୍ଟା ମହିଷୀମାନେ ମଧ୍ୟ କପଟରେ ରୋଦନ କରିଥିଲେ । ରାଣୀ ଓ ରାଜାଙ୍କ ଗଭୀର ଦୁଃଖ କାହାଣୀ ଶୁଣି ମହର୍ଷି ଅଙ୍ଗିରା ନାରଦଙ୍କ ସହିତ ରାଜାଙ୍କ ସମୀପରେ ଉପସ୍ଥିତ ହୋଇଥିଲେ ।

---

## ପଞ୍ଚଦଶ ଅଧ୍ୟାୟ ।

ତତଃ ପଞ୍ଚଦଶେ ଚିତ୍ରକେତୋଃ ଶୋକାପନୋଦନମ୍ ।
କୃତଂ ତତ୍ତ୍ୱୋପଦେଶେନ ନାରଦେନାଙ୍ଗିରୋ ଯୁଜା । ° । (ଶ୍ରୀଧରସ୍ୱାମୀ)

### ନାରଦ ଓ ଅଙ୍ଗିରାଙ୍କ କର୍ତ୍ତୃକ ଚିତ୍ରକେତୁଙ୍କର ଶୋକ ନିବାରଣ ।

ପଞ୍ଚଦଶ ଅଧ୍ୟାୟରେ ଚିତ୍ରକେତୁଙ୍କର ପୁତ୍ର ମରି ଯାʼନ୍ତେ ଅଙ୍ଗିରା ଏବଂ ନାରଦମହର୍ଷି ଚିତ୍ରକେତୁଙ୍କ ନିକଟରେ ପହଞ୍ଚି ଜ୍ଞାନ ଉପଦେଶ ଦେଇ ତାଙ୍କର ଶୋକ ଦୂର କରିବା ବର୍ଣ୍ଣିତ ହୋଇ ଅଛି । ° ।

---

ନାରଦ ଅଙ୍ଗିରସ ଋଷି, ଚିତ୍ରକେତୁର ପାଶେ ଆସି । ଜ୍ଞାନ ବୁଝାଇ କଲେ ଶାନ୍ତ, ପଞ୍ଚଦଶରେ ଏବୃତ୍ତାନ୍ତ ॥

ଶ୍ରୀଶୁକ ଉବାଚ ।

ଉପତସ୍ଥତୁର୍ମୃତକୋପାନ୍ତେ ପତିତଂ ମୃତକୋପମ୍ ।
ଶୋକାଭିଭୂତଂ ରାଜାନଂ ବୋଧୟନ୍ତୌ ସଦୁକ୍ତିଭିଃ । ୧ ।
କୋଽୟଂ ସ୍ୟାତ୍ତବ ରାଜେନ୍ଦ୍ର ଭବାନ୍ ଯମନୁଶୋଚତି ।
ତ୍ୱଂ ଚାସ୍ୟ କତମଃ ସୃଷ୍ଟୌ ପୁରେଦାନୀମତଃ ପରମ୍ । ୨ ।
ଯଥା ପ୍ରୟାନ୍ତି ସଂଯାନ୍ତି ସ୍ରୋତୋବେଗେନ ବାଲୁକାଃ ।
ସଂଯୁଜ୍ୟନ୍ତେ ବିଯୁଜ୍ୟନ୍ତେ ତଥା କାଳେନ ଦେହିନଃ । ୩ ।

ଶ୍ରୀଶୁକଦେବ କହିଲେ :—

ରାଜା ଚନ୍ଦ୍ରକେତୁ ଶୋକାଭିଭୂତ ହୋଇ ପୁତ୍ରର ମୃତ ଦେହ ନିକଟରେ ପଡ଼ିଥିଲେ ଏମନ୍ତ ସମୟରେ ମହର୍ଷି ନାରଦ ଓ ଅଙ୍ଗିରା ଅନେକ ସତ୍‌କଥା କହି ତାହାଙ୍କୁ ସାନ୍ତ୍ୱନା ଦେବାକୁ ଆରମ୍ଭ କଲେ । ୧ ।

ହେ ମହାରାଜ ! ଆପଣ ଯାହାପାଇଁ ଶୋକ କରୁଅଛନ୍ତି ସେ ଆପଣଙ୍କର କିଏ ? ପୂର୍ବ ଜନ୍ମରେ ବର୍ତ୍ତମାନ କିମ୍ବା ଭବିଷ୍ୟତରେ ଆପଣ ଏହାର ବା କିଏ ? । ୨ ।



ଜଳ ସ୍ରୋତରେ ବାଲୁକା ରାଶି ଯେପରି କେଉଁଆଡ଼ୁ ଆସି ପୁଣି କେଉଁଆଡ଼େ ମିଶିଯାଏ ଜୀବଗଣ ସେହିପରି କାଳଗତିରେ କେଉଁଠାରେ ଯାଇଁ ମିଳିତ ହୁଅନ୍ତି ଏବଂ କେଉଁଠାରୁ ଆସନ୍ତି ।୩। (ଅଙ୍ଗିରା ଓ ନାରଦଙ୍କ କର୍ତ୍ତୃକ ଚନ୍ଦ୍ରକେତୁଙ୍କୁ ଉପଦେଶ)

ଶ୍ରୀଶୁକ ଉବାଚ—
ଶୁଣ ସାନନ୍ଦେ କୁରୁଶ୍ରେଷ୍ଠ
ସେ ମୃତ ପୁତ୍ରର ନିକଟ
ଶୋକରେ ଜ୍ଞାନଭ୍ରଷ୍ଟ ହୋଇ
ଚନ୍ଦ୍ରକେତୁ ପଡ଼ି ଅଛଇ
ଅଙ୍ଗିରା ନାରଦ ଏ ଦୁଇ
ମିଳିଲେ ତାର ପାଶେ ଯାଇଁ
ଉତ୍ତମ ବାକ୍ୟମାନ କହି
ବୋଧୁ ଅଛନ୍ତି ରାଜା ରହି ।୧।
ହେ ଚନ୍ଦ୍ରକେତୁ ନୃପବର
ତୁମ୍ଭେ ଯା ପାଇଁ ଶୋକ କର
ତୋହର ଏ କିସ ଅଟଇ
ତୁହି ଏହାର କିବା ହୋଇ ?
ତୋହର ସୁତ ପୂର୍ବେ ଏହି
ତୁ ପିତା କେତେ ଜନ୍ମ ହୋଇ
ଏବେ ତୁମ୍ଭର ସୁତ ଏହି
ସଂସାର ମାୟା ଏ ଅଟଇ ।୨।
ଯେସନେ ନଦୀ ସ୍ରୋତ ଜଳେ
ବାଲୁକା ନ ରହେ ନିଶ୍ଚଳେ
ସଂଯୋଗ ବିଯୋଗ ହୁଅଇ
ବାଲୁକା ଭାସି ଯାଉଥାଇ
ତେସନେ ପ୍ରାଣୀ ଯଥାକାଳେ
ଆସଇ ଯାଇ କର୍ମବଳେ ।୩।

ଯଥା ଧାନାସୁ ବୈ ଧାନା ଭବନ୍ତି ନ ଭବନ୍ତି ଚ ।
ଏବଂ ଭୂତାନି ଭୂତେଷୁ ଚୋଦିତାନୀଶମାୟୟା । ୪ ।
ବୟଞ୍ଚ ତ୍ୱଞ୍ଚ ଯେ ଚେମେ ତୁଲ୍ୟକାଳାଶ୍ଚରାଚରାଃ ।
ଜନ୍ମମୃତ୍ୟୋର୍ୟଥା ପଶ୍ଚାତ୍ ପ୍ରାଙ୍ନୈବମଧୁନାପି ଭୋଃ । ୫ ।
ଭୂତୈର୍ଭୂତାନି ଭୂତେଶଃ ସୃଜତ୍ୟବତି ହନ୍ତି ଚ ।
ଆତ୍ମସୃଷ୍ଟୈରସ୍ୱତନ୍ତ୍ରୈରନପେକ୍ଷୋଽପି ବାଳବତ୍ । ୬ ।
ଦେହେନ ଦେହିନୋ ରାଜନ୍ ଦେହାଦ୍ଦେହୋଽଭିଜାୟତେ ।
ବୀଜାଦେବ ଯଥା ବୀଜଂ ଦେହ୍ୟର୍ଥ ଇବ ଶାଶ୍ୱତଃ । ୭ ।
ଦେହଦେହିବିଭାଗୋଽୟମବିବେକକୃତଃ ପୁରା ।
ଜାତିବ୍ୟକ୍ତିବିଭାଗୋଽୟଂ ଯଥା ବସ୍ତୁନି କଳ୍ପିତଃ । ୮ ।

ଯେପରି ଧାନସମୂହ ମଧ୍ୟରେ କୌଣସି ଗୋଟିଏ ଧାନରେ ଧାନାଙ୍କୁର ଜନ୍ମେ, କୌଣସିଟିରେ ଜନ୍ମେ ନାହିଁ, ସେହିପରି ପ୍ରାଣୀବର୍ଗଙ୍କ ମଧ୍ୟରେ କୌଣସି ପ୍ରାଣୀର ସନ୍ତାନ ଉତ୍ପନ୍ନ ହୁଏ, କାହାର ହୁଏ ନାହିଁ, କାରଣସମସ୍ତେ ଭଗବତ୍ ମାୟାରେ ପରିଚାଳିତ । ୪ ।

ହେ ରାଜନ୍ ! ଆମ୍ଭେମାନେ, ଆପଣ ଏବଂ ସ୍ଥାବରଜଙ୍ଗମାଦି ପଦାର୍ଥ କୌଣସିଟି ଜନ୍ମ ପୂର୍ବେ ନ ଥିଲୁ କିମ୍ବା ମୃତ୍ୟୁ ପରେ ରହିବୁ ନାହିଁ, ବର୍ତ୍ତମାନ ମଧ୍ୟ ନାହୁଁ । ୫ ।

ଜଗଦୀଶ୍ୱର ନିଜର ମାୟାବଳରେ ଉତ୍ପାଦିତ ଏବଂ ପ୍ରାଣୀ ମାୟାର ଅଧୀନ । ପ୍ରାଣୀ ଦ୍ୱାରା ପ୍ରାଣୀର ସୃଷ୍ଟି ପାଳନ ଓ ବିନାଶ ଘଟିଥାଏ, ତାହାର କୌଣସି ଫଳାକାଙ୍କ୍ଷା ନାହିଁ । ତଥାପି ବାଳକ ତୁଲ୍ୟ ଲୀଳା ହେତୁ ଏପରି ଘଟିଥାଏ । ୬ ।

ହେ ରାଜନ୍ ! ଯେପରି ଧାନରୁ ଧାନ ଉତ୍ପନ୍ନ ହୁଏ ସେହିପରି ଦେହଧାରୀ ପିତାଠାରୁ, ମାତୃ ଦେହରୁ ପୁତ୍ରାଦି ଉତ୍ପନ୍ନ ହୁଅନ୍ତି କିନ୍ତୁ ଦେହୀ ବା ଜୀବ ତୁମ୍ଭ ତୁଲ୍ୟ ନିତ୍ୟ । ୭ ।

ଯେପରି ପଦାର୍ଥ ମାତ୍ରକେ ସାମାନ୍ୟ ଓ ବିଶେଷ ଏହି ଦୁଇ ପ୍ରକାର ବିଭାଗରେ ଅନାଦି କାଳରୁ ଅଜ୍ଞାନ ଦ୍ୱାରା କଳ୍ପିତ ହୋଇ ଆସୁଅଛନ୍ତି ସେହିପରି ଏହି ଦେହ ଜୀବ ମଧ୍ୟରେ ପରସ୍ପର ପରସ୍ପରର ସମ୍ବନ୍ଧ ବୋଲି ଅନାଦି କାଳରୁ ଅଜ୍ଞାନ କଳ୍ପିତ ବିଭାଗ ବୋଲି ବିବେଚିତ ହୋଇ ଆସୁଅଛି । ୮ ।

ଧାନରୁ ଧାନ ହୋଇ ନୋହି
ପ୍ରାଣୀହିଁ ତେମନ୍ତ ଅଟଇ
ଈଶ୍ୱର ମାୟାରେ ଜଗତ
ଉତ୍ପତ୍ତି ନାଶ ସର୍ବଭୂତ । ୪ ।
ଆମ୍ଭେ ବା ତୁମ୍ଭେ ଆଦି ଯେତେ
ଚର ଅଚରଙ୍କ ସହିତେ
ଜନ୍ମ ମରଣ ଆଗ ପଛ
ହୁଅଇ ଦେଖ ତୁ ପ୍ରତ୍ୟକ୍ଷ । ୫ ।
ଭୂତରେ କରଣ ଈଶ୍ୱର
ଜନ୍ମାଇ ଅଖିଳ ସଂସାର
ପ୍ରତିପାଳନ କରି ପୁଣ
ହତ କରଇ ତତକ୍ଷଣ
ଆସକ୍ତି ନୁହଇ କାହାର
ବାଳକେ ଯେସନ୍ତେ କ୍ରୀଡ଼ା କର । ୬
ଦେହରୁ ଦେହ ହୋଇ ଜାତ
ରାଜନ ଶୁଣ ଏକ ଚିତ୍ତ
ଧାନରୁ ଧାନ ଯେସନ୍ତେ ଜାତ
ଆତ୍ମାରୁ ନିର୍ମିତ ଜଗତ
ଆତ୍ମା ଶରୀର ଭିନ୍ନ କରି
ପୂର୍ବେ ଯେ ବିଧାତା ବିଚାରି
ହେମରୁ ନାନା ଦ୍ରବ୍ୟ ଯେସନ୍ତେ
ଜାତି ସଙ୍ଗରେ କରେ ଭିନ୍ନେ

ଶ୍ରୀଶୁକ ଉବାଚ ।

ଏବମାଶ୍ୱାସିତୋ ରାଜା ଚିତ୍ରକେତୁର୍ଦ୍ୱିଜୋକ୍ତିଭିଃ ।
ବିମୃଜ୍ୟ ପାଣିନା ବକ୍ତ୍ରମାଧିମ୍ଳାନମଭାଷତ । ୯ ।

ଶ୍ରୀରାଜୋବାଚ ।

କୌ ଯୁବାଂ ଜ୍ଞାନସମ୍ପନ୍ନୌ ମହିଷ୍ଠୌ ଚ ମହୀୟସାମ୍ ।
ଅବଧୂତେନ ବେଶେନ ଗୂଢ଼ାବିହ ସମାଗତୌ । ୧୦ ।
ଚରନ୍ତି ହ୍ୟବନୌ କାମଂ ବ୍ରାହ୍ମଣା ଭଗବତ୍ପ୍ରିୟାଃ ।
ମାଦୃଶାଂ ଗ୍ରାମ୍ୟବୁଦ୍ଧୀନାଂ ବୋଧାୟୋନ୍ମତ୍ତଲିଙ୍ଗିନଃ । ୧୧ ।
କୁମାରୋ ନାରଦ ଋଭୁରଙ୍ଗିରା ଦେବଲୋଽସିତଃ ।
ଅପାନ୍ତରତମା ବ୍ୟାସୋ ମାର୍କଣ୍ଡେୟୋଽଥ ଗୌତମଃ । ୧୨ ।

---

**ଶ୍ରୀଶୁକଦେବ କହିଲେ :—**

ଅଙ୍ଗିରା ଓ ନାରଦମୁନିଙ୍କର ଉପଦେଶ ବାକ୍ୟରେ ରାଜା ଚିତ୍ରକେତୁ ଏହିପରି ସାନ୍ତ୍ୱନା ଲଭିକରି ହସ୍ତଦ୍ୱାରା ମୁଖ ମାର୍ଜିତ କରିଥିଲେ । ୯ ।

**ଶ୍ରୀରାଜା ଚିତ୍ରକେତୁ କହିଲେ :—**

ଏହି ଅବଧୂତ ବେଶରେ ଆମ୍ଭ ଗୋପନ କରି ଏଠାକୁ ଆଗମନ କରିଅଛନ୍ତି ଆପଣମାନେ ଦୁଇଜଣ କିଏ ? ଆପଣମାନେ ବିଶେଷଜ୍ଞାନ ସମ୍ପନ୍ନ ଓ ମହତ୍ତ୍ୱ ଅପେକ୍ଷା ମହତ୍ତମ । ୧୦ ।

ଶ୍ରୀହରିଙ୍କର ପ୍ରିୟପାତ୍ର ବ୍ରାହ୍ମଣମାନେ ମୋ ତୁଲ୍ୟ ଅଜ୍ଞବୁଦ୍ଧି ସମ୍ପନ୍ନ ବ୍ୟକ୍ତିମାନଙ୍କ ନିମନ୍ତେ ଉନ୍ମତ୍ତ ତୁଲ୍ୟ ଚିହ୍ନ ଧାରଣ କରି ପୃଥିବୀରେ ବିଚରଣ କରିଥାନ୍ତି । ୧୧ ।

ସନତ୍‌କୁମାର, ନାରଦ, ଋଭୁ, ଅଙ୍ଗିରା, ଦେବଳ, ଅସିତ, ତମୋଗୁଣାତୀତ ବେଦବ୍ୟାସ, ମାର୍କଣ୍ଡେୟ, ଗୌତମ, ବଶିଷ୍ଠ, ଭଗବାନ୍ ଶ୍ରୀରାମଚନ୍ଦ୍ର, କପିଳ, ଶୁକଦେବ, ଦୁର୍ବାସା, ଯାଜ୍ଞବଳ୍କ, ଜାତୁକର୍ଣ୍ଣ ଆରୁଣି, ରୋମର୍ଷ ଚ୍ୟବନ, ଦତ୍ତାତ୍ରେୟ, ଆସୁରି ସର୍ବଲୋକ ପ୍ରସିଦ୍ଧ ତେଜୋଜ୍ଜ୍ୱଳ ବେଦଶିରା, ଧୌମ୍ୟ, ପଞ୍ଚଶିଖ

---

ଶ୍ରୀଶୁକ ଉବାଚ—
ଉତ୍ତମ ବାକ୍ୟ ବିପ୍ରଙ୍କର
ଶୁଣି ଆଶ୍ୱସ୍ତ ନୃପବର
ମଳିନ ମୁଖ ଆପଣାର
ପୋଛିଣ କହଇ ମଧୁର । ୯ ।
ଶ୍ରୀଚିତ୍ରକେତୁରୁବାଚ—
କେ ତୁମ୍ଭେ ଦୁଇ ମହାଜନ
ଅଶେଷ ଜ୍ଞାନେ ପରିପୂର୍ଣ୍ଣ
ଜ୍ଞାନିମାନଙ୍କ ତୁମ୍ଭେ ବର
ଅବଧୂତ ବେଶ ତୁମ୍ଭର
ସ୍ୱଭାବେ ଗୁପ୍ତ ପ୍ରାପ୍ତ ହୋଇ
ଆସି ଯେ ଅଛ ତୁମ୍ଭେ ଦୁଇ
ବିଷ୍ଣୁର ଦୂତ ଯେତେ ଲୋକେ
ପୃଥ୍ୱୀରେ ଭ୍ରମୁଥାନ୍ତି ସୁଖେ
ମୋହର ପ୍ରାପ୍ତ ଦୁଃଖୀ ହୋଇ
ସଂସାରେ ଯେତେ ବା ଅଛଇ
ଏହାଙ୍କ ହିତ ଇଚ୍ଛା କରି
ଏମାନେ ବୁଲନ୍ତି ବିହରି ।୧୦,୧୧
ଗୌତମ ଅସିତ ଦେବଳ
କୁମାର ବଶିଷ୍ଠ କପିଳ
ମାରକଣ୍ଡ ବ୍ୟାସ ଅଙ୍ଗିରା
ରୋମସ ଦତ୍ତ ବେଦଶିରା
ଦୁର୍ବାସା ଯାଜ୍ଞବଲ୍କ୍ୟ ମୁନି
ଜାତୁକର୍ଣ୍ଣ ବାଦରାୟଣି

ବଶିଷ୍ଠୋ ଭଗବାନ୍ ରାମଃ କପିଲୋ ବାଦରାୟଣିଃ ।
ଦୁର୍ବାସା ଯାଜ୍ଞବଲ୍କ୍ୟଶ୍ଚ ଜାତୁକର୍ଣ୍ଣସ୍ତଥାରୁଣିଃ । ୧୩ ।
ରୋମଶଶ୍ଚ୍ୟବନୋ ଦତ୍ତ ଆସୁରିଃ ସ ପତଞ୍ଜଳିଃ ।
ଋଷିର୍ବେଦଶିରା ଧୌମ୍ୟୋ ମୁନିଃ ପଞ୍ଚଶିଖସ୍ତଥା । ୧୪ ।
ହିରଣ୍ୟନାଭଃ କୌଶଲ୍ୟଃ ଶ୍ରୁତଦେବ ଋତଧ୍ୱଜଃ ।
ଏତେ ପରେ ଚ ସିଦ୍ଧେଶାଶ୍ଚରନ୍ତି ଜ୍ଞାନହେତବଃ । ୧୫ ।
ତସ୍ମାଦ୍ୟୁବାଂ ଗ୍ରାମ୍ୟପଶୋର୍ମମ ମୂଢ଼ଧିୟଃ ପ୍ରଭୋ ।
ଅନ୍ଧେ ତମସି ମଗ୍ନସ୍ୟ ଜ୍ଞାନଦୀପ ଉଦୀର୍ଯ୍ୟତାମ୍ । ୧୬ ।
ଶ୍ରୀଅଙ୍ଗିରା ଉବାଚ । ଅହଂ ତେ ପୁତ୍ର କାମସ୍ୟ ପୁତ୍ରଦୋଽସ୍ମ୍ୟଙ୍ଗିରା ନୃପ ।
ଏଷ ବ୍ରହ୍ମସୁତଃ ସାକ୍ଷାନ୍ନାରଦୋ ଭଗବାନୃଷିଃ । ୧୭ ।
ଇତ୍ଥଂ ତ୍ୱାଂ ପୁତ୍ରଶୋକେନ ମଗ୍ନଂ ତମସି ଦୁସ୍ତରେ ।
ଅତଦର୍ହ-ମନୁସ୍ମୃତ୍ୟ ମହାପୁରୁଷଗୋଚରମ୍ । ୧୮ ।

---

ହିରଣ୍ୟନାଭ, କୌଶଲ୍ୟ, ଶ୍ରୁତଦେବ, ଋତଧ୍ୱଜ ଏମାନେ ଓ ଅନ୍ୟାନ୍ୟ ତପସିଦ୍ଧ ମହାପୁରୁଷମାନେ ଲୋକ ସମାଜରେ ଜ୍ଞାନ ବିସ୍ତାର ନିମନ୍ତେ ଏହିପରି ବିଚରଣ କରିଥାନ୍ତି । ୧୨-୧୫ ।

ମୁଁ ଗ୍ରାମ୍ୟ ପଶୁ ଗୋ, ମହିଷାଦି ତୁଲ୍ୟ ଅତ୍ୟନ୍ତ ଜଡ଼ବୋଧ । ଆପଣମାନେ ଦୁଇଜଣ ମୋର ପ୍ରଭୁ, ମୋର କର୍ତ୍ତବ୍ୟ ପଥରେ ପରିଚାଳକ, ମୁଁ ଗଭୀର ମହାନ୍ଧକାରରେ ବୁଡ଼ି ରହିଅଛି । ଆପଣମାନେ ମୋ ପାଇଁ ଜ୍ଞାନ ପ୍ରଦୀପ ପ୍ରଜ୍ୱଳିତ କରନ୍ତୁ । ୧୬ ।

ଶ୍ରୀ ଅଙ୍ଗିରା କହିଲେ :—ହେ ରାଜନ୍ ! ମୁଁ ଅଙ୍ଗିରା ନାମକ ଋଷି, ଆପଣ ଯେତେବେଳେ ପୁତ୍ର କାମନା କରୁଥିଲେ ସେତେବେଳେ ମୁଁ ଆସି ଆପଣଙ୍କୁ ପୁତ୍ରପ୍ରାପ୍ତି ପାଇଁ ଆଶୀର୍ବାଦ କରିଥିଲି । ଏ ବ୍ରହ୍ମାଙ୍କର ପୁତ୍ର ଭଗବାନ୍ ନାରଦ ଆପଣଙ୍କ ସମକ୍ଷରେ ଉପସ୍ଥିତ । ୧୭ ।

ହେ ରାଜନ୍ ! ଆପଣ ପୁତ୍ର ଶୋକରେ ଏହିପରି ଗଭୀର ଶୋକରେ ମଗ୍ନ ହୋଇଅଛନ୍ତି । ଆପଣ ଭଗବତ୍ ଭକ୍ତ, ଆପଣଙ୍କ ପକ୍ଷରେ ଏପରି ଶୋକାଚ୍ଛନ୍ନ ହେବା ଉଚିତ ନୁହେଁ । ଏହାହିଁ ଚିନ୍ତାକରି

---

ଋତୁଧ୍ୱଜ ଯେ ଶ୍ରୁତଦେବ
ପଞ୍ଚଶିଖ ହିରଣ୍ୟନାଭ
କୌଶଲ୍ୟା ନାରଦ ଆସୁରି
ଧୌମ୍ୟ ଚ୍ୟବନ ପତଞ୍ଜଳି
ଭୃଗୁ ସହିତେ ସିଦ୍ଧେଶ୍ୱରେ
ଏମାନେ ଭ୍ରମନ୍ତି ସଂସାରେ
ପ୍ରାଣିଙ୍କ ମଙ୍ଗଳ କାରଣେ
ଭ୍ରମୁ ଯେ ଥାନ୍ତି ଅନୁକ୍ଷଣେ

ସ୍ୱଭାବେ ଗ୍ରାମ ପଶୁ ମୁହିଁ
ଅନ୍ଧ ତମରେ ବୁଡ଼ିଛଇଁ
କେ ଦୁଇ ସିଦ୍ଧ ତୁମ୍ଭେ କହ
ଜ୍ଞାନ-ଦୀପକୁ ମୋତେ ଦିଅ ।୧୬,୧୭

ଶ୍ରୀଅଙ୍ଗିରା ଉବାଚ—

ହେ ଚିତ୍ରକେତୁ ନୃପବର
ମୁଁ ଦେଇଥିଲି ଏ କୁମର

ଅଙ୍ଗିରା ନାମଟି ମୋହର
ଏ ଦେଖ ବ୍ରହ୍ମାର କୁମର
ଅତ୍ୟନ୍ତ ବିଷ୍ଣୁଭକ୍ତ ଏହି
ନାରଦ ବୋଲି ଯାକୁ କହି ।
ଦୁସ୍ତର ଶୋକେ ମଗ୍ନ ତୋତେ
ଦେଖିଲୁଁ ଯହୁଁ ନୃପବର
ତୋହର ଯୋଗ୍ୟ ଏ ନ
ଏହା ବିଚାରି ଆମ୍ଭେ

ଅନୁଗ୍ରହାୟ ଭବତଃ ପ୍ରାପ୍ତାବାବାମିହ ପ୍ରଭୋ ।
ବ୍ରାହ୍ମଣ୍ୟୋ ଭଗବଦ୍‌ଭକ୍ତୋ ନାବସାଦତୁମର୍ହସି । ୧୯ ।
ତଦୈବ ତେ ପରଂ ଜ୍ଞାନଂ ଦଦାମି ଗୃହମାଗତଃ ।
ଜ୍ଞାତ୍ୱାନ୍ୟାଭିନିବେଶଂ ତେ ପୁତ୍ରମେବ ଦଦାମ୍ୟହମ୍ । ୨୦ ।
ଅଧୁନା ପୁତ୍ରିଣାଂ ତାପୋ ଭବତୈବାନୁଭୂୟତେ ।
ଏବଂ ଦାରା ଗୃହା ରାୟୋ ବିବିଧୈଶ୍ୱର୍ଯ୍ୟସମ୍ପଦଃ । ୨୧ ।
ଶବ୍ଦାଦୟଶ୍ଚ ବିଷୟାଶ୍ଚଲା ରାଜ୍ୟବିଭୂତୟଃ ।
ମହୀରାଜ୍ୟଂ ବଳଂ କୋଷୋ ଭୃତ୍ୟାମାତ୍ୟସୁହୃଜ୍ଜନାଃ । ୨୨ ।
ସର୍ବେଽପି ଶୂରସେନେମେ ଶୋକମୋହଭୟାର୍ତ୍ତିଦାଃ ।
ଗନ୍ଧର୍ବନଗରପ୍ରଖ୍ୟାଃ ସ୍ୱପ୍ନମାୟାମନୋରଥାଃ । ୨୩ ।

---

ଆମ୍ଭେମାନେ ଉପସ୍ଥିତ ହୋଇଅଛୁ । ଆପଣ ବ୍ରାହ୍ମଣ ସେବୀ ଓ ଶ୍ରୀହରି ଭକ୍ତ, ସୁତରାଂ ଆପଣଙ୍କର ଅବସନ୍ନ ହେବା ଉଚିତ ନୁହେଁ । ୧୮,୧୯ ।

ମୁଁ ପୂର୍ବେ ଯେତେବେଳେ ଆପଣଙ୍କ ଗୃହରେ ଉପସ୍ଥିତ ହୋଇଥିଲି ସେତେବେଳେ ଆପଣଙ୍କୁ ଉତ୍କୃଷ୍ଟ ଜ୍ଞାନଦାନ କରି ନ ଥିଲି, କାରଣ ସେତେବେଳେ ଆପଣଙ୍କର ପୁତ୍ର କାମନା ଏକମାତ୍ର ଆଗ୍ରହର ସାମଗ୍ରୀ ଥିଲା । ୨୦ ।

ପୁତ୍ରବାନ୍ ବ୍ୟକ୍ତିର ଉପରେ ଦୁଃଖ ତାହା ବର୍ତ୍ତମାନ ଆପଣ ନିଜେ ଅନୁଭବ କରିପାରି ଅଛନ୍ତି । ସ୍ତ୍ରୀ, ଗୃହ, ଧନ ଏବଂ ଅନ୍ୟାନ୍ୟ ନାନାପ୍ରକାର ଐଶ୍ୱର୍ଯ୍ୟ ଏହିପରି ସନ୍ତାପ ଉତ୍ପାଦନ କରିଥାଏ । ୨୧ ।

ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଏବଂ ରାଜ୍ୟାନ୍ତର୍ଗତ ପୃଥିବୀ ଆଧିପତ୍ୟ, ସୈନ୍ୟ, ଧନ ଭଣ୍ଡାର, ଭୃତ୍ୟ, ମନ୍ତ୍ରୀ ବନ୍ଧୁଗଣ, ଅଶେଷ ସମ୍ପଦ ଏମାନ କ୍ଷଣସ୍ଥାୟୀ । ଗନ୍ଧର୍ବନଗରୀ ତୁଲ୍ୟ କ୍ଷଣେମାତ୍ର ଦେଖା ଦେଇ ପୁଣି ଲୁଭେଇ ଯାଏ, ସ୍ୱପ୍ନଦୃଷ୍ଟ ବସ୍ତୁ ତୁଲ୍ୟ ବା ଇନ୍ଦ୍ରଜାଲ ତୁଲ୍ୟ ବା ନିଜର କଳ୍ପନା ଦ୍ୱାରା ଅନନ୍ଭୂତ ବସ୍ତୁତୁଲ୍ୟ ଏମାନେ ଶୋକ, ମୋହ, ଭୟ, ଦୁଃଖ ଦାନ କରିଥାନ୍ତି । ୨୨,୨୩ ।

---

ତୋହରେ ଅନୁଗ୍ରହ କରି
ହୋଇଅଛୁଁ ଶୁଣ ଦଣ୍ଡଧାରି
ବ୍ରହ୍ମଣ୍ୟ ବିଷ୍ଣୁ ଭକ୍ତ ହେଉ
ତୁଇ କିନବୁଡ଼ମହାବାହୁ ।୧୮,୧୯
ନେ ପର୍ବେତୋ ଗୃହେ ଆସିଥିଲି
ନ ଦେବ ବୋଲି

ପୁତ୍ର ବିଷୟେ ମନ ତୋର
ଜାଣିଣ ଦେଲୁ ନୃପବର । ୨୦ ।
ଏବେ ତୁ ପୁତ୍ର ଶୋକଭର
ଅନୁଭବିଲୁ ନୃପବର
ଐଶ୍ୱର୍ଯ୍ୟ ଦାରା ଗୃହ ଧନ
ଭୃତ୍ୟ ଅମାତ୍ୟ ପ୍ରିୟଜନ

ବିଷୟ ରାଜ୍ୟ ସୈନ୍ୟ କୋଷ
ଆମ୍ଭ ପୂରଣେ ନୋହେ ତୋଷ
ଏ ସର୍ବ ଶୋକ ମୋହ ଆଉ
ଭୟ ଉଦବେଗର ଘର ।୨୨,୨୩

ଦୃଶ୍ୟମାନା ବିନାର୍ଥେନ ନ ଦୃଶ୍ୟନ୍ତେ ମନୋଭବାଃ ।
କର୍ମଭିର୍ଧ୍ୟାୟତୋ ନାନା କର୍ମାଣି ମନସୋଽଭବନ୍ । ୨୪ ।
ଅୟଂ ହି ଦେହିନୋ ଦେହୋ ଦ୍ରବ୍ୟଜ୍ଞାନକ୍ରିୟାତ୍ମକଃ ।
ଦେହିନୋ ବିବିଧକ୍ଲେଶସନ୍ତାପକୃଦୁଦାହୃତଃ । ୨୫ ।
ତସ୍ମାତ୍ ସ୍ୱସ୍ଥେନ ମନସା ବିମୃଶ୍ୟ ଗତିମାତ୍ମନଃ ।
ଦ୍ୱୈତେ ଧ୍ରୁବାର୍ଥବିଶ୍ରମ୍ଭଂ ତ୍ୟଜୋପଶମମାବିଶ । ୨୬ ।

ଶ୍ରୀନାରଦ ଉବାଚ ।

ଏତାଂ ମନ୍ତ୍ରୋପନିଷଦଂ ପ୍ରତୀଚ୍ଛ ପ୍ରୟତୋ ମମ ।
ଯାଂ ଧାରୟନ୍ ସପ୍ତରାତ୍ରାଦ୍ଦ୍ରଷ୍ଟା ସଙ୍କର୍ଷଣଂ ବିଭୁମ୍ । ୨୭ ।

---

ପୂର୍ବୋକ୍ତ ବିଷୟମାନ ବାସ୍ତବ ନ ହେଲେ ମଧ୍ୟ ଅନୁଭୂତ ହୋଇଥାଏ । ସୁତରାଂ ଏମାନେ କେବଳ ମନର ବିକୃତି ମାତ୍ର, ଏହି ସମସ୍ତ ସର୍ବଦା ଅନୁଭୂତ ହୁଏ ନାହିଁ, କର୍ମର ମୂଳୀଭୂତ ଅଦୃଷ୍ଟ ବଳରେ ବିଷୟମାନ ଚିନ୍ତା କରୁ କରୁ ଲୋକର ମନରେ ନାନାପ୍ରକାର କର୍ମ ସୃଷ୍ଟି ହୋଇ ଥାଏ । ୨୪ ।

ଦ୍ରବ୍ୟ, ଜ୍ଞାନ ଓ କ୍ରିୟାତ୍ମକ ଜୀବ ଏହି ଦେହ ଦେହାଭିମାନ ଜୀବର ନାନାବିଧ କ୍ଲେଶ ଓ ସନ୍ତାପ ଉତ୍ପାଦକ । ୨୫ ।

ସୁତରାଂ ଏକାଗ୍ର ଚିତ୍ତରେ ଆତ୍ମତତ୍ତ୍ୱ ଚିନ୍ତାକରି ଅହଙ୍କାରାସ୍ପଦର ବିଷୟୀଭୂତ ଏହି ବସ୍ତୁମାନ ଚିର ସ୍ଥିତି । ଏହି ବିଶ୍ୱାସ ପରିତ୍ୟାଗ କରି ଶୋକର ଉପଶମନ କରନ୍ତୁ । ୨୬ ।

ଶ୍ରୀନାରଦ କହିଲେ :—

ଆପଣ ସଂଯତ ଚିତ୍ତରେ ମୋଠାରୁ ଏହି ମନ୍ତ୍ର ବିଦ୍ୟା ଗ୍ରହଣ କରନ୍ତୁ ଯାହା ଧାରଣ କଲେ ସପ୍ତାହ କାଳ ମଧ୍ୟରେ ସଙ୍କର୍ଷଣ ଦେବଙ୍କୁ ଆପଣ ସାକ୍ଷାତ କରି ପାରିବେ । ୨୭ ।

---

କର୍ମକୁ ଧ୍ୟାଇ ଯେଉଁ ଜନ
କରଇ ନାନା କର୍ମମାନ
ନାନା କର୍ମରେ ମନ ତାର
ପ୍ରବେଶ ହୋଏ ନିରନ୍ତର । ୨୪ ।
ଏମନ୍ତେ ଦେହମାନଙ୍କର
ଦେହରୁ ଏ ମାୟା ସଂସାର
ବିବିଧ କ୍ଲେଶ ସେ ତାଙ୍କର
ସନ୍ତାପ କାରଣ ଅପାର

ଏହିକାରଣୁଁ ହେ ରାଜନ
ଆପଣେ ସୁସ୍ଥ କର ମନ
ଦୃଶ୍ୟ ସ୍ୱଭାବେ ଅସାର
ଦେହ ଗତିକୁ ବିଚାର
ଶୋକକୁ ତ୍ୟଜ ନୃପବର
ଆତ୍ମାମାନଙ୍କୁ ...
... ସ୍ମର । ୨୫,୨୬

ଶ୍ରୀ ନାରଦ ଉବାଚ ।
ଏ ଯେ ମୋହର ମନ୍ତ୍ର ଦୀକ୍ଷା
ଶୁଚି ହୋଇଣ କର ଶିକ୍ଷା
ଏ ବିଦ୍ୟା ଧରି ସାତଦିନ
ଦେଖିବୁ ପ୍ରଭୁ ସଙ୍କର୍ଷଣ
ପଦ ପଙ୍କଜକୁ ଯାହାର
ଆଶ୍ରୟ କରିଣ ଶଙ୍କର

ଯତ୍ପାଦମୂଲମୁପସୃତ୍ୟ ନରେନ୍ଦ୍ର ପୂର୍ବେ ଶର୍ବାଦୟୋ ଭ୍ରମମିମଂ ଦ୍ୱିତୟଂ ବିସୃଜ୍ୟ ।
ସଦ୍ୟସ୍ତଦୀୟମତୁଲାନଧିକଂ ମହିତ୍ୱଂ ପ୍ରାପୁର୍ଭବାନପି ପରଂ ନ ଚିରାଦୁପୈତି । ୨୮ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଚିତ୍ରକେତୁପାଖ୍ୟାନଂ ନାମ ପଞ୍ଚଦଶୋଽଧ୍ୟାୟଃ । ୧୫ ।

---

ହେ ରାଜନ୍ ! ମହାଦେବ ପ୍ରଭୃତି ପୂର୍ବ ପୂର୍ବ ଦେବଗଣ ଯାହାଙ୍କର ପାଦତଳରେ ଆଶ୍ରୟ ଗ୍ରହଣ କରି ଅହଙ୍କାରାଦି ଭ୍ରାନ୍ତି ପରିତ୍ୟାଗ କରି ଅବିଳମ୍ବେ ଭଗବାନଙ୍କର ସେହି ଅତୁଳନୀୟ, ନିରତିଶୟ ମହିମାପ୍ରାପ୍ତ ହୋଇଥିଲେ । ଆପଣ ମଧ୍ୟ ଶୀଘ୍ର ତାହାଙ୍କର କୃପା ଲାଭ କରିବେ । ୨୮ ।

---

ସର୍ବ ବିଷୟକୁ ଛାଡ଼ିଲେ
ତକ୍ଷଣେ ସେ ପଦ ଲଭିଲେ
ତୁମ୍ଭେ ଏ ବିଦ୍ୟାର ପ୍ରସାଦେ
ତାହା ଲଭିବ ଅପ୍ରମାଦେ । ୨୭। ୨୮

ବୋଲଇ ଦାସ ଜଗନ୍ନାଥ
ହରି ଚରିତ ଭାଗବତ
ଚିତ୍ରକେତୁ ଶୋକ ଖଣ୍ଡନ
ସୁଜନେ ଏଣେ ଦିଅ ମନ

ତୁମ୍ଭର ତାପ ଯିବ ଯାଇ
ଶରଣ ପଶ ମହାବାହୁ





**ବିଶଦାର୍ଥ :—**

ଚିତ୍ରକେତୁଙ୍କର ପୁତ୍ରର ମୃତ୍ୟୁ ଘଟନ୍ତେ, ସେ ଓ ରାଣୀ ଶୋକରେ କାତର ହୋଇ ... ଲେ, ମହର୍ଷି ଅଙ୍ଗିରା ଓ ଦେବର୍ଷି ନାରଦ ସଂସାରରେ ଜୀବର ଅନିତ୍ୟ ଭାବ ବୁଝାଇବା ... ତାହାଙ୍କ ନିକଟରେ ଉପସ୍ଥିତ ହୋଇଥିଲେ । ଅନାଦିକାଳରୁ ସୃଷ୍ଟି ଚାଲି ଆସୁଅଛି, ତହିଁରେ କେହି ... ାହାର ନୁହେଁ କି ପୁତ୍ର, କି କଳତ୍ର, ଏ ସମସ୍ତ ମାୟା ବନ୍ଧନ ମାତ୍ର, ଏହା ଜାଣି ମୂଢ଼ ଲୋକ ବୁଝନ୍ତି ... ନାହିଁ, ସେମାନେ ମହାରାଜ ଚିତ୍ରକେତୁଙ୍କୁ ବୁଝାଇ କହିଲେ, ହେ ମହାରାଜ ! "ଆପଣ କାହାପାଇଁ ଶୋକାକୁଳ ହେଉଅଛନ୍ତି ? ଆପଣଙ୍କର କିଏ ପୁତ୍ର । ଆତ୍ମାହିଁ କେବଳ ନିତ୍ୟ ପଦାର୍ଥ. ସେ କଦାପି ଜନ୍ମ ଗ୍ରହଣ କରେ ନାହିଁ ଏବଂ ତାହାର ଧ୍ୱଂସ ମଧ୍ୟ ହୁଏ ନାହିଁ. ଏହି ବାଳକର ଦେହହିଁ ଜନ୍ମିଥିଲା, ତାହାରହିଁ ବିନାଶ ହେଲା, ସୁତରାଂ ଏହି ନଶ୍ୱର ଦେହ ପାଇଁ ଦୁଃଖ କାହିଁକି ?"

ଚିତ୍ରକେତୁଙ୍କର ପ୍ରାର୍ଥନା ଅନୁସାରେ ମହର୍ଷି ଅଙ୍ଗିରା ... ନିଜର ଓ ନାରଦଙ୍କର ପରିଚୟ ପ୍ରଦାନ କରିଥିଲେ ଏବଂ ପ୍ରସଙ୍ଗ କ୍ରମେ କହିଥିଲେ "ମୁଁ ଆପଣଙ୍କୁ ପୁତ୍ର ପ୍ରଦାନ କରିଥିଲି, କିନ୍ତୁ ସେତେବେଳେ ଆପଣ ପୁତ୍ର ନିମିତ୍ତ ଏପରି ବ୍ୟାକୁଳ ଥିଲେ ଯେ, ସେତେବେଳେ ଆପଣଙ୍କୁ ଜ୍ଞାନ ଦାନ କରିବା ଅସମ୍ଭବ, ମହର୍ଷି ଅଙ୍ଗିରା, ଚିତ୍ରକେତୁଙ୍କୁ ତତ୍ତ୍ୱ ଉପଦେଶ ପ୍ରଦାନ କରିଥିଲେ ଏବଂ ନାରଦ ତାହାଙ୍କୁ ଭଗବଦ୍ମନ୍ତ୍ରରେ ଦୀକ୍ଷିତ କରିଥିଲେ ।

## ଷୋ ଡ଼ ଶ ଅ ଧ୍ୟା ୟ ।

ଷୋଡ଼ଶେ ତତ୍ସୁତୋକ୍ତ୍ୟୈବ ବିଶୋକୀକୃତ୍ୟ ତଂ ନୃପମ୍ ।
ଆଦିଦେଶ ମହାବିଦ୍ୟାଂ ନାରଦଃ ଶେଷତୋଷଣୀମ୍ । ୦ । (ଶ୍ରୀଧରସ୍ୱାମି)
ଶ୍ରୀବାଦରାୟଣିରୁବାଚ ।
ଅଥ ଦେବଋଷୀରାଜନ୍ ସମ୍ପରେତଂ ନୃପାତ୍ମଜମ୍ ।
ଦର୍ଶୟିତ୍ୱେତି ହୋବାଚ ଜ୍ଞାତୀନାମନୁଶୋଚତାମ୍ । ୧ ।
ଶ୍ରୀନାରଦ ଉବାଚ ।
ଜୀବାତ୍ମନ୍ ପଶ୍ୟ ଭଦ୍ରଂ ତେ ମାତରଂ ପିତରଞ୍ଚ ତେ ।
ସୁହୃଦୋ ବାନ୍ଧବାସ୍ତପ୍ତାଃ ଶୁଚା ତତ୍କୃତୟା ଭୃଶମ୍ । ୨ ।

---

### ନାରଦଙ୍କଠାରୁ ଚିତ୍ରକେତୁଙ୍କର ମହାବିଦ୍ୟା ଉପଦେଶ ଲାଭ ।

ଷୋଡ଼ଶ ଅଧ୍ୟାୟରେ ନାରଦ ମୃତ ପୁତ୍ରର କଥାରେ ରାଜାଙ୍କୁ ପରିତୋଷ କରି ମହାବିଦ୍ୟା ଉପଦେଶ ଦେବା ବିଷୟ ବର୍ଣ୍ଣିତ ହୋଇ ଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ହେ ମହାରାଜ ପରୀକ୍ଷିତ ! ତଦନନ୍ତର ମୃତ ରାଜପୁତ୍ରକୁ ବିଳାପକାରୀ ସ୍ୱଜନବର୍ଗଙ୍କର ଦୃଷ୍ଟିଗୋଚର କରାଇ କହିଲେ । ୧ ।

ଶ୍ରୀନାରଦ କହିଲେ :—

ହେ ଜୀବାତ୍ମନ ! ତୁମ୍ଭର ମଙ୍ଗଳ ହେଉ, ନିଜର ମାତା ପିତାଙ୍କୁ ଦର୍ଶନ କର । ତୁମ୍ଭର ଆତ୍ମୀୟ ସ୍ୱଜନମାନେ ତୁମ୍ଭର ବିୟୋଗ ଦୁଃଖରେ ଅତ୍ୟନ୍ତ ସନ୍ତପ୍ତ ହେଉଅଛନ୍ତି । ୨ ।

---

ମୃତପୁତ୍ରର ଉକ୍ତି ଶୁଣି ଶୋକ ଛାଡ଼ିଲେ ନୃପମଣି, ନାରଦ ବିଦ୍ୟାଶେଷ ତୋଷେ, ରାଜାକୁ ଦେଲେ ଏ ଷୋଡ଼ଶେ

ଶ୍ରୀ ଶୁକ ଉବାଚ —
ଏ ଅନନ୍ତରେ ହେ ରାଜନ
ମଲେ ଯେ ନୃପତି ନନ୍ଦନ
ନାରଦ ମୁନି ତାକୁ ନେଇ
ବୋଲନ୍ତି ଜୀବ ଶୁଣ ତୁହି
ଦେଖାନ୍ତି ଜ୍ଞାତି ସୁହୃଦରେ
ଯେଉଁ ଶୋଚନ୍ତି ଯେ ତୁମ୍ଭରେ ।୧।

ଶ୍ରୀ ନାରଦ ଉବାଚ—
ହେ ଜୀବ ଦେଖ ତୋର ମାତା
ଶୋକେ ବହୁଛନ୍ତି ପିତା
ସୁହୃଦ ବନ୍ଧୁ ଯେ ପଣ୍ଡିତର
ମୋହ ଦେଖି ପଣ୍ଡିତର
ଆପଣା କଳେବରେ ଅପାର
ଶେଷ ତୋ ଯେତେକ ଆ...

ସୁହୃଦଗଣେ ବୃତ ହୋଇ
ନାନାଭୋଗକୁ ଭୁଞ୍ଜ ତୁହି
ନୃପ ଆସନେ ବିଜେ କର
ପିତାର ଶୋକ ଦୂର କର ।୨-୩

କଳେବରଂ ସ୍ୱମାବିଶ୍ୟ ଶେଷମାୟୁଃ ସୁହୃଦ୍ବୃତଃ ।
ଭୁଙ୍କ୍ଷ୍ୱ ଭୋଗାନ୍ ପିତୃପ୍ରତ୍ତାନଧିତିଷ୍ଠ ନୃପାସନମ୍ । ୩ ।

ଶ୍ରୀଜୀବ ଉବାଚ ।

କସ୍ମିନ୍ ଜନ୍ମନ୍ୟମୀ ମହ୍ୟଂ ପିତରୋ ମାତରୋଽଭବନ୍ ।
କର୍ମଭିର୍ଭ୍ରାମ୍ୟମାଣସ୍ୟ ଦେବତିର୍ଯ୍ୟଙ୍ନୃଯୋନିଷୁ । ୪ ।
ବନ୍ଧୁଜ୍ଞାତ୍ୟରିମଧ୍ୟସ୍ଥମିତ୍ରୋଦାସୀନବିଦ୍ୱିଷଃ ।
ସର୍ବ ଏବ ହି ସର୍ବେଷାଂ ଭବନ୍ତି କ୍ରମଶୋ ମିଥଃ । ୫ ।
ଯଥା ବସ୍ତୂନି ପଣ୍ୟାନି ହେମାଦୀନି ତତସ୍ତତଃ ।
ପର୍ଯ୍ୟଟନ୍ତି ନରେଷ୍ୱେବଂ ଜୀବୋ ଯୋନିଷୁ କର୍ତ୍ତୃଷୁ । ୬ ।
ନିତ୍ୟସ୍ୟାର୍ଥସ୍ୟ ସମ୍ବନ୍ଧୋ ହ୍ୟନିତ୍ୟୋ ଦୃଶ୍ୟତେ ନୃଷୁ ।
ଯାବଦ୍ୟସ୍ୟ ହି ସମ୍ବନ୍ଧୋ ମମତ୍ୱଂ ତାବଦେବ ହି । ୭ ।

---

ତୁମ୍ଭର ଆୟୁ ଅବଶିଷ୍ଟ ରହିଅଛି, ସୁତରାଂ ତୁମ୍ଭେ ନିଜ ଦେହରେ ପ୍ରବେଶ କରି ବନ୍ଧୁ ବାନ୍ଧବ ପରିବୃତ ହୋଇ ପିତୃଦତ୍ତ ଭୋଗ୍ୟ ବିଷୟ ସବୁକ ଭୋଗକରି ରାଜସିଂହାସନରେ ଅଧିଷ୍ଠିତ ହୁଅ । ୩ ।

ଜୀବାତ୍ମା କହିଲେ :—

ମୁଁ ପ୍ରାକ୍ତନ କର୍ମ ଅନୁସାରେ ଦେବତା, ପଶୁ, ପକ୍ଷୀଆଦି ଏବଂ ମନୁଷ୍ୟ ପ୍ରଭୃତି ଜାତିରେ ପରିଭ୍ରମଣ କରୁଅଛି, ଏମାନେ କେଉଁ ଜନ୍ମରେ ମୋର ପିତା ମାତା ଥିଲେ ? । ୪ ।

ବିଭିନ୍ନ ଜନ୍ମ ଅନୁସାରେ ସମସ୍ତେ ସମସ୍ତଙ୍କର ଆତ୍ମୀୟ, ଜ୍ଞାତି, ବନ୍ଧୁ ବା ଶତ୍ରୁ ବା ମଧ୍ୟସ୍ଥ ମିତ୍ରତା ଶୂନ୍ୟ ଓ ବିଦ୍ୱେଷ ପରାୟଣ ହୋଇ ପାରନ୍ତି । ୫ ।

ଯେପରି ସ୍ୱର୍ଣ୍ଣାଦି ପଣ୍ୟ ଦ୍ରବ୍ୟମାନ ବ୍ୟବହାରକାରୀ ମନୁଷ୍ୟମାନଙ୍କ ମଧ୍ୟରେ ଗୋଟିଏ ଲୋକଙ୍କ ନିକଟରୁ ଅନ୍ୟ ଜଣକ ନିକଟକୁ ଯାଏ; ଜୀବ ସେହିପରି ନାନା ଯୋନିରେ ପରିଭ୍ରମଣ କରେ । ୬ ।

ଲୋକ ମଧ୍ୟରେ ଦେଖାଯାଏ ବିଦ୍ୟମାନ ପଦାର୍ଥର ମଧ୍ୟ ସମ୍ବନ୍ଧ ଠିକ ରହେ ନାହିଁ । ଯେ ପର୍ଯ୍ୟନ୍ତ ବସ୍ତୁର ସମ୍ବନ୍ଧ ଥାଏ; ସେ ପର୍ଯ୍ୟନ୍ତ ତାହା ପ୍ରତି ମମତା ଥାଏ । ୭ ।

---

ଶ୍ରୀ ଜୀବ ଉବାଚ—

କେଉଁ ଜନ୍ମରେ ଏ ମୋହର
ହୋଇଛନ୍ତି ମାତା ପିଅର
ଦେବତା ମନୁଷ୍ୟ ପଶୁରେ
ମୁହିଁ ଭ୍ରମଇ ନିଜ କର୍ମରେ । ୪ ।

ବାନ୍ଧବ ଜ୍ଞାତି ମିତ୍ର ଅରି
ଉଦାସୀନ ବା ଦ୍ୱେଷକାରୀ
ଏ ସର୍ବେ ପରସ୍ପରେ ଥାନ୍ତି
କେତେବେ ବା ହୁଅନ୍ତି ନୁହନ୍ତି । ୫ ।
ଯେସ୍ନେ ବିକ୍ରୟ ବ୍ୟବହାରୀ
ଭ୍ରମନ୍ତି ନାନା ଲୋକଠାରେ

ହେମାଦି ପଣ୍ୟ ଦ୍ରବ୍ୟ ଯେସ୍ନେ
ଯୋନିରେ ଜୀବ ତେସନେ । ୬
ସତ୍ୟ ଯେ ସମ୍ବନ୍ଧ ଲୋକରେ
ଅସତ୍ୟ ହୋଇ ସେ ବେଳରେ
ସମ୍ବନ୍ଧ ଯାବତ ଯାହାର
ତାବତ ମମତା ତାହାର । ୭ ।

ଏବଂ ଯୋନିଗତୋ ଜୀବଃ ସ ନିତ୍ୟୋ ନିରହଙ୍କୃତଃ ।
ଯାବଦ୍ୟତ୍ରୋପଲଭ୍ୟେତ ତାବତ୍ ସ୍ୱତ୍ୱଂ ହି ତସ୍ୟ ତତ୍ । ୮ ।
ଏଷ ନିତ୍ୟୋଽବ୍ୟୟଃ ସୂକ୍ଷ୍ମ ଏଷ ସର୍ବାଶ୍ରୟଃ ସ୍ୱଦୃକ୍ ।
ଆତ୍ମମାୟାଗୁଣୈର୍ବିଶ୍ୱମାତ୍ମାନଂ ସୃଜତେ ପ୍ରଭୁଃ । ୯ ।
ନ ହ୍ୟସ୍ୟାସ୍ତି ପ୍ରିୟଃ କଶ୍ଚିନ୍ନାପ୍ରିୟଃ ସ୍ୱଃ ପରୋଽପି ବା ।
ଏକଃ ସର୍ବଧିୟାଂ ଦ୍ରଷ୍ଟା କର୍ତ୍ତୃଣାଂ ଗୁଣଦୋଷୟୋଃ । ୧୦ ।
ନାଦତ୍ତ ଆତ୍ମା ହି ଗୁଣଂ ନ ଦୋଷଂ ନ କ୍ରିୟାଫଳମ୍ ।
ଉଦାସୀନବଦାସୀନଃ ପରାବରଦୃଗୀଶ୍ୱରଃ । ୧୧ ।
ଶ୍ରୀବାଦରାୟଣିରୁବାଚ । ଇତ୍ୟୁଦୀର୍ଯ୍ୟ ଗତୋ ଜୀବୋ ଜ୍ଞାତୟସ୍ତସ୍ୟ ତେ ତଦା ।
ବିସ୍ମିତା ମୁମୁଚୁଃ ଶୋକଂ ଛିତ୍ତ୍ୱାତ୍ମସ୍ନେହଶୃଙ୍ଖଳାମ୍ । ୧୨ ।

---

ଜୀବ ଏହିପରି ପିତାମାତାଙ୍କ ସହିତ ସମ୍ବନ୍ଧ ପ୍ରାପ୍ତ ହେଲେ ମଧ୍ୟ ପ୍ରକୃତରେ ସେ ନିତ୍ୟ ଏବଂ ଅଭିମାନ ଶୂନ୍ୟ । ସେ ଯେତେଦିନ ଯାହାକୁ ଆଶ୍ରୟ କରିଥାଏ, ସେତେଦିନ ପର୍ଯ୍ୟନ୍ତ ତାହାପ୍ରତି ତାହାର ସ୍ୱତ୍ୱ ବ୍ୟବହୃତ ହୋଇଥାଏ । ୮ ।

ଏହି ଜୀବ, ଦେହ, ଇନ୍ଦ୍ରିୟ, ପ୍ରଭୃତି ଅନିତ୍ୟ ପଦାର୍ଥର ଆଶ୍ରୟ ଏବଂ ସ୍ୱୟଂ ସ୍ୱପ୍ରକାଶ, ଜନ୍ମାଦି ଶୂନ୍ୟ, ଅବିନଶ୍ୱର, ସୁତରାଂ ନିତ୍ୟ ଓ ଚୈତନ୍ୟ ମୟ, ଏହି ଆତ୍ମା ନିଜର ତ୍ରିଗୁଣାତ୍ମକ ମାୟା ଦ୍ୱାରା ନିଜକୁ ବିଶ୍ୱରୂପେ ସୃଷ୍ଟି କରେ । ୯ ।

ଜୀବାତ୍ମା କାହାର ସହିତ ଲିପ୍ତ ନୁହେଁ, ଇଷ୍ଟ ବା ଅନିଷ୍ଟକାରୀ, ମିତ୍ର ବା ଶତ୍ରୁମାନଙ୍କର ସମସ୍ତ ପ୍ରକାର ବୁଦ୍ଧିର କେବଳ ସାକ୍ଷୀ ସ୍ୱରୂପ । ଏହାର କେହି ପ୍ରିୟ ବା ଅପ୍ରିୟ ଆତ୍ମୀୟ ବା ପର ନାହିଁ ।୧୦।

ଜୀବାତ୍ମା ସୁଖ ଦୁଃଖ ଓ କ୍ରିୟାଫଳ କିଛିମାତ୍ର ଗ୍ରହଣ କରେ ନାହିଁ, ଦେହାଦି କାହାର ଅଧୀନ ନୁହେଁ । କାର୍ଯ୍ୟ, କାରଣ ଇତ୍ୟାଦିର ସାକ୍ଷୀ ସ୍ୱରୂପ ଉଦାସୀନ ଭାବରେ ଅବସ୍ଥାନ କରେ । ୧୧ ।

ଶ୍ରୀଶୁକଦେବ କହିଲେ :—ରାଜପୁତ୍ରର ଜୀବାତ୍ମା ଏହିପରି କହି ଅନ୍ତର୍ହିତ ହୁଅନ୍ତେ ତାହାର ଜ୍ଞାତିମାନେ ବିସ୍ମୟାବିଷ୍ଟ ଚିତ୍ତରେ ନିଜ ନିଜର ସ୍ନେହ ବନ୍ଧନ ଛେଦନ ପୂର୍ବକ ଶୋକ ପରିତ୍ୟାଗ କରିଥିଲେ । ୧୨ ।

---

ଯାବତ ଦେହେ ଅହଂକାର
ତାବତ ତହିଁ ଅଧିକାର
ଦେହ ଛାଡ଼ିଲେ ଜୀବ ନିତ୍ୟ
ଆଉ ଦେହରେ ନାହିଁ ସ୍ୱତ୍ୱ ।୮।
ଏ ଯେ ନିତ୍ୟ ବସ୍ତୁ ଅବ୍ୟୟ
ସୂକ୍ଷ୍ମ ସ୍ୱରୂପ ସର୍ବାଶ୍ରୟ
ଆତ୍ମା ମାୟା ଗୁଣରୁ କରି
ଆତ୍ମ ସୃଷ୍ଟିକି ସେ ଆଚରି

ଏହାର ଅତି ପ୍ରିୟ କେହି
ଅପ୍ରିୟ ଜନ କେହି ନାହିଁ
ଆତ୍ମ ପର ନାହିଁ ଏହାର
ଦେଖନ୍ତା ସେ ଗୁଣଦୋଷର ।୯।୧୦
ଗୁଣ ଦୋଷ କ୍ରିୟାର ଫଳ
ଗ୍ରହଣ ନ କରେ ସକଳ
ଉଦାସୀନ ପ୍ରାୟ ହୋଇ
ପର ଅପରକୁ ଦେଖଇ

ଏମନ୍ତ ଏକ ସେ ଈଶ୍ୱର
ସଂସାର ନିର୍ମିତ ତାହାର ।୧୧।
ଶ୍ରୀବାଦରାୟଣିରୁବାଚ—
ଏମନ୍ତ କହିଣ ବଚନ
ଜୀବ ଚଳିଗଲା ହେ ରାଜନ
ବିସ୍ମୟେ ତାର ବନ୍ଧୁଗଣ
ଶୋକ ଛାଡ଼ିଲେ ତତକ୍ଷଣ
ତା ତହୁଁ ଜ୍ଞାନକୁ ଶୁଣିଲେ
ସ୍ନେହ ଶୋକୋଳିକ ଛେଦିଲେ ।୧୨

ନିର୍ହୃତ୍ୟ ଜ୍ଞାତୟୋ ଜ୍ଞାତେର୍ଦେହଂ କୃତ୍ୱୋଚିତାଃ କ୍ରିୟାଃ ।
ତତ୍ୟଜୁର୍ଦୁସ୍ତ୍ୟଜଂ ସ୍ନେହଂ ଶୋକମୋହଭୟାର୍ତ୍ତିଦମ୍ । ୧୩ ।
ବାଲଘ୍ନ୍ୟୋ ବ୍ରୀଡ଼ିତାସ୍ତତ୍ର ବାଲହତ୍ୟାହତପ୍ରଭାଃ ।
ବାଲହତ୍ୟାବ୍ରତଂ ଚେରୁର୍ବ୍ରାହ୍ମଣୈର୍ଯନ୍ନିରୂପିତଂ-
ଯମୁନାୟାଂ ମହାରାଜ ସ୍ମରନ୍ତ୍ୟୋ ଦ୍ୱିଜଭାଷିତମ୍ । ୧୪ ।
ସ ଇତ୍ଥଂ ପ୍ରତିବୁଦ୍ଧାତ୍ମା ଚିତ୍ରକେତୁର୍ଦ୍ୱିଜୋକ୍ତିଭିଃ ।
ଗୃହାନ୍ଧକୂପାନ୍ନିଷ୍କ୍ରାନ୍ତଃ ସରଃପଙ୍କାଦିବ ଦ୍ୱିପଃ । ୧୫ ।
କାଳିନ୍ଦ୍ୟାଂ ବିଧିବତ୍ ସ୍ନାତ୍ୱା କୃତପୁଣ୍ୟଜଳକ୍ରିୟଃ ।
ମୌନେନ ସଂଯତପ୍ରାଣୋ ବ୍ରହ୍ମପୁତ୍ରାବବନ୍ଦତ । ୧୬ ।

---

ଜ୍ଞାତମାନେ ସେହି ରାଜପୁତ୍ରର ମୃତଦେହ ଯଥା ସ୍ଥାନକୁ ନେଇ ଯଥାବିଧି ସଂସ୍କାରାଦି ସମାପନ କରି ଶୋକ, ମୋହ, ଭୟ ଓ ଦୁଃଖ ଜନକ ଅପରିହାର୍ଯ୍ୟ ସ୍ନେହ ତ୍ୟାଗ କରିଥିଲେ । ୧୩ ।

ହେ ମହାରାଜ ପରୀକ୍ଷିତ :—

ସେତେବେଳେ ଶିଶୁପୁତ୍ରଘାତକୀ ସପତ୍ନୀମାନେ ଶିଶୁହତ୍ୟା ହେତୁ ଅତ୍ୟନ୍ତ ହତପ୍ରଭ ଓ ଲଜ୍ଜିତ ହୋଇଥିଲେ । ଅଙ୍ଗିରା ପ୍ରଭୃତି ବ୍ରାହ୍ମଣମାନଙ୍କର ଉପଦେଶ ବାକ୍ୟ ଶ୍ରବଣ କରି ସେମାନେ ଯମୁନାତୀରରେ ଶିଶୁହତ୍ୟା ଜନିତ ପାପକ୍ଷୟ ନିମନ୍ତେ ପ୍ରାୟଶ୍ଚିତ୍ତ ସ୍ୱରୂପ ବ୍ରତାନୁଷ୍ଠାନ କରିଥିଲେ । ୧୪ ।

ରାଜା ଚିତ୍ରକେତୁ ମହର୍ଷି ଅଙ୍ଗିରାଙ୍କର ସେହି ଉପଦେଶରେ ଜ୍ଞାନଲାଭ କରି ହସ୍ତୀ ଯେପରି କର୍ଦ୍ଦମମୟ ସରୋବରରୁ ନିର୍ଗତ ହୁଏ ସେହିପରି ଅନ୍ଧକୂପ ତୁଲ୍ୟ ଗୃହରୁ ନିର୍ଗତ ହୋଇଥିଲେ । ୧୫ ।

ସେ ଯମୁନାରେ ଯଥାବିଧି ସ୍ନାନ ଓ ତର୍ପଣାଦି ଜଳକ୍ରିୟା ସମାପନ କରି ସଂଯତ ଚିତ୍ତରେ ମୌନବ୍ରତ ଅବଲମ୍ବନ କରି ନାରଦ ଓ ଅଙ୍ଗିରାଙ୍କୁ ବନ୍ଦନା କରିଥିଲେ । ୧୬ ।

---

ଏ ଅନନ୍ତରେ ଜ୍ଞାତି ଜନ
ବେଦ ଉଚିତ କର୍ମମାନ
ଲୋକ ବିଧିରେ ତାହା କଲେ
ସମସ୍ତ ତାପକୁ ଛାଡିଲେ
ଯେ ଶୋକ ମୋହ ସ୍ନେହ ହୋଇ
ତାହା ଛାଡିଲେ ଜ୍ଞାନ ପାଇ ।୧୩।
ସେ ଯେ ବାଳଘ୍ନୀ ରାଜନାରୀ
ଲାଜ ପାଇ ମନେ ବିସ୍ତରି
ବାଳକହତ୍ୟା ପାପୁଁ କରି
ହତ ହୋଇଛି ତାଙ୍କ ଶିରୀ
ବ୍ରାହ୍ମଣେ ବରଣ ଉଚିତ
ବାଳକ-ହତ୍ୟାର ଯେ ବ୍ରତ
ଯମୁନା କୂଳକୁ ସେ ଗଲେ
ବାଳକହତ୍ୟା ବ୍ରତ କଲେ
ବ୍ରାହ୍ମଣ ଆଜ୍ଞା ପରମାଣେ
କଲେ ସେବେଦର ବିଧାନେ ।୧୪
ଏମନ୍ତେ ଶୁଣ ହେ ରାଜନ
ଚିତ୍ରକେତୁ ବିପ୍ର ବଚନ
ତକ୍ଷଣେ ଶୁଣି ଜ୍ଞାନ ପାଇ
ଗୃହକୂପୁଁ ବାହାର ହୋଇ
ସର-ପଙ୍କରୁ ଗଜ ଯେହ୍ନେ
ବାହାରହୋଇଲେତେସନେ ।୧୫।
କାଳନ୍ଦୀଜଳେ ସ୍ନାନ କରି
ପୁଣ୍ୟ କ୍ରିୟାକୁ ଆଚରିଣ
ମଉନବ୍ରତ ହୋଇ ରାଜା
ମୁନି ଚରଣେ କଲେ ପୂଜା ।୧୬।

ଅଥ ତସ୍ମୈ ପ୍ରପନ୍ନାୟ ଭକ୍ତାୟ ପ୍ରୟତାତ୍ମନେ ।
ଭଗବାନ୍ ନାରଦଃ ପ୍ରୀତୋ ବିଦ୍ୟାମେତାମୁବାଚ ହ । ୧୭ ।
ଓଁ ନମସ୍ତୁଭ୍ୟଂ ଭଗବତେ ବାସୁଦେବାୟ ଧୀମହି ।
ପ୍ରଦ୍ୟୁମ୍ନାୟାନିରୁଦ୍ଧାୟ ନମଃ ସଙ୍କର୍ଷଣାୟ ଚ । ୧୮ ।
ନମୋ ବିଜ୍ଞାନମାତ୍ରାୟ ପରମାନନ୍ଦମୂର୍ତ୍ତୟେ ।
ଆତ୍ମାରାମାୟ ଶାନ୍ତାୟ ନିବୃତ୍ତଦ୍ୱୈତଦୃଷ୍ଟୟେ । ୧୯ ।
ଆତ୍ମାନନ୍ଦାନୁଭୂତ୍ୟୈବ ନ୍ୟସ୍ତ ଶକ୍ତ୍ୟୁର୍ମ୍ମୟେ ନମଃ ।
ହୃଷୀକେଶାୟ ମହତେ ନମସ୍ତେଽନନ୍ତମୂର୍ତ୍ତୟେ । ୨୦ ।
ବଚସ୍ୟୁପରତେଽପ୍ରାପ୍ୟ ଯଏକୋ ମନସା ସହ ।
ଅନାମରୂପଶ୍ଚିନ୍ମାତ୍ରଃ ସୋଽବ୍ୟାନ୍ନଃ ସଦସତ୍ପରଃ । ୨୧ ।

---

ତଦନନ୍ତର ଭଗବାନ୍ ନାରଦ ସନ୍ତୁଷ୍ଟ ହୋଇ ଶରଣାଗତ ସଂଯତଚିତ୍ତ ଚିତ୍ରକେତୁଙ୍କୁ ଏହିପରି ମନ୍ତ୍ରୋପଦେଶ ଦେଇଥିଲେ । ୧୭ ।

ବାସୁଦେବ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଓ ସଙ୍କର୍ଷଣ ଏହି ଚତୁର୍ବ୍ୟୂହ ସ୍ୱରୂପ ଭଗବାନ୍ ବ୍ରହ୍ମା ବିଷ୍ଣୁ ମହେଶ୍ୱରାତ୍ମକ, ତୁମ୍ଭଙ୍କୁ ମୁଁ ପୁନଃ ପୁନଃ ନମସ୍କାର ଓ ଧ୍ୟାନ କରୁଅଛି । ୧୮ ।

ତୁମ୍ଭେ ଚୈତନ୍ୟ ଓ ପରମାନନ୍ଦ ସ୍ୱରୂପ । ଆନନ୍ଦ ଭୋଗରେ ହିଁ ତୁମ୍ଭେ ବ୍ୟାପୃତ । ତୁମ୍ଭେ ରାଗ ଦ୍ୱେଷାଦି ଶୂନ୍ୟ ଏବଂ ଭେଦବୁଦ୍ଧି ନିବାରଣକାରୀ, ତୁମ୍ଭଙ୍କୁ ନମସ୍କାର । ୧୯ ।

ତୁମ୍ଭେ ଆତ୍ମ ସ୍ୱରୂପ ଆନନ୍ଦଲାଭ କରି ମାୟାର କାର୍ଯ୍ୟ ରାଗ ଓ ଦ୍ୱେଷ ପ୍ରଭୃତି ଦୂର କରିଅଛ, ତୁମ୍ଭେ ଅତ୍ୟନ୍ତ ମହାନ୍ ବିଶ୍ୱରୂପ ଏବଂ ବିଷୟ ଓ ଇନ୍ଦ୍ରିୟବର୍ଗଙ୍କର ଅଧିପତି, ତୁମ୍ଭଙ୍କୁ ମୋର ନମସ୍କାର ।୨୦

ମନ ଏବଂ ବାକ୍ୟ ପ୍ରଭୃତି ଦଶେନ୍ଦ୍ରିୟ ଦ୍ୱାରା ଯେଉଁ ଭଗବାନ୍ ଅନୁଭୂତ ହୋଇ ନ ପାରନ୍ତି ଏବଂ ଯେ କେବଳ ସ୍ୱୟଂ ପ୍ରକାଶିତ ହୁଅନ୍ତି, ଯାହାଙ୍କର ନାମ, ରୂପ ପ୍ରଭୃତି କୌଣସି ଉପାଧି ନାହିଁ ଏବଂ ଯେ କାର୍ଯ୍ୟ କାରଣ ସ୍ୱରୂପ ସମସ୍ତ ବିଶ୍ୱର କାରଣ ସେହି ଚୈତନ୍ୟ ସ୍ୱରୂପ ଭଗବାନ୍ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ୨୧ ।

---

ଏଥି ଅନ୍ତରେ ନୃପବର
ଭକତି ଦେଖିଣ ରାଜାର
ନାରଦ ତାଙ୍କୁ କୃପା କଲେ
ଏ ବିଦ୍ୟା ରାଜାଙ୍କୁ କହିଲେ ।୧୭।
ନମସ୍ତେ ପ୍ରଭୁ ଭଗବାନ
ବାସୁଦେବ ସର୍ବକାରଣ

ପ୍ରଦ୍ୟୁମ୍ନ ଅନିରୁଦ୍ଧ ବେନି
ନମସ୍ତେ ସଙ୍କର୍ଷଣ ପୁଣି ।୧୮।
ନମସ୍ତେ ଜ୍ଞାନର ଈଶ୍ୱର
ପରମାନନ୍ଦ ମୂର୍ତ୍ତି ଯାର
ନମସ୍ତେ ଶାନ୍ତ ଆତ୍ମାରାମ
ଅବ୍ୟୟରୂପ ପୂର୍ଣ୍ଣକାମ

ହେ ହୃଷୀକେଶ ଯେ ମହତ
ନମସ୍ତେ ଯେ ମୂର୍ତ୍ତିଅନନ୍ତ ।୧୯।୨୦
ମନ ବଚନ ଅଗୋଚର
ମହିମା ନାମ ରୂପ ଯାର
ଚିନ୍ମୟ ଯାହାର ଶରୀର
ରଖନ୍ତୁ ସଦସଦ-ପର । ୨୧।

ଯସ୍ମିନ୍ନିଦଂ ଯତଶ୍ଚେଦଂ ତିଷ୍ଠତ୍ୟପ୍ୟେତି ଜାୟତେ ।
ମୃଣ୍ମୟେଷ୍ୱିବ ମୃଜ୍ଜାତିସ୍ତସ୍ମୈ ତେ ବ୍ରହ୍ମଣେ ନମଃ । ୨୨ ।
ଯନ୍ନ ସ୍ପୃଶନ୍ତି ନ ବିଦୁର୍ମନୋବୁଦ୍ଧୀନ୍ଦ୍ରିୟାସବଃ ।
ଅନ୍ତର୍ବହିଶ୍ଚ ବିତତଂ ବ୍ୟୋମବତ୍ତନ୍ନତୋଽସ୍ମ୍ୟହମ୍ । ୨୩ ।
ଦେହେନ୍ଦ୍ରିୟପ୍ରାଣମନୋଧିୟୋଽମୀ ଯଦଂଶବିଦ୍ଧାଃ ପ୍ରଚରନ୍ତି କର୍ମସୁ ।
ନୈବାନ୍ୟଦା ଲୌହମିବାପ୍ରତପ୍ତଂ ସ୍ଥାନେଷୁ ତଦ୍ଦ୍ରଷ୍ଟ୍ରପଦେଶମେତି । ୨୪ ।
ଓଁ ନମୋ ଭଗବତେ ମହାପୁରୁଷାୟ ମହାନୁଭାବାୟ ମହାବିଭୂତିପତୟେ ସକଳସାତ୍ୱତପରିବୃଢ଼ନିକରକରକମଳ କୁଡ୍ମଳୋପଲାଳିତ ଚରଣାରବିନ୍ଦଯୁଗଳ ପରମପରମେଷ୍ଠିନ୍ ନମସ୍ତେ । ୨୫ ।

---

ଏହି ବିଶ୍ୱ ଯାହାଙ୍କଠାରେ ଅବସ୍ଥାନ କରୁଅଛି ଏବଂ ଯାହାଙ୍କଠାରୁ ଉତ୍ପନ୍ନ ଏବଂ ଯାହାଙ୍କଠାରେ ଲୟ ପ୍ରାପ୍ତ ହୁଏ ମୃତ୍ତିକା-ନିର୍ମିତ ସକଳ ବସ୍ତୁରେ ଯେପରି ମୃତ୍ତିକାର ସମ୍ବନ୍ଧ ଅଛି ସେହିପରି ବିଶ୍ୱର ସମସ୍ତ ବସ୍ତୁରେ ଯାହାଙ୍କର ସମ୍ବନ୍ଧ ଅଛି ସେହି ପରମ-ବ୍ରହ୍ମଙ୍କ ନମସ୍କାର । ୨୨ ।

ଯେଉଁ ବ୍ରହ୍ମ ଆକାଶପରି ବସ୍ତୁର ବାହାରେ ଓ ଅନ୍ତର ମଧ୍ୟରେ ସର୍ବତ୍ର ବ୍ୟାପୀ ରହିଅଛି ଓ ମନ ବୁଦ୍ଧି ଏବଂ ଇନ୍ଦ୍ରିୟ ସମସ୍ତ ଜ୍ଞାନଶକ୍ତି ଦ୍ୱାରା ଯାହାଙ୍କୁ ଅନୁଭବ କରାଯାଏ ନାହିଁ ଏବଂ ପ୍ରାଣାଦି ବାୟୁମାନେ କ୍ରିୟାଶକ୍ତି ଦ୍ୱାରା ଯାହାଙ୍କୁ ସ୍ପର୍ଶ କରିପାରନ୍ତି ନାହିଁ ସେହି ବ୍ରହ୍ମଙ୍କୁ ମୋର ନମସ୍କାର । ୨୩ ।

ଦେହ, ଇନ୍ଦ୍ରିୟ, ପ୍ରାଣ, ମନ, ବୁଦ୍ଧି ଏମାନେ ଯେଉଁ ବ୍ରହ୍ମରେ ଚୈତନ୍ୟଶକ୍ତିଦ୍ୱାରା ଅନୁପ୍ରାଣିତ ହୋଇ ନିଜ ନିଜର ବିଷୟମାନ ଜାଗ୍ରତ ଓ ସ୍ୱପ୍ନ ଅବସ୍ଥାରେ ଗ୍ରହଣ କରୁଥାନ୍ତି ଏବଂ ଅନ୍ୟ ସମୟରେ ଅର୍ଥାତ୍ ସୁସୁପ୍ତି ଓ ମୂର୍ଚ୍ଛିତାବସ୍ଥାରେ ଗ୍ରହଣ କରି ପାରନ୍ତି ନାହିଁ, ଯେପରି ଲୌହ ଅଗ୍ନି ତାପରେ ତପ୍ତ ନ ହେଲେ ଦହନ କରିପାରେ ନାହିଁ, ସେହିପରି, ସେହି ବ୍ରହ୍ମ ଜାଗ୍ରତ ଓ ସ୍ୱପ୍ନାବସ୍ଥାରେ ସାକ୍ଷାତ୍ କର୍ତ୍ତାରୂପେ ଅଭିହିତ ହୋଇଥାନ୍ତି । ୨୪ ।

ହେ ସର୍ବୋତ୍ତମ ! ସମସ୍ତ ଭକ୍ତଶ୍ରେଷ୍ଠ ମାନଙ୍କର ହସ୍ତରୂପ ପଦ୍ମ ମୁକୁଳ ଦ୍ୱାରା ତୁମ୍ଭର ଶ୍ରୀପାଦପଦ୍ମ ଯୁଗଳ ସେବିତ ହୋଇଥାଏ । ତୁମେ ଅଣିମାଦି ଶ୍ରେଷ୍ଠ ଐଶ୍ୱର୍ଯ୍ୟ ସମୂହର ଅଧିପତି ଏବଂ ମହାପୁରୁଷ, ତୁମ୍ଭଙ୍କୁ ପୁନଃ ପୁନଃ ନମସ୍କାର କରୁଅଛୁ । ୨୫ ।

---

ଯାହାର ତହୁଁ ଏ ଜଗତ
ହେଉଅଛନ୍ତି ଆତଜାତ
ମୃତ୍ତିକାଠାରୁ ନାନାପାତ୍ର
ଯେସନେ ହେଉଅଛି ଜାତ
ପ୍ରଳୟ ସ୍ଥିତି ଜାତ ଯହିଁ
ସେ ବ୍ରହ୍ମେ ନମସ୍କାରହୋଇ ।୨୨
ବୁଦ୍ଧି ଇନ୍ଦ୍ରିୟ ଆଦି ମନ
ଯାହାକୁ ନ ଜାଣଇ ପ୍ରାଣ
ବାହ୍ୟ ଅନ୍ତରେ ବ୍ୟାପୀ ହୋଇ
ଆକାଶ ପ୍ରାୟ ଯେ ଅଛଇ
ତାହାଙ୍କୁ ମୋର ନମସ୍କାର
ଯେ ପ୍ରଭୁ ଜଗତ ଠାକୁର । ୨୩।
ଅଶେଷ କ୍ଷେତ୍ରେ ଯା ବିହାର
ଅଚ୍ୟୁତ ପରମ ଈଶ୍ୱର
ଦେହ ଇନ୍ଦ୍ରିୟ ଆଦି ପ୍ରାଣ
ବୁଦ୍ଧି ସହିତେ ଯେଉଁ ମନ
ଯାହାର ଅଂଶରୁ ଏମାନ
କର୍ମରେ କରନ୍ତି ଭ୍ରମଣ ।୨୪।
ଭଗବାନ ମହାପୁରୁଷ
ଯାହାର ଭାବରେ ପ୍ରକାଶ
ମହା ବିଭୂତିର ଈଶ୍ୱର
ସକଳ ଭକ୍ତଜନଙ୍କର
କରକମଳ-ଦଳେ କରି
ସେବିତ ଚରଣ ତାହାରି
ଏମନ୍ତ ପରମ ଈଶ୍ୱର
ତାହାଙ୍କୁ ମୋର ନମସ୍କାର। ୨୫

ଶ୍ରୀଶୁକ ଉବାଚ ।

ଭକ୍ତାୟୈତାଂ ପ୍ରପନ୍ନାୟ ବିଦ୍ୟାମାଦିଶ୍ୟ ନାରଦଃ ।
ଯଯୌ ଅଙ୍ଗିରସା ସାକଂ ଧାମ ସ୍ୱାୟମ୍ଭୁବଂ ପ୍ରଭୋ । ୨୬ ।
ଚିତ୍ରକେତୁସ୍ତୁ ତାଂ ବିଦ୍ୟାଂ ଯଥା ନାରଦଭାଷିତାମ୍ ।
ଧାରୟାମାସ ସପ୍ତାହମବ୍ଭକ୍ଷଃ ସୁସମାହିତଃ । ୨୭ ।
ତତଃ ସ ସପ୍ତରାତ୍ରାନ୍ତେ ବିଦ୍ୟୟା ଧାର୍ଯ୍ୟମାଣୟା ।
ବିଦ୍ୟାଧରାଧିପତ୍ୟଂ ଚ ଲେଭେଽପ୍ରତିହତଂ ନୃପ । ୨୮ ।
ତତଃ କତିପୟାହୋଭିର୍ବିଦ୍ୟୟେଦ୍ଧମନୋଗତିଃ ।
ଜଗାମ ଦେବଦେବସ୍ୟ ଶେଷସ୍ୟ ଚରଣାନ୍ତିକମ୍ । ୨୯ ।

---

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ପରୀକ୍ଷିତ । ନାରଦ ଶରଣାଗତ ଭକ୍ତରାଜା ଚିତ୍ରକେତୁଙ୍କୁ ଏହିପରି ମନ୍ତ୍ରୋପଦେଶ ପ୍ରଦାନ କରି ମହର୍ଷି ଅଙ୍ଗିରାଙ୍କ ସହିତ ବ୍ରହ୍ମଲୋକକୁ ଗମନ କରିଥିଲେ । ୨୬ ।

ଚିତ୍ରକେତୁ ସପ୍ତାହକାଳ ପର୍ଯ୍ୟନ୍ତ କେବଳ ଜଳପାନ କରି ଅତ୍ୟନ୍ତ ଏକାଗ୍ରଚିତ୍ତରେ ନାରଦଙ୍କ ଉପଦିଷ୍ଟ ସେହି ବିଦ୍ୟା ଯଥା ଯଥ ଭାବରେ ଧାରଣ କରିଥିଲେ । ୨୭ ।

ହେ ରାଜନ୍ ! ସପ୍ତାହକାଳ ଉତ୍ତାରୁ ରାଜା ଚିତ୍ରକେତୁ ନାରଦୋପଦିଷ୍ଟ ବିଦ୍ୟା ପ୍ରଭାବରେ ବିଦ୍ୟାଧର ଗଣଙ୍କ ତୁଲ୍ୟ ପ୍ରଭୁତ୍ୱ ଲାଭ କରିଥିଲେ । ୨୮ ।

ତଦନନ୍ତର କେତେକ ଦିନ ପରେ ରାଜାଙ୍କ ମନ ପ୍ରଦୀପ୍ତ ହୋଇଉଠିଲା । ତହିଁରେ ସେ ମଙ୍ଗଳମୟ ଗତି ପ୍ରାପ୍ତ ହେଲେ । ସେ ଦେବାଧିଦେବ ସଙ୍କର୍ଷଣଙ୍କ ଶ୍ରୀଚରଣକୁ ଗମନ କଲେ । ୨୯ ।

---

ଶ୍ରୀ ଶୁକ ଉବାଚ ।
ଭକତ ରାଜାଙ୍କୁ ନାରଦେ
ଏ ବିଦ୍ୟା ଦେଲେ ଅପ୍ରମାଦେ
ଅଙ୍ଗିରା ସହିତେ ରାଜନ ।
ଗଲେ ସେ ବ୍ରହ୍ମାର ଭୁବନ ।୨୬।
ଚିତ୍ରକେତୁ ସେ ବିଦ୍ୟା ଘେନି
ଯେମନ୍ତ କହିଥିଲେ ମୁନି
ଧଇଲା ସପ୍ତରାତ୍ର ସେହି
ପବିତ୍ର ନିରାହାର ହୋଇ
ସପତ ରାତ୍ରେ ଅପ୍ରମାଦେ
ନାରଦ ବିଦ୍ୟାର ପ୍ରସାଦେ
ବିଦ୍ୟାଧର ଅଧିପ ପଣ
ଲଭିଲା ଚିତ୍ରକେତୁ ପୁଣ । ୨୭।୨୮
ଶୁଣ ରାଜନ ! ଏକମନେ
ଏ ଅନନ୍ତରେ କେତେ ଦିନେ
ବିଦ୍ୟାରୁ କରି ଶୁଦ୍ଧମତି
ଲଭିଲା ସେଥୁ ସେ ନୃପତି
ଅନନ୍ତ ଦେବ ଦେବେଶ୍ୱର
ଗଲା ନିକଟ ତାହାଙ୍କର । ୨୯।

ମୃଣାଳଗୌରଂ ସିତବାସସଂ ସ୍ଫୁରତ୍ କିରୀଟକେୟୂରକଟିତ୍ରକଙ୍କଣମ୍ ।
ପ୍ରସନ୍ନବକ୍ତ୍ରାରୁଣଲୋଚନଂ ବୃତଂ ଦଦର୍ଶ ସିଦ୍ଧେଶ୍ୱରମଣ୍ଡଳୈଃ ପ୍ରଭୁମ୍ ।୩୦।
ତଦ୍ଦର୍ଶନଧ୍ୱସ୍ତସମସ୍ତକିଲ୍‌ବିଷଃ ସ୍ୱସ୍ଥାମଳାନ୍ତଃକରଣୋଽଭ୍ୟୟାନ୍ମୁନିଃ ।
ପ୍ରବୃଦ୍ଧଭକ୍ତ୍ୟା ପ୍ରଣୟାଶ୍ରୁଲୋଚନଃ ପ୍ରହୃଷ୍ଟରୋମାନମଦାଦିପୁରୁଷମ୍ । ୩୧ ।
ସ ଉତ୍ତମଃଶ୍ଳୋକପଦାବ୍ଜବିଷ୍ଟରଂ ପ୍ରେମାଶ୍ରୁଲେଶୈରୁପମେହୟନ୍ମୁହୁଃ ।
ପ୍ରେମୋପରୁଦ୍ଧାଖିଳବର୍ଣ୍ଣନିର୍ଗମୋ ନୈବାଶକତ୍ ତଂ ପ୍ରଶମୀଡ଼ିତୁଂ ଚିରମ୍ ।୩୨।
ତତଃ ସମାଧାୟ ମନୋ ମନୀଷୟା ବଭାଷ ଏତତ୍ ପ୍ରତିଲବ୍ଧବାଗସୌ ।
ନିୟମ୍ୟ ସର୍ବେନ୍ଦ୍ରିୟବାହ୍ୟବର୍ତ୍ତନଂ ଜଗଦ୍‌ଗୁରୁଂ ସାତ୍ୱତ ଶାସ୍ତ୍ରବିଗ୍ରହମ୍ ।୩୩।

---

ଚିତ୍ରକେତୁ ଦେଖିଲେ ସଙ୍କର୍ଷଣ ଦେବ ସିଦ୍ଧଗଣପରିବ୍ୟାପ୍ତ ହୋଇ ରହି ଅଛନ୍ତି, ତାହାଙ୍କ ବର୍ଣ୍ଣ ମୃଣାଳ ତୁଲ୍ୟ ଶୁଭ୍ର । ପରିଧାନ ନୀଳବସ୍ତ୍ର, ମୁକୁଟ, କେୟୂର, କଟିସୂତ୍ର ଏବଂ କଙ୍କଣ ପ୍ରଭୃତି ଅଳଙ୍କାର ମାନ ତାହାଙ୍କ ଶରୀରରେ ଶୋଭା ପାଉଅଛି, ତାହାଙ୍କ ମୁଖମଣ୍ଡଳ ପ୍ରସନ୍ନ ଏବଂ ଚକ୍ଷୁରକ୍ତବର୍ଣ୍ଣ । ୩୦ ।

ସଙ୍କର୍ଷଣ ଦେବଙ୍କୁ ଦେଖିବାମାତ୍ରେ ଚିତ୍ରକେତୁଙ୍କର ସମସ୍ତ ପାପ ବିନଷ୍ଟ ହେଲା, ଅନ୍ତଃକରଣ ସୁସ୍ଥ ଓ ନିର୍ମଳ ହେଲା, ସେ ମୁନିମାନଙ୍କ ତୁଲ୍ୟ ଭକ୍ତିମାନ୍ ହେଲେ, ତାଙ୍କର ଭକ୍ତି ପରିବର୍ଦ୍ଧିତ ହୋଇ ନୟନରୁ ପ୍ରେମାଶ୍ରୁ ବିଗଳିତ ହେଲା । ଏବଂ ଶରୀର ରୋମାଞ୍ଚିତ ହେଲା, ସେ ସେହି ଆଦିପୁରୁଷଙ୍କ ନିକଟରେ ଶରଣାପନ୍ନ ହେଲେ ଏବଂ ତାହାଙ୍କୁ ପ୍ରଣାମ କରିଥିଲେ । ୩୧ ।

ରାଜା ଚିତ୍ରକେତୁ ପୁଣ୍ୟକୀର୍ତ୍ତି ସଙ୍କର୍ଷଣ ଦେବଙ୍କର ପାଦପଦ୍ମର ନିମ୍ନ ଦେଶସ୍ଥ ଆସନକୁ ପ୍ରେମାଶ୍ରୁ ଦ୍ୱାରା ବାରମ୍ବାର ସିକ୍ତ କରିଥିଲେ, ପ୍ରେମର ଆବେଗରେ ସମସ୍ତ ଅକ୍ଷର ଉଚ୍ଚାରଣ କରି ନ ପାରି ଅଧିକସମୟ ଭଗବାନଙ୍କ ସ୍ତବ କରି ପାରିଲେ ନାହିଁ । ୩୨ ।

କିଛି ସମୟପରେ ଚିତ୍ରକେତୁ ପୁନଶ୍ଚ ବାକ୍‌ଶକ୍ତି ଲାଭ କରିଥିଲେ । ପରେ ନିଜର ବୁଦ୍ଧିଦ୍ୱାରା ଚିତ୍ତ ସମାହିତ କରି ଏବଂ ସମସ୍ତ ଇନ୍ଦ୍ରିୟଙ୍କୁ ବାହ୍ୟ ବିଷୟରୁ ସଂଯତକରି ଭକ୍ତିଶାସ୍ତ୍ରୋକ୍ତ ସଚ୍ଚିଦାନନ୍ଦ ବିଗ୍ରହ ସମ୍ପନ୍ନ ଜଗଦ୍‌ଗୁରୁ ସଙ୍କର୍ଷଣଙ୍କୁ ଏହିପରି ବାକ୍ୟ କହିଲେ । ୩୩ ।

---

ମୃଣାଳ ପ୍ରାୟେ ତାଙ୍କ ବର୍ଣ୍ଣ
ଶୁକ୍ଳ ବସନ ପରିଧାନ
ଶୋଭିତ କିରୀଟ କେୟୂର
ମେଖଳା କଙ୍କଣ ଆବର
ପ୍ରସନ୍ନ ସୁନ୍ଦର ବଦନ
ଅରୁଣ ରାଜୀବ ଲୋଚନ
ବେଢ଼ିଣ ଛନ୍ତି ସିଦ୍ଧେଶ୍ୱର
ଦେଖିଲା ଯାଇ ନୃପବର ।୩୦।

ତାଙ୍କର ଦରଶନ ପାଇ
ସକଳ ପାପୁଁ ମୁକ୍ତ ହୋଇ
ଅନ୍ତଃକରଣ ଶୁଦ୍ଧ ହେଲା
ଅଶ୍ରୁରେ ଲୋଚନ ପୂରିଲା
ଭକ୍ତିରୁ ରୋମାଞ୍ଚ ହୋଇଲା
ଆଦି ପୁରୁଷଙ୍କୁ ନମିଲା ।୩୧।
ସେ ଚିତ୍ରକେତୁ ହୃଷ୍ଟ ହୋଇ
ନୟନ-ଜଳେ ପାଦ ଧୋଇ

ପ୍ରେମେ କୁଣ୍ଠିତ କଣ୍ଠ ହୋଇ
ସ୍ତୁତି କରିଣ ନ ପାରଇ
ହରଷେ ପୂର୍ଣ୍ଣ ଇନ୍ଦ୍ରି ଗଣ
କ୍ରମରେ କରି ନିବାରଣ
ଜଗତ-ଗୁରୁ ଗୁରୁବର
ଯାଦବ ବଂଶର ଠାକୁର
ତାହାଙ୍କ ପାଦେ ଦେଇ ମନ
କହଇ ମଧୁର ବଚନ । ୩୨-୩୩।

ଚିତ୍ରକେତୁରୁବାଚ ।

ଅଜିତ ଜିତଃ ସମମତିଭିଃ ସାଧୁଭିର୍ଭବାନ୍ ଜିତାତ୍ମଭିର୍ଭବତା ।
ବିଜିତାସ୍ତେଽପି ଚ ଭଜତାମକାମାତ୍ମନାଂ ଯ ଆତ୍ମଦୋଽତିକରୁଣଃ । ୩୪ ।
ତବ ବିଭବଃ ଖଲୁ ଭଗବନ୍ ଜଗଦୁଦୟସ୍ଥିତିଲୟାଦୀନି ।
ବିଶ୍ୱସୃଜସ୍ତେଽଂଶାଂଶାସ୍ତତ୍ର ମୃଷା ସ୍ପର୍ଦ୍ଧନ୍ତି ପୃଥଗଭିମତ୍ୟା । ୩୫ ।
ପରମାଣୁ ପରମମହତୋ ସ୍ତ୍ୱମାଦ୍ୟନ୍ତାନ୍ତରବର୍ତ୍ତୀ ତ୍ରୟବିଧୁରଃ ।
ଆଦାବନ୍ତେ ସତ୍ତ୍ୱାନାଂ ଯଦ୍ଧ୍ରୁବଂ ତଦେବାନ୍ତରାଲେଽପି । ୩୬ ।
କ୍ଷିତ୍ୟାଦିଭିରେଷ କିଲାବୃତଃ ସପ୍ତଭିର୍ଦଶଗୁଣୋତ୍ତରୈରଣ୍ଡକୋଷଃ ।
ଯତ୍ର ପତତ୍ୟଣୁକଳ୍ପଃ ମହାଣ୍ଡକୋଟିକୋଟିଭିସ୍ତଦନନ୍ତଃ । ୩୭ ।

ଶ୍ରୀ ଚିତ୍ରକେତୁ କହିଲେ :—"ହେ ଅଜିତ ! (ଯାହାଙ୍କୁ ଅନ୍ୟ କେହି ଜୟ କରିପାରେ ନାହିଁ;—ତଥାପି ସଂଯତ ଚିତ୍ତ ସମବୁଦ୍ଧି ଭକ୍ତମାନେ ତୁମ୍ଭଙ୍କୁ ଆୟତ୍ତ କରିଅଛନ୍ତି । ଆପଣ ଅତ୍ୟନ୍ତ ଦୟାଳୁ, ଯେଉଁମାନେ ନିଷ୍କାମଭାବରେ ଆପଣଙ୍କ ଭଜନାରେ ବ୍ୟାପୃତ, ସେମାନଙ୍କୁ ଆପଣ ନିଜର ଆତ୍ମା ପର୍ଯ୍ୟନ୍ତ ଦେବାକୁ ପ୍ରସ୍ତୁତ, ସୁତରାଂ ଆପଣ ମଧ୍ୟ ସେହି ଭକ୍ତମାନଙ୍କୁ ଜୟ କରି ଅଛନ୍ତି । ୩୪ ।

ହେ ଭଗବନ୍ ! ଜଗତର ସୃଷ୍ଟି ସ୍ଥିତି ପ୍ରଳୟ ଏ ସମସ୍ତ ଆପଣଙ୍କର ମହିମା, ବ୍ରହ୍ମାଦିଦେବଗଣ ଆପଣଙ୍କର ଅଂଶର ଅଂଶ, ତଥାପି ସେମାନେ ପୃଥକ୍ ପୃଥକ୍ ଈଶ୍ୱର ବୋଲି ଅଭିମାନକରି ଗର୍ବ ବହନ କରିଥାନ୍ତି । ୩୫ ।

ଯାହା ପରମାଣୁ ଅର୍ଥାତ୍ ଯାହା ସୂକ୍ଷ୍ମ ମୂଳକାରଣ ପରମମହତ୍ ଅର୍ଥାତ୍ ସୃଷ୍ଟିମଧ୍ୟରେ ସର୍ବାପେକ୍ଷା ବୃହତ୍, ତୁମ୍ଭେ ସେହି ଉଭୟର ଆଦିରେ, ଅନ୍ତରେ ଓ ମଧ୍ୟରେ ଅବସ୍ଥାନ କର, ଏଣୁ ତୁମ୍ଭେ ଆଦିଅନ୍ତ ମଧ୍ୟ ଶୂନ୍ୟ, ଯାହା କାର୍ଯ୍ୟର ଆଦ୍ୟରେ ଏବଂ ଅନ୍ତରେ ସ୍ଥିରଭାବରେ ଥାଏ, ତାହା ମଧ୍ୟ ଭାଗରେ ମଧ୍ୟ ଅବଶ୍ୟ ବିଦ୍ୟମାନ । ୩୬ ।

ପୂର୍ବ ପୂର୍ବ ଅପେକ୍ଷା ଉତ୍ତରୋତ୍ତର ଦଶଗୁଣ ଅଧିକ କ୍ଷିତି ପ୍ରଭୃତି ଦଶ ପଦାର୍ଥ ଦ୍ୱାରା ଏହି ବ୍ରହ୍ମାଣ୍ଡ କୋଷ ଆବୃତ୍ତ ସତ୍ୟ, କିନ୍ତୁ ଏହିପରି କୋଟି କୋଟି ବ୍ରହ୍ମାଣ୍ଡ ସହ ଏହି ବ୍ରହ୍ମାଣ୍ଡ ତୁମ୍ଭଠାରେ ପରମାଣୁତୁଲ୍ୟ ଭ୍ରମଣ କରୁ ଅଛନ୍ତି, ସୁତରାଂ ତୁମ୍ଭେ ଅନନ୍ତ । ୩୭ ।

ଶ୍ରୀ ଚିତ୍ରକେତୁରୁ ବାଚ ।
ତୁହି ଯେ ଅଜିତ ସ୍ୱଭାବେ
ଭକତ ତୋତେ ଜିତେ ଭାବେ
ଯେଣୁ ତୁ ଅତିହିଁ କରୁଣ
ତେଣୁ ତୁ ଭକ୍ତର ଅଧୀନ
ନିଷ୍କାମେ ଯେଣୁ ସେ ଭଜନ୍ତି
ତେଣୁ ତୋହରେ ସେ ଜିଣନ୍ତି
ଯେ ତୋତେ କରଇ ଭଜନ
ତାହାଙ୍କ ପୂର୍ଣ୍ଣ କରୁ କାମ ।୩୪।
ଅତି ଦୟାଳୁ ରୂପଧର
ଜଗତ ବିଭବ ତୋହର
ଅନାଦି ତୁହି ତୋର ତହିଁ
ଉଦୟ ସ୍ଥିତି ଅନ୍ତ ହୋଇ
ସୃଷ୍ଟିର କର୍ତ୍ତା ଅଛୁ ଆର
ବୋଲଇ ଅଜ୍ଞ ଯେଉଁ ନର ।୩୫
ପରମ ଅଣୁ ରୂପହେଉ
ମହତ ତେଜକୁ ତୁ ବହୁ
ଆଦ୍ୟନ୍ତ ଅନ୍ତରାଳେ ସ୍ଥିତ
ଆଦ୍ୟନ୍ତ ମଧ୍ୟ ତୋ ରହିତ
ହେ ଦେବ ପ୍ରାଣିମାନଙ୍କର
ସାକ୍ଷୀ ରୂପକୁ ତୁମ୍ଭେ ଧର ।୩୬।
କ୍ଷିତି ଆଦି ଯେ ପଞ୍ଚଭୂତ
ଏଥିରେ ହୋଇଣ ନିର୍ମିତ
ସେହି ମହତ ଅଣ୍ଡକୋଷ
ଏହାର ତୋର ତହିଁ ବାସ ।୩୭।

ବିଷୟତୃଷୋ ନରପଶବୋ ଯ ଉପାସତେ ବିଭୂତୀର୍ନ ପରଂ ତ୍ୱାମ୍ ।
ତେଷାମାଶିଷ ଈଶ ତଦନୁ ବିନଶ୍ୟନ୍ତି ଯଥା ରାଜକୁଲମ୍ । ୩୮ ।
କାମଧିୟସ୍ତ୍ୱୟି ରଚିତା ନ ପରମ ରୋହନ୍ତି ଯଥା କରମ୍ଭବୀଜାନି ।
ଜ୍ଞାନାତ୍ମନ୍ୟଗୁଣମୟେ ଗୁଣଗଣତୋଽସ୍ୟ ଦ୍ୱନ୍ଦ୍ୱଜାଲାନି । ୩୯ ।
ଜିତମଜିତ ତଦାଭବତା ଯଦାହ ଭାଗବତଂ ଧର୍ମମନବଦ୍ୟମ୍ ।
ନିଷ୍କିଞ୍ଚନା ଯେ ମୁନୟ ଆତ୍ମାରାମା ଯମୁପାସତେଽପବର୍ଗାୟ । ୪୦ ।
ବିଷମମତିର୍ନ ଯତ୍ର ନୃଣାଂ ତ୍ୱମହମିତି ମମ ତବେତି ଚ ଯଦନ୍ୟତ୍ର ।
ବିଷମଧିୟା ରଚିତୋ ଯଃ ସହ୍ୟବିଶୁଦ୍ଧଃ କ୍ଷୟିଷ୍ଣୁରଧର୍ମବହୁଳଃ । ୪୧ ।

---

ହେ ଜଗଦୀଶ୍ୱର ! ଯେଉଁମାନେ ବିଷୟାସକ୍ତ, ଯେଉଁ ମନୁଷ୍ୟ ପଶୁସ୍ୱରୂପ ଦେହଧାରଣକରେ ସେପରି ଯେଉଁ ବ୍ୟକ୍ତିମାନେ ତୁମ୍ଭଙ୍କ ଉପାସନା ନ କରି ତୁମ୍ଭର ବିଭୂତିସ୍ୱରୂପ ଇନ୍ଦ୍ରାଦି ଦେବଗଣଙ୍କ ଉପାସନା କରନ୍ତି, ସେମାନଙ୍କ କାମ୍ୟ ବିଷୟ, ରାଜକୁଳ ନାଶହେଲେ ସେମାନଙ୍କର ଉପାସ୍ୟ ଦେବତାମାନେ ନଷ୍ଟ ହେବେ ।୩୮

ହେ ପରମପୁରୁଷ ! ଧନ ଐଶ୍ୱର୍ଯ୍ୟ ପ୍ରଭୃତିବିଷୟ ଲାଗି ଲୋକମାନଙ୍କର ଯେଉଁ ବୁଦ୍ଧି, ଚୈତନ୍ୟରୂପୀ ନିର୍ଗୁଣ ତୁମ୍ଭଠାରେ ଏକାଗ୍ରଭାବରେ ସଂସ୍ଥାପିତ ହେଲେ, ତାହା ପୁନର୍ଜନ୍ମର କାରଣ ହୋଇ ନ ପାରେ, ଯେପରି ଭଜାମଞ୍ଜିରୁ ଅଙ୍କୁର ଜନ୍ମେ ନାହିଁ, ସେହିପରି ଜୀବର ଗୁଣ ସମୂହରୁ ଗୁଣ ଦୁଃଖାଦି ଦ୍ୱନ୍ଦ୍ୱ ଉତ୍ପନ୍ନ ହୋଇ ନ ଥାଏ । ୩୯ ।

ହେ ଅଜିତ ! ଯେଉଁ ନିଷ୍କିଞ୍ଚନ ଅର୍ଥାତ୍ ଯେଉଁମାନଙ୍କର କାମ୍ୟବସ୍ତୁ ନାହିଁ, ଯେଉଁମାନେ ଆତ୍ମାରାମ ଅର୍ଥାତ୍ ତୁମ୍ଭଠାରେ ଯାହାଙ୍କର ଏକାନ୍ତ ଅନୁରାଗ ସେହି ସନତ୍‌କୁମାର ପ୍ରଭୃତି ମୁନିମାନେ ଚତୁର୍ବର୍ଗ ଅପେକ୍ଷା ଶ୍ରେଷ୍ଠ ତୁମ୍ଭପାଇଁ ଧର୍ମ ଆଶ୍ରୟ କରି ଅଛନ୍ତି, ଯେଉଁ ସର୍ବୋତ୍ତମଭାଗବତ ଧର୍ମ ଯେତେବେଳେ ତୁମ୍ଭେ କୀର୍ତ୍ତନ କରିଅଛ ସେତେବେଳେ ତୁମ୍ଭେ ସର୍ବାପେକ୍ଷା ଉତ୍ତମ । ୪୦ ।

ଅନ୍ୟ ଧର୍ମରେ ଯେପରି "ତୁମ୍ଭେ ମୁଁ" ବା "ତୁମ୍ଭର ମୋର" ପ୍ରଭୃତି ବିରୁଦ୍ଧ ବୁଦ୍ଧି ବିଦ୍ୟମାନ ଥାଏ ସେପରି ଭାଗବତ ଧର୍ମରେ ନ ଥାଏ । ଯେଉଁ ଧର୍ମ ଶତ୍ରୁ ସଂହାରାଦି କାମନା ଧର୍ମ ଶିକ୍ଷା ଦିଏ ତାହା ଅବିଶୁଦ୍ଧ, ଅତ୍ୟନ୍ତ ପାପଜନକ ଏବଂ ତାହାର ଫଳ ନଶ୍ୱର । ୪୧ ।

---

ବିଷୟ ଜଡ଼େ ମୋହ ହୋଇ
ଯେ ନର ବିଭୂତି ଭଜଇ
ତୁମ୍ଭ ଅର୍ଚ୍ଚନାକୁ ନ ଭଜନ୍ତି
ଗ୍ରାମର ପଶୁ ସେ ଯୁଗତେ
ହେ ପ୍ରଭୁ ତାହାର କଲ୍ୟାଣ
କେତେବେହେଁ ନୁହଇଟି ପୁଣ ।୩୮।
ଜ୍ଞାନାତ୍ମାମୟ ତୁ ଅଗୁଣ
ସକାମେ ଯେ ତୋର ଚରଣ
ପୂଜନ୍ତି ଜନ୍ମ ତାଙ୍କ ନାହିଁ
ଭଜା ବୀଜର ପ୍ରାୟ ହୋଇ ।୩୯
ତୁମ୍ଭେ ଯେ ଭାଗବତ ଧ
କହିଲ ପୁରୁଷ ଉତ୍ତମ
ନିଷ୍କିଞ୍ଚନ ଯେ ଆତ୍ମାରାମ
ଏମନ୍ତ ଯେଉଁ ମୁନିଜନ
ମୋକ୍ଷ କାମନେ ସେହି ଧର୍ମ
କରନ୍ତି କାତର୍ଯ୍ୟ ଉପାସନ ।୪୦।
ବିଷମ ମତିଟି ଯାହାର
ଏ ଧର୍ମ୍ମୁ ସେ ଜନ ବାହାର
ଯେଉଁ ଧର୍ମରେ ତୁହି ମୁହିଁ
ତୋହର ମୋର ଭେଦ ନାହିଁ ।୪୧

କଃ କ୍ଷେମୋ ନିଜପରୟୋଃ କିୟାନ୍ ବାର୍ଥଃ ସ୍ୱପରଦ୍ରୁହା ଧର୍ମେଣ ।
ସ୍ୱଦ୍ରୋହାତ୍ ତବ କୋପଃ ପରସଂପୀଡୟା ଚ ତଥାଧର୍ମଃ । ୪୨ ।
ନ ବ୍ୟଭିଚରତି ତବେକ୍ଷା ଯୟା ହ୍ୟଭିହିତୋ ଭାଗବତୋ ଧର୍ମଃ ।
ସ୍ଥିରଚରସତ୍ତ୍ୱକଦମ୍ବେଷ୍ୱପୃଥଗ୍‌ଧିୟୋ ଯମୁପାସତେ ତ୍ୱାର୍ଯ୍ୟାଃ । ୪୩ ।
ନ ହି ଭଗବନ୍ନଘଟିତମିଦଂ ତ୍ୱଦ୍ଦର୍ଶନାନ୍ନୃଣାମଖିଳପାପକ୍ଷୟଃ ।
ଯନ୍ନାମସକୃଚ୍ଛ୍ରବଣାତ୍ ପୁକ୍କଶୋଽପି ବିମୁଚ୍ୟତେ ସଂସାରାତ୍ । ୪୪ ।
ଅଥ ଭଗବନ୍ ବୟମଧୁନା ତ୍ୱଦବଲୋକ ପରିମୃଷ୍ଟାଶୟମଳାଃ ।
ସୁରଋଷିଣା ଯତ୍ କଥିତଂ ତାବକେନ କଥମନ୍ୟଥା ଭବତି । ୪୫ ।

---

ନିଜ ଓ ପରର ଅନିଷ୍ଟକାରୀ ସକାମ ଧର୍ମଦ୍ୱାରା ନିଜର ଓ ପରର କି ମଙ୍ଗଳ ସାଧିତ ହୁଏ କେତେ ବା ସ୍ୱାର୍ଥ ସିଦ୍ଧି ହୁଏ ? ନିଜ ଅପକାର ହେତୁ କ୍ରୋଧ ଜନ୍ମେ, ପରପୀଡ଼ନ ଦ୍ୱାରା ପାପ-ଜନ୍ମେ ଏବଂ ନିଜର କ୍ରୋଧରୁ ଅନ୍ୟର ମଧ୍ୟ କ୍ରୋଧ ଜନ୍ମେ । ୪୨ ।

ହେ ପ୍ରଭୁ ! ଯେଉଁ ସାଧୁପୁରୁଷଗଣ ସ୍ଥାବର ଜଙ୍ଗମାଦି ସର୍ବପ୍ରାଣୀଙ୍କ ପ୍ରତି ସମବୁଦ୍ଧି ସମ୍ପନ୍ନ ସେମାନେ ଯେଉଁ ଭାଗବତଧର୍ମ ଅନୁଶୀଳନ କରନ୍ତି ସେହି ଧର୍ମ ତୁମ୍ଭେ ଯେଉଁ ଦୃଷ୍ଟି ବଳରେ କୀର୍ତ୍ତନ କରିଅଛ, ତୁମ୍ଭର ସେହି ଦୃଷ୍ଟି କଦାପି ପରମାର୍ଥ ବିରୁଦ୍ଧ ହୋଇ ନ ପାରେ । ୪୩ ।

ହେ ଭଗବନ୍, ତୁମ୍ଭର ଦର୍ଶନରେ ଲୋକର ଅଖିଳ ପାପ ବିନଷ୍ଟ ହେବ ଏହା ଅସମ୍ଭବ ନୁହେଁ, କାରଣ ତୁମ୍ଭର ନାମ ଥରେ ମାତ୍ର ଶ୍ରବଣ କରି ଚଣ୍ଡାଳ ସୁଦ୍ଧା ସଂସାରରୁ ମୁକ୍ତି ଲାଭ କରେ । ୪୪ ।

ହେ ଭଗବନ୍ ! ଦେବର୍ଷି ନାରଦ ତୁମ୍ଭର ଅତ୍ୟନ୍ତ ଆତ୍ମୀୟ, ସେ ମୋତେ ଯାହା କହିଛନ୍ତି ତାହାକି ଅନ୍ୟଥା ହୋଇପାରେ ? ସୁତରାଂ ବର୍ତ୍ତମାନ ତୁମ୍ଭ ସାକ୍ଷାତ୍ ଲାଭକରି ମୋର ଅନ୍ତରର ମଳିନତା ଦୂର ହୋଇଅଛି । ୪୫ ।

---

କି ବା କୁଶଳ ସେ ଲଭନ୍ତି
ସ୍ୱଦେହେ ପରେ ଯେ ପୀଡ଼ନ୍ତି
ସ୍ୱଦ୍ରୋହେ ଆତ୍ମ ପୀଡ଼ା ପୁଣ
ପର ପୀଡ଼ନେ ଅଧରମ । ୪୨
ବିହିତ ଧର୍ମ ଭାଗବତ
ନଷ୍ଟହେ କେବେ ପରମାର୍ଥ
ସ୍ଥାବର ଚର ଜୀବଙ୍କରେ
ଅଭିନ୍ନଭାବ ଯେହୁ କରେ

ସେ ନିତ୍ୟେ ପାଦପଦ୍ମେ ତୋର
ସେବା କରଇ ନିରନ୍ତର
ପାଷାଣ୍ଡ ବୁଦ୍ଧି ଯେଉଁ ନର
ଏ ପାଦ ଦୁର୍ଲ୍ଲଭ ତାହାର
ଯେ ପାଦ ପଲ୍ଲବ ସୁଧାମ
ପରମ ମଙ୍ଗଳ ଯେ ନାମ
ଯେ ନାମ ସୁମରଣ କରି
ପାପୀ ସଂସାରୁଯାନ୍ତି ତରି । ୪୩, ୪୪

ଏ ଅନନ୍ତରେ ଏବେ ଶୁଣ
ହେ ପ୍ରଭୁ ଅଖିଳ କାରଣ
ତୋହର ଦର୍ଶନୁ ମୋହର
ପବିତ୍ର ହୋଇଲା ଶରୀର
ନାରଦ ବଚନର ଫଳେ
ତୋତେ ଦେଖିଲି ଚର୍ମ୍ମ ଡୋଳେ । ୪୫

ଯଦେତମନନ୍ତ ସମସ୍ତଂ ତବ ଜଗଦାତ୍ମନୋ ଜନୈରହାଚରିତମ୍ ।
ବିଜ୍ଞାପ୍ୟଂ ପରମଗୁରୋଃ କିୟଦିବ ସବିତୁରିବ ଖଦ୍ୟୋତୈଃ । ୪୬ ।
ନମସ୍ତୁଭ୍ୟଂ ଭଗବତେ ସକଳଜଗତ୍ ସ୍ଥିତିଲୟୋଦୟେଶାୟ ।
ଦୁରବସିତାତ୍ମଗତୟେ କୁଯୋଗିନାଂ ଭିଦା ପରମହଂସାୟ । ୪୭ ।
ଯଂ ବୈ ଶ୍ୱସନ୍ତମନୁ ବିଶ୍ୱସୃଜଃ ଶ୍ୱସନ୍ତି ଯଂ ଚେକିତାନମନୁ ଚିତ୍ତୟଉଚକନ୍ତି ।
ଭୂମଣ୍ଡଳଂ ସର୍ଷପାୟିତ ଯସ୍ୟ ମୂର୍ଦ୍ଧ୍ନି ତସ୍ମୈ ନମୋ ଭଗବତେଽସ୍ତୁ ସହସ୍ରମୂର୍ଦ୍ଧ୍ନେ । ୪୮ ।

ଶ୍ରୀଶୁକ ଉବାଚ ।

ସଂସ୍ତୁତୋ ଭଗବାନେବମନନ୍ତସ୍ତମଭାଷତ ।
ବିଦ୍ୟାଧରପତିଂ ପ୍ରୀତଶ୍ଚିତ୍ରକେତୁଂ କୁରୂଦ୍ୱହ । ୪୯ ।

---

ହେ ଅନନ୍ତ ଦେବ ! ତୁମ୍ଭେ ସର୍ବ ଅନ୍ତର୍ଯ୍ୟାମୀ, ଏ ସଂସାରରେ ଲୋକ ଯାହା ଆଚରଣ କରେ ସେ ସମସ୍ତ ତୁମ୍ଭଙ୍କୁ ବିଦିତ । ସୂର୍ଯ୍ୟଙ୍କ ନିକଟରେ ଯେପରି ଖଦ୍ୟୋତ (ଜୁଳୁଜୁଳିଆ ପୋକ) ର ତେଜ ନ ଥାଏ ସେହିପରି ଜଗତ୍ ପୂଜ୍ୟ ତୁମ୍ଭ ନିକଟରେ ମୋର ପ୍ରକାଶ ଯୋଗ୍ୟ କିଛି ନାହିଁ । ୪୬ ।

ତୁମ୍ଭେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ପ୍ରଭୃତି ତ୍ରିଲୋକର ସୃଷ୍ଟି ସ୍ଥିତି ଓ ପ୍ରଳୟ କର୍ତ୍ତା । କୁଯୋଗିମାନେ ଅର୍ଥାତ୍ ସକାମ କାମ ପରାୟଣ ବ୍ୟକ୍ତିମାନେ ଭେଦ ବୁଦ୍ଧି ହେତୁରୁ ତୁମ୍ଭର ତତ୍ତ୍ୱ କିଛିମାତ୍ର ବୁଝିନ୍ତି ନାହିଁ । ତୁମ୍ଭେ ପରମହଂସ ରୂପେ ଭଗବାନ୍, ତୁମ୍ଭଙ୍କୁ ମୋର ନମସ୍କାର । ୪୭ ।

ଯେ କର୍ମ କରନ୍ତ ହେଲେ ବିଶ୍ୱବିଧାତାଗଣ କର୍ମ କରିବାକୁ ସମର୍ଥ ହୁଅନ୍ତି । ଯେ ଦର୍ଶନ କଲେ ଜ୍ଞାନେନ୍ଦ୍ରିୟମାନେ ଆପଣା ଆପଣା ବିଷୟ ଗ୍ରହଣ କରିବାକୁ ସମର୍ଥ ହୁଅନ୍ତି, ଭୂମଣ୍ଡଳ ଯାହାଙ୍କ ମସ୍ତକରେ ସର୍ଷତୁଲ୍ୟ କ୍ଷୁଦ୍ର ବୋଲି ପ୍ରତୀୟମାନ ହୁଏ, ତୁମ୍ଭେ ସେହି ସହସ୍ରଶୀର୍ଷା ପୁରୁଷ ଭଗବାନ ତୁମ୍ଭଙ୍କୁ ମୋର ନମସ୍କାର । ୪୮ ।

ଶ୍ରୀଶୁକଦେବ କହିଲେ :—

ହେ କୁରୁକୁଳ ଶ୍ରେଷ୍ଠ ଭଗବାନ୍ ସଙ୍କର୍ଷଣ ଦେବଙ୍କୁ ଏହିପରି ସ୍ତୁତିବାକ୍ୟଦ୍ୱାରା ଚିତ୍ରକେତୁ ପ୍ରୀତ କରନ୍ତେ ସେ ବିଦ୍ୟା ଧରାଧିପତି ଚିତ୍ରକେତୁଙ୍କୁ ଏହିପରି କହିଲେ । ୪୯ ।

---

ଜଗତ ଆତ୍ମା ଯେ ଅନନ୍ତ
ସକଳ ଜାଣୁ ତୁ ତଦନ୍ତ
ଏ ଘୋର ସଂସାରରେ ଜନ
କେ ତୋତେ ଜାଣୁ ଭଗବାନ
ତୁମ୍ଭେ ଆଦିତ୍ୟ ଦେବ ପ୍ରାୟେ
ନରହି ଖଦ୍ୟୋତର ପ୍ରାୟେ ।୪୬।
ଜଗତ ଉତ୍ପତ୍ତି ପାଳନ
ପ୍ରଳୟ ହେତୁ ନାରାୟଣ

ପରମହଂସ ରୂପ ତୁହି
ନମସ୍ତେ ପ୍ରଭୁ ଭବଗ୍ରାହୀ ।୪୭।
ଯାର ଶ୍ୱାସକୁ ଅନୁସରି
କର୍ମ କ୍ଷମ ହୋଏ ବିସୃଷ୍ଟି
ପ୍ରାଣି ସମୂହ ଆଦିକରି
ଅବନୀ ଯେହ୍ନେ ଅଛି ଧରି
ସହସ୍ର ମସ୍ତକ ଯାହାର
ନମସ୍ତେ ବ୍ରହ୍ମାଣ୍ଡ ଠାକୁର । ୪୮।

ଶ୍ରୀ ଶୁକ ଉବାଚ ।
ଏମନ୍ତ ସ୍ତୁତି ତାର ଶୁଣି
ଅନନ୍ତ ପ୍ରଭୁ ହଳପାଣି
ସେ ଚିତ୍ରକେତୁ ବିଦ୍ୟାଧର
ତାହାଙ୍କୁ ବୋଲନ୍ତି ଉତ୍ତର ।୪୯।

ଶ୍ରୀଭଗବାନୁବାଚ । ଯନ୍ନାରଦାଙ୍ଗିରୋଭ୍ୟାଂ ତେ ବ୍ୟାହୃତଂ ମେଽନୁଶାସନମ୍ ।
ସଂସିଦ୍ଧୋଽସି ତୟା ରାଜନ୍ ବିଦ୍ୟୟା ଦର୍ଶନାଚ୍ଚ ମେ । ୫୦ ।
ଅହଂ ବୈ ସର୍ବଭୂତାନି ଭୂତାତ୍ମା ଭୂତଭାବନଃ ।
ଶବ୍ଦବ୍ରହ୍ମ ପରଂ ବ୍ରହ୍ମ ମମୋଭେ ଶାଶ୍ୱତୀ ତନୂ । ୫୧ ।
ଲୋକେ ବିତତମାତ୍ମାନଂ ଲୋକଞ୍ଚାତ୍ମନି ସନ୍ତତମ୍ ।
ଉଭୟଞ୍ଚ ମୟା ବ୍ୟାପ୍ତଂ ମୟି ଚୈବୋଭୟଂ କୃତମ୍ । ୫୨ ।
ଯଥା ସୁଷୁପ୍ତଃ ପୁରୁଷୋ ବିଶ୍ୱଂ ପଶ୍ୟତି ଚାତ୍ମନି ।
ଆତ୍ମାନମେକଦେଶସ୍ଥଂ ମନ୍ୟତେ ସ୍ୱପ୍ନ ଉତ୍ଥିତଃ । ୫୩ ।
ଏବଂ ଜାଗରଣାଦୀନି ଜୀବସ୍ଥାନାନି ଚାତ୍ମନଃ ।
ମାୟାମାତ୍ରାଣି ବିଜ୍ଞାୟ ତଦ୍ଦ୍ରଷ୍ଟାରଂ ପରଂ ସ୍ମରେତ୍ । ୫୪ ।

---

ଶ୍ରୀଭଗବାନ କହିଲେ :—ହେ ରାଜନ୍ ! ନାରଦ ଓ ଅଙ୍ଗିରା ତୁମ୍ଭଙ୍କୁ ମୋ ବିଷୟରେ ଯେଉଁ ଉପଦେଶ ଦେଇ ଅଛନ୍ତି, ସେହି ଉପଦେଶ ଓ ନାରଦଙ୍କ ପ୍ରଦତ୍ତ ମନ୍ତ୍ରଦ୍ୱାରା ତୁମ୍ଭେ ମୋର ଦର୍ଶନ ଲାଭକରି ସମ୍ୟକ୍ ପ୍ରକାରରେ ସିଦ୍ଧିଲାଭ କରିଅଛ । ୫୦ ।

ମୁଁ ସର୍ବଭୂତର ଅନ୍ତର୍ଯ୍ୟାମୀ ଓ କାରଣସ୍ୱରୂପ ଏବଂ ସମସ୍ତବିଶ୍ୱ ମୋର ପ୍ରକାଶ ସ୍ୱରୂପ, ବେଦ ଓ ପରମବ୍ରହ୍ମ ଏ ଉଭୟେ ମୋର ନିତ୍ୟ ସତ୍ୟ ମୂର୍ତ୍ତିର ବିକାଶ । ୫୧ ।

ଏହି ବିଶ୍ୱ-ପ୍ରପଞ୍ଚରେ ଜୀବ ଭୋକ୍ତାରୂପେ ଏବଂ ଜୀବଠାରେ ବିଶ୍ୱପ୍ରପଞ୍ଚ ଭୋଗ୍ୟରୂପେ ସମ୍ବଦ୍ଧ । ସେହି ଜୀବ ଓ ବିଶ୍ୱ ପ୍ରପଞ୍ଚ ମୋ ଦ୍ୱାରା ଅଧିଷ୍ଠିତ ଓ ଏ ଉଭୟ ମୋର କାର୍ଯ୍ୟରୂପେ କଳ୍ପିତ, ତୁମ୍ଭେ ଏହାହିଁ ଚିନ୍ତା କରିବ । ୫୨ ।

ଲୋକ ସ୍ୱପ୍ନାବସ୍ଥାରେ ଯେ ସୁନିଦ୍ରିତ ଅଛି ଏହା ଜାଣି ସୁଦ୍ଧା ପର୍ବତ, ବନ, ନାନାପ୍ରକାର ଦୂରସ୍ଥ ବସ୍ତୁ ନିଜ ପାଖରେ ଦେଖେ ଏବଂ ପୁଣି ସେ ଜାଗ୍ରତ ହୋଇଅଛି ଭାବି ନିଜକୁ ଶଯ୍ୟାଶାୟୀ ବୋଲି ଅନୁଭବ କରେ, ସେହିପରି ଜୀବ ଉପାଧିସ୍ୱରୂପ ବୁଦ୍ଧିହେତୁ କେତେବେଳେ ଆପଣାକୁ ଜାଗ୍ରତ କେତେବେଳେ ସୁପ୍ତ ଏବଂ କେତେବେଳେ ସ୍ୱପ୍ନଗ୍ରସ୍ତ ଜାଣିଥାଏ । କେତେବେଳେ ଏହା ଭଗବତ୍ ମାୟା ବୋଲି ଜ୍ଞାନକରେ, ମାତ୍ର ମୁଁ ସେହି ବିଶେଷ ବିଶେଷ ଅବସ୍ଥାର ଅତୀତ, କେବଳ ତହିଁର ସାକ୍ଷିସ୍ୱରୂପ । ୫୩,୫୪ ।

---

ଶ୍ରୀ ଭଗବାନୁବାଚ ।

ଶୁଣ ରାଜନ ପୁଣ୍ୟ ଦେହ
ମୋର ଭଗତ ଅନୁଗ୍ରହ
ନାରଦ ଅଙ୍ଗିରା ତୋହରେ
କହିଲେ ଯେଉଁ ବିଦ୍ୟାସାରେ
ତେଣୁ ସିଦ୍ଧ ହୋଇ ରାଜନ
ପାଇଲୁ ମୋର ଦରଶନ ।୫୦।

ମୁଁ ସର୍ବ ପ୍ରାଣିରେ ଅଶେଷ
ଆତ୍ମା ରୂପରେ ମୋର ବାସ
ପରମବ୍ରହ୍ମ ଯାକୁ କହି
ସେ ମୋର ଶରୀର ଅଟଇ ।୫୧।
ଯେ ଆତ୍ମା ବ୍ୟାପ୍ତ ଲୋକଠାରେ
ଲୋକ ବ୍ୟାପିତ ଯେ ଆତ୍ମାରେ
ଉଭୟେ ବ୍ୟାପି ହୋଇ ମୁହିଁ
ଏସାରେ ଅଛି ଦେହ ବହି ।୫୨।

ଯେସନେ ନିଦ୍ରା ପାଇ ନରେ
ବିଶ୍ୱକୁ ଦେଖନ୍ତି ଆତ୍ମାରେ
ନିଦ୍ରା ଉପେକ୍ଷି ପୁଣି ସେହି
ଏକଦେଶେ ଆତ୍ମା ଦେଖଇ
ଉଠେଣ ଜ୍ଞାନ ପାଇ ଯେହ୍ନେ
ସକଳ ମିଥ୍ୟା କରି ମାନେ
ଯେଉଁ ପୁରୁଷ ତା ଦେଖଇ
ତାହାକୁ ଚିନ୍ତ ମନଦେଇ ।୫୩,୫୪

ଯେନ ପ୍ରସୁପ୍ତଃ ପୁରୁଷଃ ସ୍ୱାପଂ ବେଦାତ୍ମନସ୍ତଦା ।
ସୁଖଞ୍ଚ ନିର୍ଗୁଣଂ ବ୍ରହ୍ମ ତମାତ୍ମାନମବେହି ମାମ୍ । ୫୫ ।
ଉଭୟଂ ସ୍ମରତଃ ପୁଂସଃ ପ୍ରସ୍ୱାପପ୍ରତିବୋଧୟୋଃ ।
ଅନ୍ୱେତି ବ୍ୟତିରିଚ୍ୟେତ ତଜ୍ଜ୍ଞାନଂ ବ୍ରହ୍ମ ତତ୍ପରମ୍ । ୫୬ ।
ଯଦେତଦ୍‌ବିସ୍ମୃତଂ ପୁଂସୋ ମଦ୍‌ଭାବଂ ଭିନ୍ନମାତ୍ମନଃ ।
ତତଃ ସଂସାର ଏତସ୍ୟ ଦେହାଦ୍‌ଦେହୋମୃତେର୍ମୃତିଃ । ୫୭ ।
ଲବ୍‌ଧ୍ୱେହ ମାନୁଷୀଂ ଯୋନିଂ ଜ୍ଞାନବିଜ୍ଞାନସମ୍ଭବାମ୍ ।
ଆତ୍ମାନଂ ଯୋ ନ ବୁଧ୍ୟେତ ନ କ୍ୱଚିତ୍ କ୍ଷେମମାପ୍ନୁୟାତ୍ । ୫୮ ।
ସ୍ମୃତ୍ୱେହାୟାଂ ପରିକ୍ଲେଶଂ ତତଃ ଫଳବିପର୍ଯ୍ୟୟମ୍ ।
ଅଭୟଞ୍ଚାପ୍ୟନୀହାୟାଂ ସଙ୍କଳ୍ପାଦ୍‌ବିରମେତ୍ କବିଃ ।୫୯।

---

ଲୋକ ସୁପ୍ତ ଅବସ୍ଥାରେ ଯେଉଁ ଆତ୍ମା ଦ୍ୱାରା ନିଜର ନିଦ୍ରା ଏବଂ ଅତୀନ୍ଦ୍ରିୟ ସୁଖ ଅନୁଭବ କରେ ମୁଁ ସେହି ଆତ୍ମା ସ୍ୱରୂପ ବୋଲି ଜାଣ । ୫୫ ।

ନିଦ୍ରା ଏବଂ ଜାଗରଣ ଏହି ଉଭୟ ଅବସ୍ଥା ଅନୁସନ୍ଧାନ କଲେ ତହିଁର ଯେ ଜ୍ଞାନ ପ୍ରକାଶକରୂପେ ଥାଏ ଏବଂ ସେ ଉଭୟ ଅବସ୍ଥାଠାରୁ ଯେଉଁ ପୃଥକ୍ ବସ୍ତୁ ଅଛି ବୋଲି ଜ୍ଞାନ, ସେହି ଜ୍ଞାନହିଁ ପରମବ୍ରହ୍ମ ।୫୬

ଜୀବ ଯଦି ଅନାଦି ଅବିଦ୍ୟା ବଶରେ ସେହି ପରମବ୍ରହ୍ମଙ୍କୁ ବିସ୍ମୃତ ହୋଇ ନିଜଠାରୁ ଭିନ୍ନ ବୋଲି ଦେଖେ ତାହା ହେଲେ ତାହାର ପୁନଃ ପୁନଃ ଜନ୍ମ ମୃତ୍ୟୁ ଘଟିଥାଏ । ୫୭ ।

ମନୁଷ୍ୟ ଜନ୍ମରେ ଶାସ୍ତ୍ର ଜନିତ ଜ୍ଞାନ ଅପରୋକ୍ଷଜ୍ଞାନ ଉଭୟ ସମ୍ଭବ । ଏ ସଂସାରରେ ଯେଉଁ ବ୍ୟକ୍ତି ସେହି ମନୁଷ୍ୟ ଜନ୍ମଲାଭ କରି ମଧ୍ୟ ଆତ୍ମତତ୍ତ୍ୱ ବୁଝି ନ ପାରେ ସେ କଦାପି ମଙ୍ଗଳ ଲାଭ କରି ନ ପାରେ । ୫୮ ।

ପ୍ରବୃତ୍ତିମାର୍ଗରେ ଯେପରି କ୍ଳେଶ ଏବଂ କ୍ଳେଶକର ମଧ୍ୟ ଯେପରି ଫଳ ବୈଷମ୍ୟ ଘଟେ ତାହା ଚିନ୍ତାକରି ବିଜ୍ଞବ୍ୟକ୍ତି ପକ୍ଷରେ ସକାମକର୍ମରୁ ନିବୃତ୍ତ ହେବା ଉଚିତ । ୫୯ ।

---

ଯାହାର ବଳେ ସୁପ୍ତ ହୋଇ
ସୁଖ ବା ସ୍ୱପନ ଜାଣଇ
ସେ ଆତ୍ମା ନିର୍ଗୁଣ ଯେ ବ୍ରହ୍ମ
ସେହିଟି ମୁହିଁ ବୋଲି ଜାଣ ।୫୫।
ନିଦ୍ରାରେ ଜାଗ୍ରତରେ ପୁଣ
ଉଭୟେ ଯା ତହୁଁ ସ୍ମରଣ
ଏ ମୋର ଭିନ୍ନ ସବୁ ଭୁଇ
ମୋ ବିନୁ ଅନ୍ୟ କେହି ନାହିଁ ।୫୬

ଯେଣୁ ମୋ ସବୁ ପ୍ରାଣିମାନେ
ଭ୍ରାନ୍ତି ଭିନ୍ନ କରି ମନେ
ଏଣୁ ଏ ଅଖିଳ ସଂସାରେ
ମୃତ୍ୟୁ ଜନ୍ମ ଲଭନ୍ତି ନରେ ।୫୭।
ମନୁଷ୍ୟ ଜନ୍ମ ଅର୍ଜେ କରି
ଜ୍ଞାନ ବିଜ୍ଞାନେ ଦେହ ଧରି
ଆତ୍ମାକୁ ନ ଜାଣେ ଯେ ନର
କେବେହେଁ ସୁଖ ନାହିଁ ତାର ।୫୮

ଚେଷ୍ଟା କରଇ କାର୍ଯ୍ୟ ପାଇଁ
ନାନା କ୍ଳେଶକୁ ଲଭେ ତହିଁ
ସଂକଳ୍ପ ଛାଡ଼ି ଯେ ଭଜଇ
ମୋକ୍ଷର ଫଳକୁ ଲଭଇ ।୫୯।

ସୁଖାୟ ଦୁଃଖମୋକ୍ଷାୟ କୁର୍ବାତେ ଦମ୍ପତୀ କ୍ରିୟାଃ ।
ତତୋ ନିବୃତ୍ତିରପ୍ରାପ୍ତିର୍ଦୁଃଖସ୍ୟ ଚ ସୁଖସ୍ୟ ଚ । ୬୦ ।
ଏବଂ ବିପର୍ଯ୍ୟୟଂ ବୁଦ୍ଧ୍ୱା ନୃଣାଂ ବିଜ୍ଞାଭିମାନିନାମ୍ ।
ଆତ୍ମନଶ୍ଚ ଗତିଂ ସୂକ୍ଷ୍ମାଂ ସ୍ଥାନତ୍ରୟବିଲକ୍ଷଣାମ୍ । ୬୧ ।
ଦୃଷ୍ଟଶ୍ରୁତାଭିର୍ମାତ୍ରାଭିର୍ନିର୍ମ୍ମୁକ୍ତଃ ସ୍ୱେନ ତେଜସା ।
ଜ୍ଞାନବିଜ୍ଞାନସଂତୃପ୍ତୋ ମଦ୍‌ଭକ୍ତଃ ପୁରୁଷୋ ଭବେତ୍ । ୬୨ ।
ଏତାବାନେବ ମନୁଜୈର୍ଯୋଗନୈପୁଣ୍ୟବୁଦ୍ଧିଭିଃ ।
ସ୍ୱାର୍ଥଃ ସର୍ବାତ୍ମନା ଜ୍ଞେୟୋ ଯତ୍‌ପରାତ୍ମୈକଦର୍ଶନମ୍ । ୬୩ ।
ତ୍ୱମେତଚ୍ଛ୍ରଦ୍ଧୟା ରାଜନ୍ନପ୍ରମତ୍ତୋ ବଚୋ ମମ ।
ଜ୍ଞାନବିଜ୍ଞାନସମ୍ପନ୍ନୋ ଧାରୟନ୍ନାଶୁ ସିଧ୍ୟସି । ୬୪ ।

---

ସୁଖପାଇଁ ଏବଂ ଦୁଃଖ ନିବୃତ୍ତିପାଇଁ ସ୍ୱାମୀ ଓ ସ୍ତ୍ରୀ ଅନେକପ୍ରକାର କର୍ମାନୁଷ୍ଠାନ କରିଥାନ୍ତି, କିନ୍ତୁ ତହିଁରେ ଦୁଃଖ ନିବୃତ୍ତି ହୁଏ ନାହିଁ, କି ସୁଖଲାଭ ହୁଏ ନାହିଁ । ୬୦ ।

ଜ୍ଞାନ ଓ ବିଜ୍ଞାନଦ୍ୱାରା ନିର୍ମଳଚିତ୍ତ ବ୍ୟକ୍ତି ଓ ବିଦ୍ୟାଭିମାନିବ୍ୟକ୍ତିମାନଙ୍କର ଏହିପରି ଫଳ ବିପର୍ଯ୍ୟୟ ଏବଂ ଆତ୍ମାର ସୂକ୍ଷ୍ମ ତ୍ରିସ୍ଥାନଗତ ଅବଗତ ହୋଇ ନିଜର ବିବେକବଳରେ ଐହିକ ଓ ପାରତ୍ରିକ ବିଷୟାସକ୍ତି ଶୂନ୍ୟ ହୋଇ ମୋର ଭକ୍ତ ହେବେ । ୬୧,୬୨ ।

ଜୀବାତ୍ମା ଓ ପରମାତ୍ମାର ଯେଉଁ ଐକ୍ୟଜ୍ଞାନ ତାହାହିଁ ପରମପୁରୁଷାର୍ଥ ବୋଲି ଯୋଗନିପୁଣ ବ୍ୟକ୍ତିମାନେ ସର୍ବାନ୍ତଃକରଣରେ ଅବଗତ ହେବା ଉଚିତ । ୬୩ ।

ହେ ରାଜନ୍ ! ତୁମ୍ଭେ ମନେ ନିବେଶ କରି ଶ୍ରଦ୍ଧା ସହକାରେ ମୋହର ଏହି ବାକ୍ୟ ସ୍ମରଣ କଲେ ଜ୍ଞାନ ବିଜ୍ଞାନ ସମ୍ପନ୍ନ ହୋଇ ସିଦ୍ଧିଲାଭ କରିବ । ୬୪ ।

---

ଦୁଃଖରୁ ମୋକ୍ଷ, ସୁଖ ପାଇଁ
ଦମ୍ପତି କର୍ମ୍ମ ଆଚରଇ
ସୁଖ-ଦୁଃଖର ଭୋଗ ତହିଁ
କେବେ ଲଭଇ ନ ଲଭଇ
ଏମନ୍ତ ବିସ୍ତର ଯେ ଜାଣି
କରମ କରଇ ଯେ ପ୍ରାଣୀ

ସୂକ୍ଷ୍ମ ଆତ୍ମାଗତ ତାଠାରେ
ବିମୁକ୍ତ ହୋଇ ସେ ସଂସାରେ
ଜ୍ଞାନ ସମ୍ପନ୍ନ ହୋଇ ନର
ଭକ୍ତିକି ଲଭଇ ମୋହର ।୬୦-୬୨
ପ୍ରାଣୀର ଧର୍ମ୍ମପର ଏହି
ସମଦରଶୀ ଯେବେ ହୋଇ

ଶ୍ରଦ୍ଧାରେ ଯେବେ ତୁ ରାଜନ
ଘେନିବୁ ମୋହର ବଚନ
ଜ୍ଞାନ ସମ୍ପନ୍ନ ହୋଇ ତୁହି
ସିଦ୍ଧ ହୋଇବୁ ବେଗ ହୋଇ
। ୬୩,୬୪

ଶ୍ରୀଶୁକ ଉବାଚ ।
ଆଶ୍ୱାସ୍ୟ ଭଗବାନିତ୍ଥଂ ଚିତ୍ରକେତୁଂ ଜଗଦ୍‌ଗୁରୁଃ ।
ପଶ୍ୟତସ୍ତସ୍ୟ ବିଶ୍ୱାତ୍ମା ତତଶ୍ଚାନ୍ତର୍ଦ୍ଧଧେ ହରିଃ । ୬୫ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଚିତ୍ରକେତୂପାଖ୍ୟାନଂ ନାମ ଷୋଡ଼ଶୋଽଧ୍ୟାୟଃ । ୧୬ ।

---

ଶ୍ରୀଶୁକଦେବ କହିଲେ :—

ସର୍ବାନ୍ତର୍ଯାମୀ ଜଗଦ୍‌ଗୁରୁ ପୂଜ୍ୟ ଭଗବାନ୍ ସଂକର୍ଷଣ ଦେବ ରାଜା ଚିତ୍ରକେତୁଙ୍କୁ ଏପରି ଆଶ୍ୱାସନ ବାକ୍ୟ ଶୁଣାଇ ଦେଖୁ ଦେଖୁ ଅନ୍ତର୍ହିତ ହୋଇଗଲେ । ୬୫ ।

---

| | | |
|---|---|---|
| ଚିତ୍ରକେତୁଙ୍କୁ ଆଶ୍ୱାସିଣ | ଦେଖୁ ଯେ ଥିଲ ସେ ରାଜନ | ବୋଲଇବିପ୍ର ଜଗନ୍ନାଥ |
| ଜଗତ ଗୁରୁ ଭଗବାନ | ପ୍ରଭୁ ହୋଇଲେ ଅନ୍ତର୍ଦ୍ଧାନ ।୬୫। | ଚିତ୍ରକେତୁ ରାଜା ଚରିତ । |



ବିଶଦାର୍ଥ :—

ସେହି ମୃତ ପୁତ୍ରର ଜୀବାତ୍ମା ଚିତ୍ରକେତୁଙ୍କୁ ଶୁଣାଇ ଶୁଣାଇ ଆତ୍ମତତ୍ତ୍ୱ ଉପଦେଶ ପ୍ରଦାନ କରିଥିଲା । ତଦନ୍ତର ରାଜା ଚିତ୍ରକେତୁ ନାରଦଙ୍କଠାରୁ ଭଗବଦ୍‌ମନ୍ତ୍ର ଧାରଣକରି ଭଗବଦ୍ ଭକ୍ତିପରାୟଣ ହୋଇଥିଲେ । ସେହି ବିଦ୍ୟା ବଳରେ, ସେ ଭଗବାନଙ୍କୁ ଦର୍ଶନ କରିବାକୁ ସମର୍ଥ ହେଲେ । ଏହି ଉପାଖ୍ୟାନରୁ ବୁଝାଯାଏ ଜ୍ଞାନ ଓ ଭକ୍ତି ପ୍ରଭୃତି ଯେଉଁ ଗୁଣ ଗୌରବରେ ସାଧକ ସିଦ୍ଧି ପ୍ରାପ୍ତ ହୋଇଥାଏ, ରାଜା ଚିତ୍ରକେତୁ ସେ ସମସ୍ତ ଲାଭ କରିଥିଲେ । ମାତ୍ର କରୁଣାମୟ ଭଗବାନ୍ ସଙ୍କର୍ଷଣ ତାହା ଆହୁରି ଦୃଢ଼ିଭୂତ କରିବା ନିମିତ୍ତ ତାହାଙ୍କୁ ଅତି ପ୍ରାଞ୍ଜଳ ଭାବରେ, ସେହି ଆତ୍ମତତ୍ତ୍ୱ ବୁଝାଇ ଥିଲେ ।

## ସ ପ୍ତ ଦ ଶ ଅ ଧ୍ୟା ୟ ।

ତତଃ ସପ୍ତଦଶେଽମୋଘ-ମହର୍ଦ୍ଧିଂ ପ୍ରାପ୍ୟ ଖେ ଭ୍ରମନ୍ ।
ହସନ୍ ଗିରିଶଂ ଶାପାଦୁମାୟା ବୃତ୍ରତାଂ ଗତଃ । ୦ ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକ ଉବାଚ ।

ଯତଶ୍ଚାନ୍ତର୍ହିତୋଽନନ୍ତ ସ୍ତସ୍ୟୈ କୃତ୍ୱାଦଶେ ନମଃ ।
ବିଦ୍ୟାଧରଶ୍ଚିତ୍ରକେତୁଶ୍ଚଚାର ଗଗନେଚରଃ । ୧ ।
ସ ଲକ୍ଷଂ ବର୍ଷଲକ୍ଷାଣାମବ୍ୟାହତବଲେନ୍ଦ୍ରିୟଃ ।
ସ୍ତୂୟମାନୋ ମହାଯୋଗୀ ମୁନିଭିଃ ସିଦ୍ଧଚାରଣୈଃ । ୨ ।
କୁଳାଚଳେନ୍ଦ୍ରଦ୍ରୋଣୀଷୁ ନାନାସଂକଳ୍ପସିଦ୍ଧିଷୁ ।
ରେମେ ବିଦ୍ୟାଧରସ୍ତ୍ରୀଭିର୍ଗାପୟନ୍ ହରିମୀଶ୍ୱରମ୍ । ୩ ।

---

### ପାର୍ବତୀଙ୍କ ଅଭିଶାପରେ ଚିତ୍ରକେତୁଙ୍କର ବୃତ୍ରାସୁରରୂପରେ ଜନ୍ମ ।

ସପ୍ତଦଶ ଅଧ୍ୟାୟରେ ରାଜା ଚିତ୍ରକେତୁ ଅତିଶୟ ବିଭୂତି ପାଇ ଗର୍ବରେ ମହାଦେବଙ୍କୁ
ପରିହାସ କରନ୍ତେ ପାର୍ବତୀଙ୍କର ଅଭିଶାପରେ ଅସୁର ଜନ୍ମପାଇବା
ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ଭଗବାନ୍ ସଙ୍କର୍ଷଣ ଦେବ ଯେଉଁ ଦିଗକୁ ଅନ୍ତର୍ହିତ ହେଲେ ବିଦ୍ୟାଧରାଧିପତି ଚିତ୍ରକେତୁ ସେହି ଦିଗକୁ ନମସ୍କାରକରି ଗଗନଚର ହୋଇ ପରିଭ୍ରମଣ କରିବାକୁ ଲାଗିଲେ । ୧ ।

ରାଜା ଚିତ୍ରକେତୁଙ୍କର ଶାରୀରିକବଳ ଓ ଇନ୍ଦ୍ରିୟ ଶକ୍ତି ଅବ୍ୟାହତ ଥିଲା ଏବଂ ସେ ଯୋଗସାଧନାରେ ଅତ୍ୟନ୍ତ ନିପୁଣ ଥିଲେ, ତେଣୁ ସିଦ୍ଧ, ଚାରଣ, ମୁନିଗଣ ସର୍ବଦା ତାହାଙ୍କର ସ୍ତବ କରୁଥିଲେ । ଏହିପରି ଭାବରେ ସେ ଲକ୍ଷ ଲକ୍ଷ ବର୍ଷ ପର୍ଯ୍ୟନ୍ତ କୁଳାଚଳ ଶ୍ରେଷ୍ଠ ସୁମେରୁର ଗହ୍ୱରମାନଙ୍କରେ ବିଦ୍ୟାଧର ରମଣୀମାନଙ୍କୁ ଶ୍ରୀହରି ଗୁଣକୀର୍ତ୍ତନ ଶିକ୍ଷା ଦେଇ ଆନନ୍ଦଲାଭ କରୁଥିଲେ । ୨,୩ ।

---

ସେ ଚିତ୍ରକେତୁ ସପ୍ତଦଶେ,ବିଭୂତି ପାଇ ଗର୍ବବଶେ । ଯହୁଁ ମହେଶଙ୍କୁ ହସିଲା,ଉମାଙ୍କ ଶାପେ ବୃତ୍ର ହେଲା ।•

ଶ୍ରୀ ଶୁକ ଉବାଚ—

ଯେ ଦିଗେ ଅନନ୍ତ ଈଶ୍ୱର
ସେଠାରୁ ହୋଇଲେ ଅନ୍ତର
ଚିତ୍ରକେତୁ ଯେ ବିଦ୍ୟାଧର
ସେ ଦିଗେ କରି ନମସ୍କାର
ତକ୍ଷଣେ ହରଷ ହୋଇଲା
ଗଗନ ମାର୍ଗେ ଚଳିଗଲା । ୧ ।
ଲକ୍ଷେ ବରଷ ଅବ୍ୟାହତ
ବଳ ଇନ୍ଦ୍ରିୟେ ହୋଇ ଯୁତ
ସିଦ୍ଧ ଚାରଣ ମୁନି ଯେତେ
ସ୍ତୁତି କରନ୍ତି ଅବିରତେ
ମହାଯୋଗୀ ସେ ସିଦ୍ଧେଶ୍ୱର
ରହି କୁଳାଚଳ ଦ୍ରୋଣିର
ଆନନ୍ଦେ ବିଦ୍ୟାଧରୀ ସଙ୍ଗେ
କ୍ରୀଡ଼ା କରଇ ନାନାରଙ୍ଗେ
ପରମ ଈଶ୍ୱରର ନାମ
କରାଇ କରଇ ଗାୟନ । ୨,୩ ।

ଏକଦା ସ ବିମାନେନ ବିଷ୍ଣୁଦତ୍ତେନ ଭାସ୍ୱତା ।
ଗିରିଶଂ ଦଦୃଶେ ଗଚ୍ଛନ୍ ପରୀତଂ ସିଦ୍ଧଚାରଣୈଃ । ୪ ।
ଆଲିଙ୍ଗ୍ୟାଙ୍କୀକୃତାଂ ଦେବୀଂ ବାହୁନା ମୁନିସଂସଦି ।
ଉବାଚ ଦେବ୍ୟାଃ ଶୃଣ୍ୱନ୍ତ୍ୟା ଜହାସୋଚ୍ଚୈସ୍ତଦନ୍ତିକେ । ୫ ।

ଶ୍ରୀଚିତ୍ରକେତୁରୁବାଚ ।

ଏଷ ଲୋକଗୁରୁଃ ସାକ୍ଷାଦ୍ଧର୍ମଂ ବକ୍ତା ଶରୀରିଣାମ୍ ।
ଆସ୍ତେ ମୁଖ୍ୟଃ ସଭାୟାଂ ବୈ ମୈଥୁନୀଭୂୟ ଭାର୍ଯ୍ୟୟା । ୬ ।
ଜଟାଧରସ୍ତୀବ୍ରତପା ବ୍ରହ୍ମବାଦୀ ସଭାପତିଃ ।
ଅଙ୍କୀକୃତ୍ୟ ସ୍ତ୍ରୀୟଂଚାସ୍ତେ ଗତହ୍ରୀଃ ପ୍ରାକୃତୋ ଯଥା । ୭ ।

---

ତହିଁ ଚିତ୍ରକେତୁ ଭଗବତ୍ ପ୍ରଦତ୍ତ ସମୁଜ୍ଜ୍ୱଳ ରଥରେ ଉପବେଶନ କରି ଯାଉଁ ଯାଉଁ ଦେଖିଲେ ଯେ ମୁନିମାନଙ୍କ ସଭା ମଧ୍ୟରେ ମହାଦେବ ପାର୍ବତୀଙ୍କୁ କ୍ରୋଡ଼ରେ ବସାଇ ଆଲିଙ୍ଗନ କରି ରହି ଅଛନ୍ତି, ସିଦ୍ଧ ଓ ଚାରଣମାନେ ତାହାଙ୍କୁ ଚତୁର୍ଦ୍ଦିଗରେ ବେଷ୍ଟନ କରି ରହି ଅଛନ୍ତି । ଏହା ଦେଖି ଚିତ୍ରକେତୁ ସେମାନଙ୍କ ନିକଟରେ ଉପବେଶନ କରିଲେ ଏବଂ ପାର୍ବତୀ ଦେବୀଙ୍କୁ ଶୁଣାଇ ଶୁଣାଇ ଉଚ୍ଚୈଃସ୍ୱରରେ ହାସ୍ୟକରି କହିଲେ । ୪,୫ ।

ଶ୍ରୀଚିତ୍ରକେତୁ କହିଲେ :—

ଯେ ସର୍ବଜନ ପୂଜ୍ୟ ସାକ୍ଷାତ୍ ଧର୍ମୋପଦେଶକ ଏବଂ ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ସେ ସଭା ମଧ୍ୟରେ ସ୍ତ୍ରୀ ସହିତ ଆଲିଙ୍ଗନ ବଦ୍ଧ ହୋଇ ରହି ଅଛନ୍ତି । ୬ ।

ଏ ଜଟାଧାରୀ, କଠୋର ତପସ୍ୱୀ, ବ୍ରହ୍ମବାଦୀ ଏବଂ ଏ ସଭାର ସଭାପତି ଅଥଚ ସାଧାରଣ ବ୍ୟକ୍ତିପରି ସ୍ତ୍ରୀକୁ କୋଡ଼ରେ ବସାଇ ବସି ଅଛନ୍ତି । ୭ ।

---

ଏକ ସମୟେ ହେ ରାଜନ
ଆରୋହି ଅମୂଲ୍ୟ ବିମାନ
ତେଜେ ଗଞ୍ଜଇ ଦିବାକର
ବିଷ୍ଣୁ ଦେଇଛନ୍ତି ତାକୁ ବର
ଗିରିଶ ଦେଖିବାର ପାଇଁ
ଗଲା ଯେ ସିଦ୍ଧଗଣ ଲଇଁ । ୪ ।
ମୁନିଏ ଅଛନ୍ତି ପାଶରେ
ଦୁର୍ଗାଙ୍କୁ ବସାଇ କୋଳରେ
ବାହୁରେ କରି ଆଲିଙ୍ଗନ
ସଭାରେ ଅଛନ୍ତି ଈଶାନ
ତାହାଙ୍କ ନିକଟରେ ଯାଇ
ଉଚ୍ଚେ ଯେ ହସିଣ ବୋଲଇ । ୫ ।

ଶ୍ରୀ ଚିତ୍ରକେତୁରୁବାଚ—

ଧର୍ମ ବକତା ଲୋକଙ୍କର
ଜଗତ ଗୁରୁ ଏ ଶଙ୍କର
ସଭାର ମଧ୍ୟେ ସ୍ତ୍ରୀୟ ସଙ୍ଗେ
ମିଥୁନ ଭାବେ ଯେନି ରଙ୍ଗେ
ଶିରରେ ବହି ଜଟାଭାର
କେ କହୁ ତପ ଏହାଙ୍କର ?
ଜଗତ ସ୍ୱାମୀ ବ୍ରହ୍ମବାଦୀ
ଅଷ୍ଟ ଐଶ୍ୱର୍ଯ୍ୟ ଯାର ସିଦ୍ଧି
ଅଛନ୍ତି ପତ୍ନୀ ଅଙ୍କେ ଲଇଁ
ନିର୍ଲଜ-ଲୋକ ପ୍ରାୟ ହୋଇ । ୬,୭

ପ୍ରାୟଶଃ ପ୍ରାକୃତାଶ୍ଚାପି ସ୍ତ୍ରିୟଂ ରହସି ବିଭ୍ରତି ।
ଅୟଂ ମହାବ୍ରତଧରୋ ବିଭର୍ତ୍ତି ସଦସି ସ୍ତ୍ରିୟମ୍ ।୮।
ଶ୍ରୀଶୁକ ଉବାଚ ।
ଭଗବାନପି ତଚ୍ଛ୍ରୁତ୍ୱା ପ୍ରହସ୍ୟାଗାଧଧୀର୍ନୃପ ।
ତୂଷ୍ଣୀଂ ବଭୂବ ସଦସି ସଭ୍ୟାଶ୍ଚ ତଦନୁବ୍ରତାଃ ।୯।
ଇତ୍ୟତଦ୍‌ବୀର୍ଯ୍ୟବିଦୁଷି ବ୍ରୁବାଣେ ବହ୍ୱଶୋଭନମ୍ ।
ରୁଷାହ ଦେବୀ ଧୃଷ୍ଟାୟ ନିର୍ଜିତାତ୍ମାଭିମାନିନେ ।୧୦।
ଶ୍ରୀପାର୍ବତ୍ୟୁବାଚ ।
ଅୟଂ କିମଧୁନା ଲୋକେ ଶାସ୍ତା ଦଣ୍ଡଧରଃ ପ୍ରଭୁଃ ।
ଅସ୍ମଦ୍‌ବିଧାନାଂ ଦୁଷ୍ଟାନାଂ ନିର୍ଲଜ୍ଜାନାଞ୍ଚ ବିପ୍ରକୃତ୍ ।୧୧।

---

ସାଧାରଣ ବ୍ୟକ୍ତିମାନେ ସୁଦ୍ଧା ସ୍ତ୍ରୀକୁ ନିର୍ଜ୍ଜନରେ ରଖନ୍ତି, କିନ୍ତୁ ଏହି ମହାବ୍ରତଧାରୀ ଯୋଗୀଶ୍ରେଷ୍ଠ ସ୍ତ୍ରୀକୁ କୋଳରେ ଧରିଅଛନ୍ତି ।୮।

**ଶ୍ରୀଶୁକଦେବ କହିଲେ :—**

ହେ ରାଜନ୍ ! ଗମ୍ଭୀର ବୁଦ୍ଧିସମ୍ପନ୍ନ ଭଗବାନ୍ ମହାଦେବ ଚିତ୍ରକେତୁଙ୍କ ବାକ୍ୟ ଶ୍ରବଣ କରି ହାସ୍ୟ କରି ନୀରବ ରହିଲେ, ସଭାସ୍ଥ ସମସ୍ତେ ମହାଦେବଙ୍କର ଅନୁବର୍ତ୍ତୀ ହୋଇ ନୀରବ ରହିଲେ ।୯।

ଚିତ୍ରକେତୁ ମହାଦେବଙ୍କ ପ୍ରଭାବ ବିଦିତ ନ ଥିଲେ । ସେ ଅତ୍ୟନ୍ତ ପ୍ରଗଳ୍‌ଭ ଏବଂ ନିଜେ ଜିତେନ୍ଦ୍ରିୟ ବୋଲି ଅଭିମାନୀ ଥିଲେ । ଦୁର୍ଗାଦେବୀ ପୂର୍ବୋକ୍ତରୂପେ ଅନ୍ୟାୟବାକ୍ୟ ଶ୍ରବଣ କରି କୁପିତା ହୋଇ କହିଲେ ।୧୦।

**ଶ୍ରୀପାର୍ବତୀ କହିଲେ :—**

ଆମ୍ଭମାନଙ୍କ ତୁଲ୍ୟ ଦୁଷ୍ଟ ଓ ନିର୍ଲଜ୍ଜ ବ୍ୟକ୍ତିମାନଙ୍କର କଣ ଶାସନକର୍ତ୍ତା, ଦଣ୍ଡଧାରୀ, ପ୍ରଭୁରୂପେ ଏ ବ୍ୟକ୍ତି ନିଯୁକ୍ତ ହୋଇ ଅଛନ୍ତି ? ।୧୧।

---

ଏକାନ୍ତେ ପ୍ରାକୃତ ସ୍ୱଭାବେ
ରହନ୍ତି ସ୍ତ୍ରୀର ବଶ ଭାବେ
ଏ ଯେ ସ୍ୱଭାବେ ଦେବବର
ଏହାଙ୍କୁ ବୋଲି ବ୍ରତଧର
ସଭାର ମଧ୍ୟେ ସ୍ତ୍ରୀର ଘେନି
ଅଛନ୍ତି ଯେତିକି ନୀଚଯୋନି ।୮।
ଶ୍ରୀ ଶୁକ ଉବାଚ—
ଅଖିଳ ବ୍ରହ୍ମାଣ୍ଡ ଈଶ୍ୱର
ଏହା ଶୁଣିଲେ ସେ ଶଙ୍କର
ଅଗାଧ ବୁଦ୍ଧି ହେ ରାଜନ
ହସିଣ ହୋଇଲେ ମଉନ ।୯।
ଈଶ୍ୱର ମହିମା ନ ଜାଣି
ଯେତେ ବୋଇଲା ସଭାମାଣି
ସଭାର ମଧ୍ୟେ ଦୁଷ୍ଟମତ
ଶୁଣି କ୍ରୋଧିତ ହେଲେ ସତୀ
ଜିତଇନ୍ଦ୍ରିୟ ଅଭିମାନୀ
ତାହାକୁ ବୋଲନ୍ତି ଭବାନୀ ।୧୦।

ଶ୍ରୀ ଦୁର୍ଗୋବାଚ—

ଶୁଣିମା ଜଗତ ଗୋସାଇଁ
ଏ ନୂଆ ଦଣ୍ଡଧର ହୋଇ
ଅମ୍ଭର ପରି ଦୁଷ୍ଟଜନ
ନିର୍ଲଜ ଅଛନ୍ତି ଯେ ପୁଣ
ତାହାଙ୍କ ଶାସନର ପାଇଁ
ଏଥିକି ଏବେ ଆସିଛଇଁ ।୧୧।

ନ ବେଦ ଧର୍ମଂ କଲ ପଦ୍ମଯୋନିର୍ନ ବ୍ରହ୍ମପୁତ୍ରା ଭୃଗୁନାରଦାଦ୍ୟାଃ ।
ନ ବୈ କୁମାରଃ କପିଲୋ ମନୁଶ୍ଚ ଯେ ନୋ ନିଷେଧନ୍ତ୍ୟତିବର୍ତ୍ତିନଂ ହରମ୍ ।୧୨।
ଏଷାମନୁଧ୍ୟେୟପଦାବ୍ଜଯୁଗ୍ମଂ ଜଗଦ୍‌ଗୁରୁଂ ମଙ୍ଗଲମଙ୍ଗଲଂ ସ୍ୱୟମ୍ ।
ଯଃ କ୍ଷତ୍ରବନ୍ଧୁଃ ପରିଭୂୟ ସୁରୀନ୍ ପ୍ରଶାସ୍ତି ଧୃଷ୍ଟସ୍ତଦୟଂ ହି ଦଣ୍ଡ୍ୟଃ । ୧୩।
ନାୟମର୍ହତି ବୈକୁଣ୍ଠପାଦମୂଲୋପସର୍ପଣମ୍ ।
ସମ୍ଭାବିତମତିଃ ସ୍ତବ୍ଧଃ ସାଧୁଭିଃ ପର୍ଯ୍ୟୁପାସିତମ୍ । ୧୪ ।
ଅତଃ ପାପୀୟସୀଂ ଯୋନିମାସୁରୀଂ ଯାହି ଦୁର୍ମତେ ।
ଯଥେହ ଭୂୟୋ ମହତାଂ ନ କର୍ତ୍ତା ପୁତ୍ର କିଲ୍ୱିଷମ୍ । ୧୫ ।

---

ବ୍ରହ୍ମା, ବ୍ରହ୍ମାଙ୍କର ପୁତ୍ର ଭୃଗୁ, ନାରଦ, ସନତ୍କୁମାର, କପିଳ, ମନୁ ପ୍ରଭୃତି କେହି ଧର୍ମ ବିଦିତ ନ ଥିଲେ, କାରଣ ସେମାନେ ମହାଦେବଙ୍କର ଏହି କାର୍ଯ୍ୟକୁ ଶାସ୍ତ୍ରବିରୁଦ୍ଧ ବୋଲି ନିନ୍ଦା କରି ନାହାଁନ୍ତି । ୧୨ ।

ଯାହାଙ୍କର ପାଦପଦ୍ମ ବ୍ରହ୍ମାଦିଦେବଗଣଙ୍କର ଧ୍ୟାନ ଯୋଗ୍ୟ ଏବଂ ଯେ ବିଶ୍ୱପୂଜ୍ୟ, ପରମମଙ୍ଗଳମୟ ଏହି କ୍ଷତ୍ରିୟାଧମ ସର୍ବଶ୍ରେଷ୍ଠ ବିଜ୍ଞବ୍ୟକ୍ତିମାନଙ୍କୁ ଅବଜ୍ଞାକରି ଏମାନଙ୍କୁ ଶାସନ କରିବାକୁ ପ୍ରବୃତ୍ତ ହୋଇଅଛି, ଏଣୁ ଏ ଦୃଷ୍ଟବ୍ୟକ୍ତି ଅବଶ୍ୟ ଦଣ୍ଡନୀୟ । ୧୩ ।

ଏ ବ୍ୟକ୍ତି "ମୁଁ ଶ୍ରେଷ୍ଠ" ଏହି ଅଭିମାନ ବୁଦ୍ଧିବଶତଃ ଅତ୍ୟନ୍ତ ଗର୍ବିତ ହୋଇଅଛି ସୁତରାଂ ଏ ବ୍ୟକ୍ତି ସାଧୁଗଣଙ୍କ ଉପାସନା ଲଭ୍ୟ ଭଗବତ୍‌ଚରଣ ସମୀପକୁ ଗମନ କରିବାର ଅଯୋଗ୍ୟ । ୧୪ ।

ହେ ଦୁର୍ବୁଦ୍ଧି ସମ୍ପନ୍ନ ପୁତ୍ର ! ପୂର୍ବୋକ୍ତ କାରଣରୁ ତୁ ଅତ୍ୟନ୍ତ ପାପମୟ ଅସୁର ଯୋନିରେ ଜନ୍ମଗ୍ରହଣ କରିବୁ । ତାହା ହେଲେ ତୁ ଆଉ ମହତ୍‌ବ୍ୟକ୍ତିମାନଙ୍କ ପ୍ରତି ଏପରି ଅସତ୍ ବ୍ୟବହାର କରିବୁ ନାହିଁ। ୧୫

---

ଯେ ପଦ୍ମ-ଯୋନି ଅଛନ୍ତି
ଏମାନେ ଧର୍ମ ନ ଜାଣନ୍ତି
ବ୍ରହ୍ମାର ପୁତ୍ର ଛନ୍ତି ଯେତେ
ଭୃଗୁ ନାରଦର ସହିତେ
କୁମାର କପିଳ ଯେ ହୋଇ
ଧର୍ମକୁ ନ ଜାଣନ୍ତି କେହି
ମୋର ଛଳରେ ବସିଛନ୍ତି
ମୋତେ ନିଷେଧ ନ କରନ୍ତି ।୧୨

କେତେ ଭଜନ ଏହାଙ୍କର
ପାଦ ପଙ୍କଜ ଦୁଇ ଯାର
ଜଗତଗୁରୁ ଯା ମହିମା
ସକଳ ମଙ୍ଗଳର ସୀମା
ଯେଣୁ ନିନ୍ଦିଲି ଏ ଈଶ୍ୱର
ଦଣ୍ଡକୁ ଯୋଗ୍ୟ ଏ ପାମର ।୧୩।
ଯୋଗ୍ୟ ନୁହଇ ଏ ପାମର
ବୈକୁଣ୍ଠ-ପଦ ଆଶ୍ରୟର

ସ୍ଥିରମତି ଯେ ସାଧୁଜନ
ଯେ ପାଦ କରନ୍ତି ସେବନ ।୧୪।
ଏହି କାରଣେ ଧୃଷ୍ଟ-ମତି
ଯାଅ ତୁ ନାହିଁ ଏଥେ ସ୍ଥିତି
ପାପିଷ୍ଠ ଅସୁର ଯୋନିରେ
ଜନ୍ମ ତୁ ଲଭ ତମଘୋରେ ।୧୫

ଶ୍ରୀଶୁକ ଉବାଚ ।

ଏବଂ ଶପ୍ତଶ୍ଚିତ୍ରକେତୁର୍ବିମାନାଦବରୁହ୍ୟ ସଃ ।
ପ୍ରସାଦୟାମାସ ସତୀଂ ମୂର୍ଦ୍ଧ୍ନା ନମ୍ରେଣ ଭାରତ । ୧୬ ।

ଶ୍ରୀଚିତ୍ରକେତୁରୁବାଚ ।

ପ୍ରତିଗୃହ୍ଣାମି ତେ ଶାପମାତ୍ମନୋଽଞ୍ଜଳିନାମ୍ବିକେ ।
ଦେବୈର୍ମର୍ତ୍ତ୍ୟାୟ ଯତ୍ ପ୍ରୋକ୍ତଂ ପୂର୍ବଦିଷ୍ଟଂ ହି ତସ୍ୟ ତତ୍ । ୧୭ ।
ସଂସାରଚକ୍ର ଏତସ୍ମିନ୍ ଜନ୍ତୁରଜ୍ଞାନମୋହିତଃ ।
ଭ୍ରାମ୍ୟନ୍ ସୁଖଞ୍ଚ ଦୁଃଖଞ୍ଚ ଭୁଂକ୍ତେ ସର୍ବତ୍ର ସର୍ବଦା । ୧୮ ।
ନୈବାତ୍ମା ନ ପରଶ୍ଚାପି କର୍ତ୍ତା ସ୍ୟାତ୍ ସୁଖଦୁଃଖୟୋଃ ।
କର୍ତ୍ତାରଂ ମନ୍ୟତେଽତ୍ରାଜ୍ଞ ଆତ୍ମାନଂ ପରମେବ ଚ । ୧୯ ।
ଗୁଣପ୍ରବାହ ଏତସ୍ମିନ୍ କଃ ଶାପଃ କୋଽନ୍ୱନୁଗ୍ରହଃ ।
କଃ ସ୍ୱର୍ଗୋ ନରକଃ କୋ ବା କିଂ ସୁଖଂ ଦୁଃଖମେବ ବା । ୨୦ ।

ଶ୍ରୀଶୁକଦେବ କହିଲେ :—ହେ ରାଜନ୍ ପରୀକ୍ଷିତ ! ରାଜାଚିତ୍ରକେତୁ ଏହିପରି ଅଭିଶପ୍ତ ହୋଇ ରଥରୁ ଅବତରଣ କରି ଅବନତ ମସ୍ତକରେ ପାର୍ବତୀଙ୍କୁ ପ୍ରସନ୍ନ କରିବା ଉଦ୍ଦେଶ୍ୟରେ କହିଲେ । ୧୬ ।

ଶ୍ରୀଚିତ୍ରକେତୁ କହିଲେ :—ମା, ମୁଁ ଆପଣଙ୍କର ଅଭିଶାପ କୃତାଞ୍ଜଳିପୁଟରେ ଗ୍ରହଣ କରୁଅଛି, ଦେବତାମାନେ ମନୁଷ୍ୟମାନଙ୍କୁ ଯାହା କହନ୍ତି ତାହା ମନୁଷ୍ୟର ପୂର୍ବ କର୍ମାର୍ଜ୍ଜିତ । ୧୭ ।

ଅଜ୍ଞାନାଚ୍ଛନ୍ନ ଜୀବ ସର୍ବଦା ଏହି ସଂସାର ଚକ୍ରରେ ଭ୍ରମଣ କରି ସମସ୍ତ ସ୍ଥାନରେ ସୁଖ ଦୁଃଖ ଭୋଗ କରିଥାଏ । ୧୮ ।

ସୁଖ ଏବଂ ଦୁଃଖ ବିଷୟରେ ମନୁଷ୍ୟ ନିଜେ କର୍ତ୍ତା ନୁହେଁ ବା ଅନ୍ୟ କେହି ନୁହେଁ, ଅଜ୍ଞତା ଦୋଷରୁ କେତେବେଳେ ସେ ନିଜକୁ, କେତେବେଳେ ପରକୁ କର୍ତ୍ତା ବୋଲି ମନେ କରେ । ୧୯ ।

ତ୍ରିଗୁଣାତ୍ମିକା ମାୟାର ପ୍ରଭାବସ୍ୱରୂପ ଏହି ସଂସାରରେ ଅଭିଶାପ ବା କଣ, ଅନୁଗ୍ରହ ବା କଣ ! ସ୍ୱର୍ଗ ବା କଣ ! ନରକ ବା କଣ ସୁଖ ବା ଦୁଃଖ କଣ ? । ୨୦ ।

ଶ୍ରୀ ଶୁକ ଉବାଚ—
ଶାପକୁ ଶୁଣି ରାଜନ
ବିମାନୁଁ ଓହ୍ଲାଇ ତକ୍ଷଣ
ନତ-କନ୍ଧରେ ଶିର ପତ
ପ୍ରସନ୍ନ କରାଇଲା ସତୀ । ୧୬ ।
ଶ୍ରୀ ଚିତ୍ରକେତୁରୁବାଚ—
ହେ ଦୁର୍ଗେ ଶୁଣ ମୋ ବଚନ
ଶାପ ମୁଁ ଘେନିଲି ଶିରେଣ
ହେ ଦେବ ଅସୁର ଯୋନିରେ
ଜନ୍ମ ଯେ କହିଲ ମୋହରେ
ସେ ମୋର ପୂର୍ବର ଅର୍ଜ୍ଜନ
କହିବି ଶୁଣ ସାବଧାନ । ୧୭ ।
ସଂସାରେ ଯେତେ ଜନ୍ତୁ ଛନ୍ତି
ଅଜ୍ଞାନେ ମୋହ ହୋଇଛନ୍ତି
ଭ୍ରମଣ କରି ଅନୁକ୍ଷଣ
ଭୁଞ୍ଜନ୍ତି ଦୁଃଖ ସୁଖମାନ । ୧୮ ।
ଯେ ଆତ୍ମାପର ଅବା କେହି
ଦୁଃଖ-ସୁଖରେ କର୍ତ୍ତା ନୋହି
ଯେ ଅଜ୍ଞ ପ୍ରାଣିମାନେ ଛନ୍ତି
ଏହାଙ୍କୁ କର୍ତ୍ତା ବୋଲୁଥାନ୍ତି ।୧୯।
ଗୁଣର ପ୍ରଭାବରେ ଏହି
ଶାପ ବା ଅନୁଗ୍ରହ କାହିଁ
କେ ଅବା ସ୍ୱର୍ଗ କେ ନରକ
କେ ଅବା ସୁଖ କେବା ଦୁଃଖ ।୨୦

ଏକଃ ସୃଜତି ଭୂତାନି ଭଗବାନାତ୍ମମାୟୟା ।
ଏଷାଂ ବନ୍ଧଞ୍ଚ ମୋକ୍ଷଞ୍ଚ ସୁଖଂ ଦୁଃଖଞ୍ଚ ନିଷ୍କଳଃ । ୨୧ ।
ନ ତସ୍ୟ କଶ୍ଚିଦ୍ଦୟିତଃ ପ୍ରତୀପୋ ନ ଜ୍ଞାତିବନ୍ଧୁର୍ନପରୋ ନ ଚ ସ୍ୱଃ ।
ସମସ୍ୟ ସର୍ବତ୍ର ନିରଞ୍ଜନସ୍ୟ ସୁଖେ ନ ରାଗଃ କୁତ ଏବ ରୋଷଃ । ୨୨ ।
ତଥାପି ତଚ୍ଛକ୍ତିବିସର୍ଗ ଏଷାଂ ସୁଖାୟ ଦୁଃଖାୟ ହିତାହିତାୟ ।
ବନ୍ଧାୟ ମୋକ୍ଷାୟ ଚ ମୃତ୍ୟୁଜନ୍ମନୋଃ ଶରୀରିଣାଂ ସଂସୃତୟେଽବକଳ୍ପତେ ।୨୩
ଅଥ ପ୍ରସାଦୟେ ନ ତ୍ୱାଂ ଶାପମୋକ୍ଷାୟ ଭାମିନି ।
ଯନ୍ମନ୍ୟସେ ହ୍ୟସାଧୂକ୍ତଂ ମମ ତତ୍ କ୍ଷମ୍ୟତାଂ ସତି । ୨୪ ।

---

ବନ୍ଧ ଏବଂ ମୋକ୍ଷାଦିର ଅତୀତ ଏକମାତ୍ର ଭଗବାନ୍ ସେହି ମାୟା ଶକ୍ତି ଦ୍ୱାରା ପ୍ରାଣିବର୍ଗ ଏବଂ ସେମାନଙ୍କର ବନ୍ଧନ ମୁକ୍ତି, ସୁଖ ଦୁଃଖ ପ୍ରଭୃତି ସୃଷ୍ଟି କରିଥାନ୍ତି । ୨୧ ।

ଭଗବାନ୍ ସର୍ବଭୂତରେ ସମଦର୍ଶୀ, ତାହାଙ୍କର ପ୍ରିୟ, ଅପ୍ରିୟ, ଜ୍ଞାତି, ବନ୍ଧୁ, ଆତ୍ମୀୟ, ପର କିଛିମାତ୍ର ନାହିଁ, ସେ ଆଶକ୍ତିଶୂନ୍ୟ, ସୁତରାଂ ତାହାଙ୍କର କାମନା ମଧ୍ୟ ନାହିଁ, ସୁତରାଂ ତାଙ୍କର କ୍ରୋଧ ହେବ କାହିଁକି ? । ୨୨ ।

ତଥାପି ଭଗବାନଙ୍କର ମାୟାଶକ୍ତି ଜନିତ ପାପପୁଣ୍ୟ ସ୍ୱରୂପ ବିଭିନ୍ନ କର୍ମ ପ୍ରାଣୀମାନଙ୍କର ସୁଖ ଦୁଃଖ, ମଙ୍ଗଳ ଅମଙ୍ଗଳ, ବନ୍ଧନ, ମୁକ୍ତି, ଜନ୍ମ ମୃତ୍ୟୁ ପ୍ରଭୃତି ଓ ସଂସାର ଭୋଗକାରଣ ହୋଇଥାଏ ।୨୩।

ହେ ଭାମିନୀ (କୋପନେ) ! ପୂର୍ବୋକ୍ତ କାରଣ ବଶତଃ ମୁଁ ଆପଣଙ୍କର ପ୍ରସନ୍ନତା ଭିକ୍ଷା କରୁଅଛି । ମୁଁ ଶାପ ମୁକ୍ତିଭିକ୍ଷା କରୁନାହିଁ, ଆପଣ ମୋର ଯେଉଁ ଉକ୍ତିକୁ ଅନ୍ୟାୟ ବୋଲି ମନେ କରି ଅଛନ୍ତି; ସେଥିପାଇଁ ମୋତେ କ୍ଷମା ଦିଅନ୍ତୁ । ୨୪ ।

---

ଏକଇ ପ୍ରଭୁ ଆଦିମୂଳ
ମାୟାରେ ସର୍ଜ୍ଜଇ ସକଳ
ଏହାଙ୍କ ବନ୍ଧ ମୋକ୍ଷ ଦୁଇ
ଦୁଃଖ-ସୁଖକୁ ଦେଇଥାଇ ।୨୧।
ଏକଇ ପୁରୁଷ ମୁରାରି
ତାହାର ମିତ୍ର ବା ବଇରୀ
ଜ୍ଞାତି ବାନ୍ଧବ ଅବା ପର
ଆପଣା ନାହିଁଟି ଯାହାର

ସର୍ବ ଭୂତରେ ସମ ସେହି
ରାଗ ବା ଦ୍ୱେଷ ତାର କାହିଁ ? ।୨୨
ତାହାର ଶକ୍ତିରୁ ଏ ଭୂତ
ହେଉଅଛନ୍ତି ଆତଯାତ
ଏହାର ବନ୍ଧ ମୋକ୍ଷ ସୁଖ
ହିତ ଅହିତ ଅବା ଦୁଃଖ
ଏହାଙ୍କ ଜନ୍ମ ଅବା ମୃତ୍ୟୁ
ହୁଅଇ ତାର ଶକ୍ତିହେତୁ ।୨୩।

ଏ ଅନନ୍ତରେ ମୋ ବଚନ
ହେ ଦୁର୍ଗେ ଶୁଣ ସାବଧାନ
ଶାପରୁ ମୋକ୍ଷ ହେବା ପାଇଁ
ତୁମ୍ଭଙ୍କୁ କିଛି ନ ବୋଲଇ
ସଭାରେ ମନ୍ଦ ଯେ ବଚନ
ତୁମ୍ଭଙ୍କୁ ବୋଇଲି ଅଜ୍ଞାନ
ହେ ସତି ! କ୍ଷମାକର ଏହା
ତୁମ୍ଭେ ଅଖିଳ ମହାମାୟା ।୨୪।

ଶ୍ରୀଶୁକ ଉବାଚ ।

ଇତି ପ୍ରସାଦ୍ୟ ଗିରିଶୌ ଚିତ୍ରକେତୁରରିନ୍ଦମ ।
ଜଗାମ ସ୍ୱବିମାନେନ ପଶ୍ୟତୋଃ ସ୍ମୟତୋସ୍ତୟୋଃ । ୨୫ ।
ତତସ୍ତୁ ଭଗବାନ୍ ରୁଦ୍ରୋ ରୁଦ୍ରାଣୀମିଦମବ୍ରବୀତ୍ ।
ଦେବର୍ଷିଦୈତ୍ୟସିଦ୍ଧାନାଂ ପାର୍ଷଦାନାଞ୍ଚ ଶୃଣ୍ୱତାମ୍ । ୨୬ ।

ଶ୍ରୀରୁଦ୍ର ଉବାଚ ।

ଦୃଷ୍ଟବତ୍ୟସି ସୁଶ୍ରୋଣି ହରେରଦ୍ଭୁତକର୍ମଣଃ ।
ମାହାତ୍ମ୍ୟଂ ଭୃତ୍ୟଭୃତ୍ୟାନାଂ ନିସ୍ପୃହାଣାଂ ମହାତ୍ମନାମ୍ । ୨୭ ।
ନାରାୟଣପରାଃ ସର୍ବେ ନ କୁତଶ୍ଚନ ବିଭ୍ୟତି ।
ସ୍ୱର୍ଗାପବର୍ଗନରକେଷ୍ୱପି ତୁଲ୍ୟାର୍ଥଦର୍ଶିନଃ । ୨୮ ।

---

ଶ୍ରୀଶୁକଦେବ କହିଲେ :—

ହେ ଅରିନ୍ଦମ (ଶତ୍ରୁଦମନଶୀଳ) ଚିତ୍ରକେତୁ ଏପରିବାକ୍ୟ ଦ୍ୱାରା ଶିବ ଓ ଦୁର୍ଗାଙ୍କୁ ପ୍ରସନ୍ନ କରାଇ ନିଜ ରଥରେ ଆରୋହଣ କରି ପ୍ରସ୍ଥାନ କରନ୍ତେ ସେମାନେ ତାହା ଆଡ଼କୁ ବିସ୍ମୟବିଷ୍ଟ ଚିତ୍ତରେ ଅନାଇ ରହିଲେ । ୨୫ ।

ତଦନନ୍ତର ଭଗବାନ୍ ରୁଦ୍ର ସତୀ ପାର୍ବତୀଙ୍କୁ କହିଲେ ଏବଂ ତାହାଙ୍କର ଭୂଷଣ ସଦୃଶ୍ୟ ଦେବଗଣ ଋଷିଗଣ, ଦୈତ୍ୟଗଣ, ସିଦ୍ଧଗଣ ଏବଂ ତାହାଙ୍କର ପାରିଷଦଗଣ ସମସ୍ତେ ଶୁଣିଲେ । ୨୬ ।

ଶ୍ରୀମହାଦେବ କହିଲେ :—

ହେ ସୁଶ୍ରୋଣି ! (ଶୋଭନ ନିତମ୍ବେ—ସୁନ୍ଦରୀ ) ଅଦ୍ଭୁତକର୍ମା ଶ୍ରୀହରିଙ୍କ ଦାସାନୁଦାସ ଯେଉଁମାନେ ସେମାନଙ୍କର କୌଣସି ପ୍ରକାର କାମନା ନଥାଏ । ସୁତରାଂ ସେମାନଙ୍କର ପ୍ରଭାବ ଦେଖ । ୨୭ ।

ଯେଉଁମାନେ ଶ୍ରୀହରିଭକ୍ତି ପରାୟଣ ସେମାନଙ୍କର ସ୍ୱର୍ଗ, ନରକ, ମୁକ୍ତି, ବନ୍ଧନ ଏ ସମସ୍ତ ସମାନ, ସୁତରାଂ ସେମାନେ କୌଣସି ଥିରେ ଭୀତ ନୁହନ୍ତି । ୨୮ ।

---

ଶ୍ରୀ ଶୁକ ଉବାଚ—

ଏମନ୍ତ ପ୍ରସନ୍ନ କରାଇ
ଈଶ୍ୱର ପାର୍ବତୀଙ୍କ ସେହି
ଅମ୍ବ-ବିମାନେ ସେ ବସିଲା
ନିଜ ମନ୍ଦିରକୁ ସେ ଗଲା । ୨୫ ।
ଏ ଅନନ୍ତରେ ଯେ ଈଶ୍ୱର
ଦୁର୍ଗାଙ୍କୁ କହନ୍ତି ମଧୁର
ଋଷି ଦଇତ ସିଦ୍ଧ-ମାନ
ଶୁଣୁ ଅଛନ୍ତି ସେ ବଚନ । ୨୬ ।

ଶ୍ରୀ ଦେବଦେବ ଉବାଚ—

ଅଦ୍ଭୁତ-କର୍ମା ଯେ ଈଶ୍ୱର
ପ୍ରଭାବ ଦେଖ ତା ଭୃତ୍ୟର
ନିସ୍ପୃହ ମହାତ୍ମା ସେମାନେ
ସୁଶ୍ରୋଣି ! ଦେଖ ବିଦ୍ୟମାନେ । ୨୭
ବିଷ୍ଣୁ ଭକତ ଯେତେ ଜନେ
ଭୟ ତାହାଙ୍କ ନାହିଁ ମନେ
ସ୍ୱର୍ଗ ବା ମୋକ୍ଷ ବା ନରକ
ତୁଲ୍ୟ ଦେଖନ୍ତି ସେହୁ ଲୋକ । ୨୮

ଦେହିନାଂ ଦେହସଂ ଯୋଗାଦ୍ଦ୍ୱନ୍ଦ୍ୱାନୀଶ୍ୱରଲୀଳୟା ।
ସୁଖଂ ଦୁଃଖଂ ମୃତିର୍ଜନ୍ମ ଶାପୋଽନୁଗ୍ରହ ଏବ ଚ । ୨୯ ।
ଅବିବେକକୃତଃ ପୁଂସୋ ହ୍ୟର୍ଥଭେଦ ଇବାତ୍ମନି ।
ଗୁଣଦୋଷବିକଳ୍ପଶ୍ଚ ଭିଦେବ ସ୍ରଜିବତ୍ କୃତଃ । ୩୦ ।
ବାସୁଦେବେ ଭଗବତି ଭକ୍ତିମୁଦ୍‌ବହତାଂ ନୃଣାମ୍ ।
ଜ୍ଞାନବୈରାଗ୍ୟବୀର୍ଯ୍ୟାଣାଂ ନ ହି କଶ୍ଚିଦ୍‌ବ୍ୟପାଶ୍ରୟଃ । ୩୧ ।
ନାହଂ ବିରଞ୍ଚୋ ନ କୁମାରନାରଦୌ ନ ବ୍ରହ୍ମପୁତ୍ରା ମୁନୟଃ ସୁରେଶାଃ ।
ବିଦାମ ଯସ୍ୟେହିତମଂଶକାଂଶକା ନ ତତ୍‌ସ୍ୱରୂପଂ ପୃଥଗୀଶମାନିନଃ ।୩୨।
ନହ୍ୟସ୍ୟାସ୍ତି ପ୍ରିୟଃ କଶ୍ଚି ନ୍ନାପ୍ରିୟଃ ସ୍ୱଃ ପରୋଽପି ବା ।
ଆତ୍ମତ୍ୱାତ୍ ସର୍ବଭୂତାନାଂ ସର୍ବଭୂତପ୍ରିୟୋ ହରିଃ । ୩୩ ।

---

ଭଗବାନଙ୍କର ମାୟାବଶତଃ ଜୀବମାନେ ଦେହଧାରଣ କରି ସୁଖ, ଦୁଃଖ, ବନ୍ଧନ, ମୁକ୍ତି, ମୃତ୍ୟୁ, ଅଭିଶାପ ପ୍ରଭୃତି ଦ୍ୱନ୍ଦ୍ୱ ଭୋଗ କରିଥାନ୍ତି । ୨୯ ।

ଲୋକ ସ୍ୱପ୍ନାଦି ଅବସ୍ଥାରେ ଅବିବେକ ବଶତଃ ଯେପରି ନାନାପ୍ରକାର ଅବସ୍ଥାଭେଦ ଅନୁଭବକରେ ଏବଂ ମାଳାରେ ସର୍ପ ବା ରଜ୍ଜୁ ଭ୍ରମ କରିଥାଏ; ସେହିପରି ସୁଖ ଦୁଃଖାଦି ପ୍ରତି ଯେଉଁଜ୍ଞାନ ତାହା ମନୁଷ୍ୟର ଅଜ୍ଞାନ ବଶତଃ ଘଟିଥାଏ । ୩୦ ।

ଭଗବାନ୍ ଶ୍ରୀହରିଙ୍କ ପ୍ରତି ଯେଉଁମାନେ ଭକ୍ତିସମ୍ପନ୍ନ ସେମାନେ ଆପଣାଠାରୁ ଜ୍ଞାନ ଓ ବୈରାଗ୍ୟ ଶକ୍ତି ପ୍ରାପ୍ତ ହୋଇଥାନ୍ତି । ସେମାନଙ୍କ ପକ୍ଷରେ ଉତ୍କୃଷ୍ଟଜ୍ଞାନ ଆଶ୍ରୟ କରିବାର ଯୋଗ୍ୟ ଅନ୍ୟକିଛି ନାହିଁ ।୩୧।

ମୁ , ବ୍ରହ୍ମା, ସନତ୍‌କୁମାର ,ନାରଦ, ବ୍ରହ୍ମାଙ୍କ ପୁତ୍ର ମରୀଚି ପ୍ରଭୃତି ମହର୍ଷିଗଣ ଏବଂ ଶ୍ରେଷ୍ଠ ଦେବଗଣଙ୍କ ମଧ୍ୟରୁ କେହି ସେହି ଭଗବାନଙ୍କର ଅଂଶ, କେହି ଅବା ତାହାଙ୍କର ଅଂଶର ଅଂଶ, ତଥାପି ଆମ୍ଭେମାନେ ତାହାଙ୍କ ଅଭିପ୍ରାୟ ବୁଝିବାକୁ ଅକ୍ଷମ । ଯେଉଁମାନେ ପୃଥକ୍ ପୃଥକ୍ ଈଶ୍ୱର ଅଛନ୍ତି ବୋଲି ମନେ କରନ୍ତି; ସେମାନେ ଭଗବାନଙ୍କର ସ୍ୱରୂପ ବୁଝନ୍ତି ନାହିଁ । ୩୨ ।

ଭଗବାନଙ୍କର ପ୍ରିୟ, ଅପ୍ରିୟ, ଆତ୍ମୀୟ ବା ପର କେହି ନାହିଁ, ସେ ସର୍ବଭୂତରେ ଅନ୍ତର୍ଯ୍ୟାମୀ, ତେଣୁ ସର୍ବଭୂତ ପ୍ରିୟ । ୩୩ ।

---

ଦେହର ଦେହ ସଂଯୋଗରୁ
ପରମ ଈଶ୍ୱର ଲୀଳାରୁ
ଜନ୍ମ ବା ମୃତ୍ୟୁ ଅବା ସୁଖ
ଶାପ ବା ଅନୁଗ୍ରହ ଦୁଃଖ । ୨୯ ।
ପୁରୁଷ ଅବିବେକ ସେହି
ଏଥିବେ ଭିନ୍ନ ଯେ ଦେଖଇ
ଯାହାର ବାସୁଦେବେ ମତି
ଶୁଦ୍ଧ ଯାହାର ଦୃଢ଼ମତି

ଜ୍ଞାନ ବୈରାଗ୍ୟ ଅଛି ଯାର
ପୃଥକଭାବ ନାହିଁ ତାର ।୩୦ ,୩୧
ମୁହିଁ ବିରଞ୍ଚି ଯେ କୁମାର
ନାରଦ ଆଦି ମୁନିବର
ବ୍ରହ୍ମାଦି ଯେତେ ସୁରେଶ୍ୱର
ନ ଜାଣୁ ଚେଷ୍ଟାକୁ ଯାହାର ।୩୨।
ଏହାର ପ୍ରିୟ ନାହିଁ କେହି
ଅପ୍ରିୟ ଏହାରତ ନାହିଁ

ମିତ୍ର ଅରି ନାହିଁ ଯାର
ସମାନ ଦେଖେ ନୃପବର
ସକଳ ପ୍ରାଣିଙ୍କର ପ୍ରିୟ
ଯେଣୁ ସେ ସର୍ବ ଭୂତମୟ ।୩୩।

ତସ୍ୟ ଗୃହ୍ୟଂ ମହାଭାଗଶ୍ଚିତ୍ରକେତୁଃ ପ୍ରିୟୋଽନୁଗଃ ।
ସର୍ବତ୍ର ସମଦୃକ୍ ଶାନ୍ତୋ ହ୍ୟହଞ୍ଚୈବାଚ୍ୟୁତପ୍ରିୟଃ । ୩୪ ।
ତସ୍ମାନ୍ନ ବିସ୍ମୟଃ କାର୍ଯ୍ୟଃ ପୁରୁଷେଷୁ ମହାତ୍ମସୁ ।
ମହାପୁରୁଷଭକ୍ତେଷୁ ଶାନ୍ତେଷୁ ସମଦର୍ଶିଷୁ । ୩୫ ।

ଶ୍ରୀଶୁକ ଉବାଚ ।

ଇତି ଶ୍ରୁତ୍ୱା ଭଗବତଃ ଶିବସ୍ୟୋମାଭିଭାଷିତମ୍ ।
ବଭୂବ ଶାନ୍ତଧୀ ରାଜନ୍ ଦେବୀ ବିଗତବିସ୍ମୟା । ୩୬
ଇତି ଭାଗବତୋ ଦେବ୍ୟାଃ ପ୍ରତିଶପ୍ତୁମଲନ୍ତମଃ ।
ମୂର୍ଦ୍ଧ୍ନା ସ ଜଗୃହେ ଶାପମେତାବତ୍ ସାଧୁଲକ୍ଷଣମ୍ । ୩୭ ।
ଜଜ୍ଞେ ତ୍ୱଷ୍ଟୁର୍ଦ୍ଦକ୍ଷିଣାଗ୍ନୌ ଦାନବୀଂ ଯୋନିମାଶ୍ରିତଃ ।
ବୃତ୍ର ଇତ୍ୟଭିବିଖ୍ୟାତୋ ଜ୍ଞାନବିଜ୍ଞାନସଂଯୁତଃ । ୩୮ ।

---

ଏହି ପରମ ସୌଭାଗ୍ୟଶାଳୀ ଚିତ୍ରକେତୁ ସେହି ଭଗବାନଙ୍କର ପରମଭକ୍ତ, କାରଣ ସେ ସର୍ବଭୂତରେ ସମଦର୍ଶୀ ଏବଂ ଶାନ୍ତ, ମୁଁ ମଧ୍ୟ ସେହି ଭଗବାନଙ୍କର ପ୍ରିୟପାତ୍ର । ୩୪ ।

ଅତଏବ ଏପରି ଶାନ୍ତ, ସମଦର୍ଶୀ, ସାଧୁବ୍ୟକ୍ତିର ବ୍ୟବହାରରେ ବିସ୍ମିତ ହେବାର କିଛିନାହିଁ ।୩୫।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ଦେବୀ ଭଗବାନ୍ ଶିବଙ୍କର ଏହି ବାକ୍ୟ ଶ୍ରବଣ କରି ବିସ୍ମୟ ରହିତ ଚିତ୍ତରେ କ୍ରୋଧ ପରିତ୍ୟାଗ କରିଥିଲେ । ୩୬ ।

ଭଗବତ୍ ଭକ୍ତ ଚିତ୍ରକେତୁ ପ୍ରତିଶାପ ପ୍ରଦାନ କରିବାକୁ ସମର୍ଥ ଥିଲେହେଁ ସୁଖ ଦୁଃଖରେ ସମଜ୍ଞାନ ହେତୁ ଅବନତ ମସ୍ତକରେ ଦେବୀଙ୍କର ଅଭିଶାପ ଗ୍ରହଣ କରିବା ତାହାଙ୍କ ସାଧୁତାର ପରିଚୟ । ୩୭ ।

ଚିତ୍ରକେତୁ ଅସୁର ଜନ୍ମ ପ୍ରାପ୍ତ ହୋଇ ତ୍ୱଷ୍ଟାଙ୍କର ଯଜ୍ଞରେ ଦକ୍ଷିଣାଗ୍ନିରେ ଉତ୍ପତ୍ତିଲାଭ କରିଥିଲେ । ଜ୍ଞାନ ବିଜ୍ଞାନ ସମ୍ପନ୍ନ ହୋଇ "ବୃତ୍ର" ଏହି ନାମରେ ବିଖ୍ୟାତ ହୋଇଥିଲେ । ୩୮ ।

---

ଏ ଚିତ୍ରକେତୁ ମହାଭାଗ
ତାହାର ଏ ପ୍ରିୟ ଅନୁଗ
ସର୍ବତ୍ର ସମଦୃଷ୍ଟି ଏହି
ଅଚ୍ୟୁତ-ପ୍ରିୟ ଯେହ୍ନେ ମୁହିଁ
ମହାତ୍ମା ପୁରୁଷ ଯେ ସେହି
ଏଣୁ ବିସ୍ମୟ ତାର ତହିଁ
ନ କର, ସ୍ଥିର କର ମନ
ବିଷ୍ଣୁ-ଭକତ ଏହୁ ଜନ
ଶାନ୍ତ ସମଦରଶୀ ସେହି
ବିସ୍ମୟ ଏଥି ଅଛି କାହିଁ ।୩୪,୩୫

ଶ୍ରୀ ଶୁକ ଉବାଚ—

ଶିବର ଭାଗବତ ବାଣୀ
ହରଷେ ଶୁଣିଣ ଭବାନୀ
ହେ ନୃପ ! ସ୍ଥିରକଲେ ମନ
ବିସ୍ମୟ ଛାଡ଼ିଲେ ବହନ । ୩୬ ।
ସେ ଚିତ୍ରକେତୁ ଏ ପ୍ରକାରେ
ଦେବୀର ଶାପ ଘେନି ଶିରେ
ତାହାର ଏ ସାଧୁ ଲକ୍ଷଣ
ଯେଣୁ କଲା ଶାପ ଗ୍ରହଣ । ୩୭ ।
ତ୍ୱଷ୍ଟାର ଦକ୍ଷିଣ ଅଗ୍ନିରେ
ଜନ୍ମିଲା ଦାନବୀ ଉଦରେ
ବୃତ୍ର ହୋଇଲା ତାର ନାମ
ଜ୍ଞାନ ବିଜ୍ଞାନରେ ସମ୍ପୂର୍ଣ୍ଣ । ୩୮ ।

ଏତତ୍ତେ ସର୍ବମାଖ୍ୟାତଂ ଯନ୍ମାଂ ତ୍ୱଂ ପରିପୃଚ୍ଛସି ।
ବୃତ୍ରସ୍ୟାସୁରଜାତେଶ୍ଚ କାରଣଂ ଭଗବନ୍ମତେଃ । ୩୯ ।
ଇତିହାସମିମଂ ପୁଣ୍ୟଂ ଚିତ୍ରକେତୋର୍ମହାତ୍ମନଃ ।
ମାହାତ୍ମ୍ୟଂ ବିଷ୍ଣୁଭକ୍ତାନାଂ ଶ୍ରୁତ୍ୱା ବନ୍ଧାଦ୍ୱିମୁଚ୍ୟତେ । ୪୦ ।
ଯ ଏତତ୍ ପ୍ରାତରୁତ୍ଥାୟ ଶ୍ରଦ୍ଧୟା ବାଗ୍ୟତଃ ପଠେତ୍ ।
ଇତିହାସଂ ହରିଂ ସ୍ମୃତ୍ୱା ସ ଯାତି ପରମାଂ ଗତିମ୍ । ୪୧ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ଚିତ୍ରକେତୁପାଖ୍ୟାନଂ ନାମ ସପ୍ତଦଶୋଽଧ୍ୟାୟଃ । ୧୭ ।

---

ବୃତ୍ର କିପରି ଅସୁର ଜନ୍ମ ଗ୍ରହଣ କରିଥିଲେ, ଅଥଚ କିପରି ତାଙ୍କର ଭଗବତ୍ ଭକ୍ତିଥିଲା ଏହା ତୁମ୍ଭେ ମୋତେ ପ୍ରଶ୍ନ କରିଥିଲ, ମୁଁ ସେ ସମସ୍ତ ତୁମ୍ଭଙ୍କୁ କହିଲି । ୩୯

ମହାତ୍ମା ଚିତ୍ରକେତୁର ଏହି ବୃତ୍ତାନ୍ତ ଦ୍ୱାରା ବିଷ୍ଣୁଭକ୍ତମାନଙ୍କର ମାହାତ୍ମ୍ୟ ପ୍ରକାଶିତ ହୁଏ, ଏହାଶୁଣି ଜୀବ ସଂସାର ବନ୍ଧନରୁ ମୁକ୍ତିଲାଭ କରିବାକୁ ସମର୍ଥ ହେବ । ୪୦ ।

ଯେଉଁବ୍ୟକ୍ତି ପ୍ରାତଃ କାଳରେ ଉଠି ହରିସ୍ମରଣ କରି ବାକ୍ ସଂଯମନ ପୂର୍ବକ ଏହି ବୃତ୍ତାନ୍ତ ପାଠ କରେ ସେ ପରମ ଭଗବତ୍ ଗତି ଲାଭ କରେ । ୪୧ ।

---

ସକଳ ତୁମ୍ଭଙ୍କୁ କହିଲି
ଆମ୍ଭଙ୍କୁ ଯେତେ ପ୍ରଶ୍ନ କଲ
ଗୋବିନ୍ଦେ ମତ ବୃତ୍ରାସୁର
ଜନ୍ମର କାରଣ ତାହାର ।୩୯।
ଏ ଇତିହାସ ପୁଣ୍ୟସାର
ମହାତ୍ମା ଏ ଚିତ୍ରକେତୁର
ବିଷ୍ଣୁଭକତ ପ୍ରାଣୀଯେହି
ତାହାଙ୍କ ଗୁଣ ଯେ ଶୁଣଇ
ସକଳ ବନ୍ଧୁଁ ମୁକ୍ତ ହୋଇ
ବୈକୁଣ୍ଠ ପଦକୁ ଲଭଇ ।୪୦।
ଏ ଇତିହାସ ଯେ ପ୍ରଭାତେ
ପଢ଼ି ଶୁଣଇ ସ୍ଥିର ଚିତ୍ତେ
ହରି ସ୍ମରଣକୁ କରଇ
ପରମ ଗତିକି ଲଭଇ ।୪୧।
ବୋଲଇ ଦାସ ଜଗନ୍ନାଥ
ଚିତ୍ରକେତୁ ରାଜା ଚରିତ
ଏ ଗୀତେ ସ୍ଥିରକର ମନ
ଛିଡ଼ିବ ମୋହ-ଭ୍ରାନ୍ତିମାନ ।



**ବିଶଦାର୍ଥ :—**

ଏହି ଅଧ୍ୟାୟରେ ଚିତ୍ରକେତୁଙ୍କର ଚରିତ୍ର ଭଗବଦ୍ କୃପାଲବ୍ଧ ଦ୍ୱାରା କିପରି ଉଚ୍ଚତମ ସୋପାନରେ ଆରୂଢ ହୋଇଥିଲା ତହିଁର ନିଦର୍ଶନ ଦେଖାଯାଏ, ଚିତ୍ରକେତୁ ବିଦ୍ୟାଧର ରୂପେ ଗଗନମାର୍ଗରେ ବିଚରଣ କରୁ କରୁ ଶିବଙ୍କର ସମ୍ମୁଖରେ ଉପସ୍ଥିତ ହୋଇଥିଲେ । ଶିବ ପରମଯୋଗୀ ହେଲେହେଁ, ସଭାସ୍ଥଳରେ, ପାର୍ବତୀଙ୍କୁ ଅର୍ଦ୍ଧାଙ୍ଗରେ ବସାଇ ଥିବାର ଦେଖି, ଚିତ୍ରକେତୁ ତାହା ସମାଲୋଚନା କରିଥିଲେ, ପାର୍ବତୀ ଏଥିରେ କ୍ରୁଦ୍ଧ ହୋଇ ତାହାଙ୍କୁ ଅଭିଶାପ ଦେଇଥିଲେ । ଚିତ୍ରକେତୁ ନିଜର ମହତ୍ୱ ଚରିତ୍ର ଓ ଭଗବଦ୍‌ଭକ୍ତି ହେତୁରୁ ସେଥିରେ ଆଦୌ ବିଚଳିତ ନ ହୋଇ କୃତାଞ୍ଜଳିପୂର୍ବକ ତାହା ଗ୍ରହଣ କରିଥିଲେ, ସେ ଶିବ ପାର୍ବତୀଙ୍କୁ ଯେ କ୍ଷମା ମାଗିଥିଲେ, ତାହା ଅନ୍ୟାନ୍ୟମାନଙ୍କ ପରି ଶାପମୁକ୍ତ ହେବାକୁ ନୁହେଁ, କେବଳ ତାହାଙ୍କର ବାକ୍ୟ ଦ୍ୱାରା ପାର୍ବତୀଙ୍କର କ୍ରୋଧ ଜାତ ହୋଇଥିବାରୁ କ୍ଷମା ପ୍ରାର୍ଥନା କରିଥିଲେ । ଚିତ୍ରକେତୁ ପ୍ରଫୁଲ୍ଲ ଚିତ୍ତରେ ପାର୍ବତୀଙ୍କର ଅଭିଶାପ ଗ୍ରହଣ କରି ପ୍ରସ୍ଥାନ କରନ୍ତେ ଶିବ ପାର୍ବତୀଙ୍କୁ ଚିତ୍ରକେତୁର ମହତ୍ତ୍ୱ ବୁଝାଇ ଥିଲେ ।

ଏହି ଚିତ୍ରକେତୁ ପର ଜନ୍ମରେ ତ୍ୱଷ୍ଟାଙ୍କର ହୋମାଗ୍ନିରୁ ବୃତ୍ରାସୁରରୂପେ ଜାତ ହୋଇଥିଲେ । ଏହି ବୃତ୍ରାସୁର ଇନ୍ଦ୍ରଙ୍କ କର୍ତ୍ତୃକ ଯୁଦ୍ଧ ଭୂମିରେ ପରାସ୍ତ ହେଲାବେଳେ ତାହାଙ୍କୁ ବହୁ ଧର୍ମୋପଦେଶ ପ୍ରଦାନ କରିଥିଲା । ରାଜା ପରୀକ୍ଷିତ ବୃତ୍ରାସୁରର ଧର୍ମୋପଦେଶ ବିବରଣୀ ଶ୍ରବଣ କରି ବିସ୍ମିତ ହୋଇଥିଲେ ଏବଂ ଶ୍ରୀ ଶୁକଦେବଙ୍କୁ ପଚାରିଥିଲେ "ବୃତ୍ରାସୁର ଅସୁର ହୋଇ ତାର ଏପରି ଧର୍ମଭାବ କେଉଁଠାରୁ ଆସିଲା ?" ତେଣୁ ଶ୍ରୀ ଶୁକଦେବ ପୂର୍ବାର୍ଜିତ ସଂସ୍କାରର ପ୍ରଭାବ ଦେଖାଇ ବୃତ୍ରାସୁରର ପୂର୍ବ ଜନ୍ମ ଚିତ୍ରକେତୁ ପ୍ରସଙ୍ଗ ଉଲ୍ଲେଖ କରିଥିଲେ ।



## ଅ ଷ୍ଟା ଦ ଶ ଅ ଧ୍ୟା ୟ ।

ଅଦିତେଃ ପଞ୍ଚମାଦୀନାଂ ପୁତ୍ରାଣାମନ୍ୱୟୋକ୍ତିଭିଃ ।
ଅଷ୍ଟାଦଶେ ଦିତେର୍ଗର୍ଭେ ଶକ୍ରେଣ ମରୁତାଂ ଭିଦା । ୦ ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକ ଉବାଚ ।

ପୃଶ୍ନିସ୍ତୁ ପତ୍ନୀ ସବିତୁଃ ସାବିତ୍ରୀଂ ବ୍ୟାହୃତିଂ ତ୍ରୟୀ ।
ଅଗ୍ନିହୋତ୍ରଂ ପଶୁଂ ସୋମଂ ଚାତୁର୍ମାସ୍ୟଂ ମହାମଖାନ୍ ୧ ।
ସିଦ୍ଧିର୍ଭଗସ୍ୟ ଭାର୍ଯ୍ୟାଙ୍ଗ ମହିମାନଂ ବିଭୁଂ ପ୍ରଭୁମ୍ ।
ଆଶିଷଞ୍ଚ ବରାରୋହାଂ କନ୍ୟାଂ ପ୍ରାସୂତ ସୁବ୍ରତ । ୨ ।
ଧାତୁଃ କୁହୂଃ ସିନୀବାଲୀ ରାକା ଚାନୁମତିସ୍ତଥା ।
ସାୟଂ ଦର୍ଶମଥ ପ୍ରାତଃ ପୂର୍ଣ୍ଣମାସମନୁକ୍ରମାତ୍ । ୩ ।

---

### ଦିତିଙ୍କର ଗର୍ଭଉତ୍ପତ୍ତି ଓ ମରୁତଗଣଙ୍କର ଦେବତ୍ୱ ଲାଭ ।

ଅଷ୍ଟାଦଶ ଅଧ୍ୟାୟରେ ଦିତିଙ୍କର ଗର୍ଭବାସ ଏବଂ ଇନ୍ଦ୍ରଙ୍କ କର୍ତ୍ତୃକ ଗର୍ଭଚ୍ଛେଦ ଏବଂ ମରୁଦ୍‌ଗଣଙ୍କର ଉତ୍ପତ୍ତି ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ସବିତାଙ୍କର ପତ୍ନୀ ପୃଶ୍ନି—ସାବିତ୍ରୀ, ବ୍ୟାହୃତି, ତ୍ରୟୀ, ଅଗ୍ନିହୋତ୍ର, ପଶୁଯାଗ, ସୋମଯାଗ, ଚାତୁର୍ମାସ୍ୟ ଏବଂ ପଞ୍ଚମହାଯଜ୍ଞ ଏହି ସନ୍ତାନ ମାନ ପ୍ରସବ କରିଥିଲେ । ୧ ।

ହେ ସୁବ୍ରତ (ପରୀକ୍ଷିତ) ଭଗଙ୍କର ପତ୍ନୀ ସିଦ୍ଧି ତାହାଙ୍କର ତିନିପୁତ୍ର—ମହିମା, ବିଭୁ, ଓ ପ୍ରଭୁ ଏବଂ ଗୋଟିଏ ଉତ୍ତମା କନ୍ୟା—ଆଶିଷ ଜନ୍ମ ଗ୍ରହଣ କରିଥିଲେ । ୨ ।

ଧାତାଙ୍କର ଚାରୋଟି ପତ୍ନୀ, ଯଥା କୁହୂ, ସିନୀବାଲି, ରାକା, ଓ ଅନୁମତି ଏମାନେ ଯଥାକ୍ରମେ ସାୟଂ, ଦର୍ଶ, ପ୍ରାତଃ ଏବଂ ପୂର୍ଣ୍ଣମାସ ନାମକ ଚାରିପୁତ୍ର ପ୍ରସବ କରିଥିଲେ । ୩ ।

---

ଦିତିର ଗର୍ଭେ ମରୁଦ୍‌ଗଣ । ଜନ୍ମ ଅଷ୍ଟାଦଶେ ବଖାଣ । ୦ ।

ଶ୍ରୀ ଶୁକ ଉବାଚ—
ଶୁକ କହନ୍ତି ହରଷିତ
ସାନନ୍ଦେ ଶୁଣ ପରୀକ୍ଷିତ,
ସବିତା ପତ୍ନୀ ପୃଶ୍ନି ହୋଇ
ବ୍ୟାହୃତି ସାବିତ୍ରୀ ଯେ ତ୍ରୟୀ,
ଏ ତିନି କନ୍ୟାଟି ତାହାର
ପୁତ୍ରର ନାମ ଶୁଣ ତାର

ଅଗ୍ନିହୋତ୍ର ଯେ ପଶୁ ସୋମ
ଚାତୁର୍ମାସ୍ୟା ଏ ଚାରି ନାମ । ୧ ।
ଭଗର ଭାର୍ଯ୍ୟା ସିଦ୍ଧି ନାମ
ତା ପୁତ୍ର ବିଭୁ ମହିମାନ
ଆଶିଷ ପ୍ରଭୁ ଚାରି ଜାଣ
କନ୍ୟାଏ ବରାରୋହା ନାମ
ଧାତାର ତହୁଁ ଚାରିସୁତ
କୁହୂ ଭାର୍ଯ୍ୟାରୁ ସାୟଂ ଜାତ

ସିନିବାଲୀର ପୁତ୍ର ଦର୍ଶ
ଅନୁମତିର ପୂର୍ଣ୍ଣମାସ
ରାକାର ତହୁଁ ହେଲ ପ୍ରାତ
ଏରୂପେ ଧାତାବଂଶ ଖ୍ୟାତ ।୨,୩।

ଅଗ୍ନୀନ୍ ପୁରୀଷ୍ୟାନାଧତ୍ତ କ୍ରିୟାୟାଂ ସମନନ୍ତରଃ ।
ଚର୍ଷଣୀ ବରୁଣସ୍ୟାସୀଦ୍ ଯସ୍ୟାଂ ଜାତୋ ଭୃଗୁଃ ପୁନଃ । ୪ ।
ବାଲ୍ମୀକିଶ୍ଚ ମହାଯୋଗୀ ବଲ୍ମୀକାଦଭବତ୍ କିଲ ।
ଅଗସ୍ତ୍ୟଶ୍ଚ ବଶିଷ୍ଠଶ୍ଚ ମିତ୍ରାବରୁଣୟୋର୍ଋଷୀ । ୫ ।
ରେତଃ ସିଷିଚତୁଃ କୁମ୍ଭେ ଉର୍ବଶ୍ୟାଃ ସନ୍ନିଧୌ ଦ୍ରୁତମ୍ ।
ରେବତ୍ୟାଂ ମିତ୍ର ଉତ୍ସର୍ଗମରିଷ୍ଟଂ ପିପ୍ପଳଂ ବ୍ୟଧାତ୍ । ୬ ।
ପୌଲୋମ୍ୟାମିନ୍ଦ୍ର ଆଧତ୍ତ ତ୍ରୀନ୍ ପୁତ୍ରାନିତି ନଃ ଶ୍ରୁତମ୍ ।
ଜୟନ୍ତମୃଷଭଂ ତାତ ତୃତୀୟଂ ମୀଢୁଷଂ ପ୍ରଭୁଃ । ୭ ।
ଉରୁକ୍ରମସ୍ୟ ଦେବସ୍ୟ ମାୟାବାମନରୂପିଣଃ ।
କୀର୍ତ୍ତୌ ପତ୍ନ୍ୟାଂ ବୃହଚ୍ଛ୍ଲୋକସ୍ତସ୍ୟାସନ୍ ସୌଭଗାଦୟଃ । ୮ ।

---

ଧାତାଙ୍କର ପରବର୍ତ୍ତୀ ଅର୍ଥାତ୍ ଅଦିତିଙ୍କର ଅଷ୍ଟମ ପୁତ୍ର ବିଧାତା । ତାହାଙ୍କର କ୍ରିୟାନାମ୍ନୀ ଭାର୍ଯ୍ୟାଙ୍କଠାରୁ ପୁରୀଷ୍ୟ ନାମକ ପଞ୍ଚବିଧ ଅଗ୍ନି ସୃଷ୍ଟ ହୋଇଥିଲେ । ବରୁଣଙ୍କ ପତ୍ନୀଙ୍କର ନାମ ଚର୍ଷଣୀ, ତାହାଙ୍କ ଗର୍ଭରେ ଭୃଗୁମୁନି ପୁନଶ୍ଚ ଜନ୍ମଗ୍ରହଣ କରିଥିଲେ । ୪ ।

ମହାଯୋଗୀ ବାଲ୍ମୀକି, ବଲ୍ମୀକ (ଉଇ ହୁଙ୍କା)ରୁ ଜାତ ହୋଇଥିଲେ । ସେ ମଧ୍ୟ ବରୁଣଙ୍କର ପୁତ୍ର, ଅଗସ୍ତ୍ୟ ଓ ବଶିଷ୍ଠ ଏହି ମୁନି ଦୁହେଁ ମିତ୍ର ଓ ବରୁଣଙ୍କର ସାଧାରଣ ପୁତ୍ର । ୫ ।

ଉର୍ବଶୀଙ୍କୁ ଦେଖି ମିତ୍ର ଓ ବରୁଣଙ୍କର ବୀର୍ଯ୍ୟ ସ୍ଖଳିତ ହେଲା, ତାହା ସେମାନେ ଗୋଟିଏ କୁମ୍ଭରେ ନିକ୍ଷେପ କରିଥିଲେ । ମିତ୍ର ତାହାଙ୍କର ପତ୍ନୀ ରେବତୀ ଗର୍ଭରେ ତାହା ନିକ୍ଷେପ କରନ୍ତେ, ଉତ୍ସର୍ଗ, ଅରିଷ୍ଟ ଓ ପିପ୍ପଳ ନାମକ ତିନି ପୁତ୍ର ଜନ୍ମିଥିଲେ । ୬ ।

ହେ ବତ୍ସ ପରୀକ୍ଷିତ ! ସ୍ୱର୍ଗରାଜ ଇନ୍ଦ୍ର ଶଚୀଦେବୀଙ୍କ ଗର୍ଭରେ ଜୟନ୍ତ, ଋଷଭ, ମୀଢୁଷ ନାମକ ତିନିପୁତ୍ର ଉତ୍ପାଦନ କରିଥିଲେ । ୭ ।

ଯେ ମାୟା ପ୍ରଭାବରେ ବାମନ ମୂର୍ତ୍ତି ଧାରଣ କରିଥିଲେ, ସେହି ଭଗବାନ୍ ଉରୁକ୍ରମ ଦେବଙ୍କର କୀର୍ତ୍ତି ନାମ୍ନୀ ପତ୍ନୀ ଗର୍ଭରେ ବୃହତ୍ଶୋକ ନାମକ ଗୋଟିଏ ପୁତ୍ର ଜନ୍ମିଥିଲା । ସେହି ବୃହତ୍ଶୋକଙ୍କର ସୌଭଗ ପ୍ରଭୃତି କେତେଗୁଡ଼ିଏ ପୁତ୍ର ଜନ୍ମିଥିଲେ । ୮ ।

---

ବିଧାତାର ଯେ କ୍ରିୟା ପତ୍ନୀ
ତହୁଁ ଜନ୍ମିଲେ ପଞ୍ଚଅଗ୍ନି
ବରୁଣ ଭାର୍ଯ୍ୟା ଚରଷଣୀ
ତାହାର ତହୁଁ ଭୃଗୁ ଜନ୍ମି । ୪ ।
ବାଲ୍ମୀକି ମହା ଯୋଗେଶ୍ୱର
ବଲ୍ମୀରୁ ଜାତ ତାହାଙ୍କର

ଅଗସ୍ତି ବଶିଷ୍ଠ ବ୍ରାହ୍ମଣ
କୁମ୍ଭରୁ ତାହାଙ୍କର ଜନ୍ମ
ରେବତୀ ମିତ୍ରୁଁ ପୁତ୍ର ଜାତ
ପିପ୍ପଳ ଉତ୍ସର୍ଗ ଅରିଷ୍ଟ । ୫,୬ ।
ପୌଲୋମୀ ଇନ୍ଦ୍ର ନିଜ ନାରୀ
ତିନି ତନୟ ତାହାଙ୍କର

ଜୟନ୍ତ ଋଷଭ କୁମର
ମୀଢୁଷ ଶୁଣ ନୃପବର । ୭ ।
ଉରୁକ୍ରମ ମାୟାବାମନ
ତାହାଙ୍କ ପତ୍ନୀ କୀର୍ତ୍ତିନାମ
ସୌଭଗ ଆଦି ତାହାଙ୍କର
କୁମର ହୋଇଲେ ଅପାର । ୮ ।

ତତ୍‌କର୍ମଗୁଣବୀର୍ଯ୍ୟାଣି କାଶ୍ୟପସ୍ୟ ମହାତ୍ମନଃ ।
ପଶ୍ଚାଦ୍‌ବକ୍ଷ୍ୟାମହେଽଦିତ୍ୟାଂ ଯଥୈବାବତତାର ହ । ୯ ।
ଅଥ କଶ୍ୟପଦାୟାଦାନ୍ ଦୈତେୟାନ୍ କୀର୍ତ୍ତୟାମି ତେ ।
ଯତ୍ର ଭାଗବତଃ ଶ୍ରୀମାନ୍ ପ୍ରହ୍ଲାଦୋ ବଲିରେବ ଚ । ୧୦ ।
ଦିତେର୍ଦ୍ୱାବେବ ଦାୟାଦୌ ଦୈତ୍ୟଦାନବବନ୍ଦିତୌ ।
ହିରଣ୍ୟକଶିପୁର୍ନାମ ହିରଣ୍ୟାକ୍ଷଶ୍ଚ କୀର୍ତ୍ତିତୌ । ୧୧ ।
ହିରଣ୍ୟକଶିପୋର୍ଭାର୍ଯ୍ୟା କୟାଧୁର୍ନାମ ଦାନବୀ ।
ଜମ୍ଭସ୍ୟ ତନୟା ସା ତୁ ସୁଷୁବେ ଚତୁରଃ ସୁତାନ୍ । ୧୨ ।
ସଂହ୍ରାଦଂ ପ୍ରାଗନୁହ୍ରାଦଂ ହ୍ରାଦଂ ପ୍ରହ୍ରାଦମେବ ଚ ।
ତତ୍‌ସ୍ୱସା ସିଂହିକା ନାମ ରାହୁଂ ବିପ୍ରଚିତୋଽଗ୍ରହୀତ୍ । ୧୩ ।

---

ସେହି ମହାତ୍ମା କଶ୍ୟପ ନନ୍ଦନ ଉରୁକ୍ରମ ଯେପରି ଅଦିତୀଙ୍କ ଗର୍ଭରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ତାହାଙ୍କର ପ୍ରସିଦ୍ଧ କର୍ମମାନ ଏବଂ ଗାରଦ୍ଧ ଆଦି ପରେ ବର୍ଣ୍ଣିତ ହେବ । ୯ । ( ଅଷ୍ଟମ ସ୍କନ୍ଧ ଦେଖ )

ତଦନନ୍ତର ତୁମ୍ଭ ନିକଟରେ କଶ୍ୟପଙ୍କର ଦିତି ନାମ୍ନୀ ପତ୍ନୀଙ୍କର ସନ୍ତାନ ସନ୍ତତି ଓ ପୁତ୍ରପୌତ୍ରାଦି ଓ ପରମ ଭଗବଦ୍‌ଭକ୍ତ କୀର୍ତ୍ତିମାନ ପ୍ରହ୍ଲାଦଙ୍କ ବିଷୟ କହିବି । ୧୦ ।

ଦିତିଙ୍କ ଗର୍ଭରେ ହିରଣ୍ୟକଶ୍ୟପୁ ଓ ହିରଣ୍ୟାକ୍ଷ ନାମକ ଦୁଇପୁତ୍ର ଜନ୍ମିଥିଲେ, ପୂର୍ବେ ଏମାନଙ୍କ କଥା ବର୍ଣ୍ଣିତ ହୋଇଅଛି, ଏମାନେ ଦୈତ୍ୟ ଓ ଦାନବ ସମ୍ପ୍ରଦାୟରେ ମଧ୍ୟ ପ୍ରଧାନ ଥିଲେ । ୧୧ ।

ଜମ୍ଭାସୁର କନ୍ୟା କୟାଧୁ ନାମ୍ନୀ ଦାନବୀ ହିରଣ୍ୟକଶ୍ୟପୁଙ୍କୁ ବିବାହ କରିଥିଲେ । ସେହି ଦାନବୀ ଚାରିପୁତ୍ର ପ୍ରସବ କରିଥିଲେ । ୧୨ ।

ସଂହ୍ରାଦ, ଅନୁହ୍ଲାଦ, ହ୍ରାଦ ଓ ପ୍ରହ୍ଲାଦ ଏହି ଚାରିପୁତ୍ର, ଏମାନଙ୍କର ଭଗିନୀ ସିଂହିକା । ସେ ତାହାଙ୍କର ପତି ବିପ୍ରଚିତ୍ତି ନାମକ ଅସୁର ଔରସରେ ରାହୁନାମକ ଗୋଟିଏ ପୁତ୍ର ପ୍ରସବ କରିଥିଲେ ।୧୩।

---

କଶ୍ୟପ ସୁତ ଯେ ବାମନ
ତାହାଙ୍କ ବୀର୍ଯ୍ୟ କର୍ମ ଗୁଣ
ଅଦିତି ଗର୍ଭେ ତାହାଙ୍କର
ଯେମନ୍ତ ହେଲ ଅବତାର
ଏ ଯେ ସକଳ ନୃପମଣି
ପଛେ କହିବା ପରମାଣି । ୯ ।
କଶ୍ୟପ ବଂଶ ଯେ ଦଇତ
ବଳି ପ୍ରହ୍ଲାଦ ଭାଗବତ

ଅଶେଷ ତାହାଙ୍କ ଚରିତ
କହିବା ଶୁଣ ଏକ ଚିତ୍ତ । ୧୦ ।
ଦିତିର ବେନି ଯେ ନନ୍ଦନ
ଦୈତ୍ୟ ଦାନବଙ୍କ ବନ୍ଦନ
ହିରଣାକ୍ଷ ନାମ ତାହାର
ହିରଣ୍ୟକଶିପୁ ଅପର । ୧୧ ।
ହିରଣ୍ୟ କଶିପୁ ଯେ ବୀର
କୟାଧୁ ନାମେ ପତ୍ନୀ ତାର

ଜମ୍ଭର କନ୍ୟା ସେ ଯୁଗତେ
ପ୍ରସବ କଲା ଚାରି ସୁତେ । ୧୨ ।
ସଂହ୍ରାଦ ଅନୁହ୍ରାଦ ଆର
ହ୍ରାଦ ପ୍ରହ୍ରାଦ ଏ ଚତୁର
ଏକ ଭଉଣୀ ତାହାଙ୍କର
ସିଂହିକା ନାମଟି ଯାହାର
ରାହୁ ଯେ ତାହାର କୁମର
ଲୋକରେ ଖ୍ୟାତ ଏ ଅସୁର ।୧୩

ଶିରୋଽହରଦ୍‌ଯସ୍ୟ ହରିଶ୍ଚକ୍ରେଣ ପିବତୋଽମୃତମ୍ ।
ସଂହ୍ରାଦସ୍ୟ କୃତିର୍ଭାର୍ଯ୍ୟାସୂତ ପଞ୍ଚଜନଂ ତତଃ । ୧୪ ।
ହ୍ରାଦସ୍ୟ ଧମନିର୍ଭାର୍ଯ୍ୟାସୂତ ବାତାପିମିଲ୍ୱଲମ୍ ।
ଯୋଽଗସ୍ତ୍ୟାୟ ତ୍ୱତିଥୟେ ପେଚେ ବାତାପିମିଲ୍ୱଲଃ । ୧୫ ।
ଅନୁହ୍ରାଦସ୍ୟ ସୂର୍ମ୍ୟାୟାଂ ବାଷ୍କଲୋ ମହିଷସ୍ତଥା ।
ବିରୋଚନସ୍ତୁ ପ୍ରାହ୍ଲାଦିର୍ଦେବ୍ୟାଂ ତସ୍ୟାଭବଦ୍‌ବଲିଃ । ୧୬ ।
ବାଣଜ୍ୟେଷ୍ଠଂ ପୁତ୍ରଶତମଶନାୟାଂ ତତୋଽଭବତ୍ ।
ତସ୍ୟାନୁଭାବଂ ସୁଶ୍ଳୋକ୍ୟଂ ପଶ୍ଚାଦେବାଭିଧାସ୍ୟତେ । ୧୭ ।
ବାଣ ଆରାଧ୍ୟ ଗିରିଶଂ ଲେଭେ ତଦ୍‌ଗଣମୁଖ୍ୟତାମ୍ ।
ଯତ୍ପାର୍ଶ୍ୱେ ଭଗବାନାସ୍ତେ ହ୍ୟଦ୍ୟାପି ପୁରପାଲକଃ । ୧୮ ।

---

ରାହୁ ଅମୃତ ପାନକରିବାକୁ ପ୍ରବୃତ୍ତ ହୁଅନ୍ତେ ଶ୍ରୀହରି ସୁଦର୍ଶନ ଚକ୍ରରେ ତାହାର ମସ୍ତକ ଛେଦନ କରିଥିଲେ । ସଂହ୍ରାଦଙ୍କର ପତ୍ନୀ କୃତି, ପଞ୍ଚଜନ ନାମକ ଗୋଟିଏ ପୁତ୍ର ପ୍ରସବ କରିଥିଲେ । ୧୪ ।

ହ୍ରାଦଙ୍କର ପତ୍ନୀ ଧମନୀ ବାତାପି ଓ ଇଲ୍ୱଲ ନାମକ ଦୁଇପୁତ୍ର ପ୍ରସବ କରିଥିଲେ, ଏହି ଇଲ୍ୱଲ ତାହାଙ୍କର ଅତିଥି ଅଗସ୍ତ୍ୟଙ୍କ ନିମିତ୍ତ ବାତାପିକୁ ପାକ କରିଥିଲେ । ୧୫ ।

ଅନୁହ୍ରାଦଙ୍କର ପତ୍ନୀ ସୂର୍ମ୍ୟା, ତାହାଙ୍କ ଗର୍ଭରେ ବାଷ୍କଳ ଓ ମହିଷ ନାମକ ଦୁଇପୁତ୍ର ଜାତ ହୋଇଥିଲେ । ପ୍ରହ୍ଲାଦଙ୍କର ପୁତ୍ର ବିରୋଚନ, ତାହାଙ୍କର ଦେବୀ ନାମ୍ନୀ ଭାର୍ଯ୍ୟା ଗର୍ଭରେ ବଳି ନାମକ ପୁତ୍ର ଜନ୍ମିଥିଲେ । ୧୬ ।

ବଳୀଙ୍କର ଭାର୍ଯ୍ୟା ଅଶନା, ତାହାଙ୍କ ଗର୍ଭରୁ ବାଣ ପ୍ରଭୃତି ଶତପୁତ୍ର ଜନ୍ମିଥିଲେ, ସେହି ବଳୀଙ୍କର ପ୍ରଶସ୍ତି ପରେ ବର୍ଣ୍ଣିତ ହେବ । ୧୭ ।

ବାଣ ଶିବଙ୍କୁ ଆରାଧନା କରି ତାହାଙ୍କର ଗଣମାନଙ୍କ ମଧ୍ୟରେ ପ୍ରାଧାନ୍ୟ ଲାଭ କରିଥିଲେ । ଅଦ୍ୟାପି ଭଗବାନ୍ ଶିବ ତାହାର ପୁରରକ୍ଷକ ରୂପେ ଅବସ୍ଥାନ କରୁଅଛନ୍ତି । ୧୮ ।

---

ଅମୃତ ପାନେ ଚକ୍ରଧର
ଚକ୍ରେ ଛେଦିଲେ ତାର ଶିର
ସଂହ୍ରାଦ ପତ୍ନୀ କୃତି ନାମ
ସୁତ ଯାହାର ପଞ୍ଚଜନ । ୧୪ ।
ଧମନୀ ପତ୍ନୀ ଯେ ହ୍ରାଦର
ବାତାପି ଇଲ୍ୱଳ କୁମର
ଅଗସ୍ତି ଶ୍ରେଷ୍ଠେ ମେଷ ରୂପେ
ଓଦ ଭକ୍ଷ ହୋଇଲ ସ୍ୱରୂପେ । ୧୫ ।

ଅନୁ ହ୍ରାଦର ସୂର୍ମ୍ୟାପତ୍ନୀ
ବାଷ୍କଳ ମହିଷ ଏ ବେନି
ପ୍ରହ୍ଲାଦ ସୁତ ବିରୋଚନ
ଦେବୀ ତାହାର ପତ୍ନୀ ନାମ
ତାହାର ବଳୀ ଯେ କୁମର
ତ୍ରୈଲୋକ୍ୟେବିଖ୍ୟାତସେଶ୍ୱର । ୧୬
ଅଶନାଠାରେ ହେଲ ତାର
ବାଣ ଆଦି ଶତ କୁମର

ବାଣର ପ୍ରତାପ ଯେ ତେଜ
ପଛେ କହିବା ମହାରାଜ । ୧୭ ।
ବାଣ ଆରାଧି ଈଶ୍ୱରଙ୍କୁ
ପାଇଲ ବାଣ ପ୍ରଭୁତ୍ୱକୁ
ପୁରପାଳକ ହୋଇ ହର
ଅଦ୍ୟାପି ଅଛନ୍ତି ଯାହାର । ୧୮ ।

ମରୁତଶ୍ଚ ଦତେଃ ପୁତ୍ରାଶ୍ଚତ୍ୱାରିଂଶନ୍ନବାଧିକାଃ ।
ତ ଆସନ୍ନପ୍ରଜାଃ ସର୍ବେ ନୀତା ଇନ୍ଦ୍ରେଣ ସାତ୍ମତାମ୍ । ୧୯ ।

ଶ୍ରୀରାଜୋବାଚ ।

କଥଂ ତ ଆସୁରଂ ଭାବମପୋହ୍ୟୌତ୍ପତ୍ତିକଂ ଗୁରୋ ।
ଇନ୍ଦ୍ରେଣ ପ୍ରାପିତାଃ ସାତ୍ମ୍ୟଂ କିଂ ତତ୍ ସାଧୁ କୃତଂ ହି ତୈଃ । ୨୦ ।
ଇମେ ଶ୍ରଦ୍ଦଧତେ ବ୍ରହ୍ମନ୍ନୃଷୟୋ ହି ମୟା ସହ ।
ପରିଜ୍ଞାନାୟ ଭଗବଂସ୍ତନ୍ନୋ ବ୍ୟାଖ୍ୟାତୁମର୍ହସି । ୨୧ ।

ଶ୍ରୀସୂତ ଉବାଚ ।

ତଦ୍ୱିଷ୍ଣୁରାତସ୍ୟ ସ ବାଦରାୟଣିର୍ବଚୋ ନିଶମ୍ୟାଦୃତମଳ୍ପମର୍ଥବତ୍ ।
ସଭାଜୟନ୍ ସଂନିଭୃତେନ ଚେତସା ଜଗାଦ ସତ୍ରାୟଣ ସର୍ବଦର୍ଶନଃ । ୨୨ ।

---

ଅଣଚାଶ ପବନ ମଧ୍ୟ ଦତିଙ୍କର ପୁତ୍ର, ସେମାନେ ସମସ୍ତେ ନିଃସନ୍ତାନ ଥିଲେ, ଦେବରାଜ ଇନ୍ଦ୍ର ସେମାନଙ୍କୁ ଦେବତ୍ୱପ୍ରାପ୍ତି କରାଇଥିଲେ । ୧୯ ।

ଶ୍ରୀରାଜାପରୀକ୍ଷିତ କହିଲେ :—

ହେ ଗୁରୁଦେବ ! ଇନ୍ଦ୍ର ମରୁତ୍‌ଗଣଙ୍କର ଜନ୍ମଲବ୍ଧ ଆସୁରୀଭାବ ଦୂରକରି ସେମାନେ କି ସତ୍‌କାର୍ଯ୍ୟ କରିଥିବାରୁ ସେମାନଙ୍କୁ ଦେବତ୍ୱ ପ୍ରାପ୍ତି କରାଇଥିଲେ ? । ୨୦ ।

ହେ ଭଗବନ୍ ! ମୋର ଏହି ମରୁତ୍‌ଗଣଙ୍କ ବୃତ୍ତାନ୍ତ ଜାଣିବାକୁ ବିଶେଷ ଆଗ୍ରହ ଜନ୍ମିଅଛି, ତାହା ମୋ ନିକଟରେ ବର୍ଣ୍ଣନା କର । ୨୧ ।

ଶ୍ରୀସୂତ କହିଲେ :—

ହେ ଯଜ୍ଞ ପରାୟଣ ଶୌନକ ! ବ୍ୟାସ ନନ୍ଦନ ଶୁକଦେବ ରାଜା ପରୀକ୍ଷିତଙ୍କ ନିକଟରେ ଶ୍ରଦ୍ଧା ସହକାରେ ଯେଉଁ ସଂକ୍ଷିପ୍ତ ଅଥଚ ସାରଗର୍ଭ ବାକ୍ୟ ପ୍ରକାଶ କଲେ ରାଜା ତାହା ଏକାଗ୍ରଚିତ୍ତରେ ଶ୍ରବଣ କରିଥିଲେ । ୨୨ ।

---

ଦତିର ତନୟ ମରୁତ
ଚତ୍ୱାରିଂଶ ନବ ଅଧିକ
ଜନ୍ମ ନିକଟେ ବଜ୍ର ହାଣି
ଦେବତା କଲେ ବଜ୍ରପାଣି ।୧୯।

ଶ୍ରୀ ରାଜୋବାଚ—

କେମନ୍ତେ ଅସୁର ଭାବକୁ
ଛାଡ଼ିଲେ ନିଜ ସ୍ୱଭାବକୁ

ଇନ୍ଦ୍ରରେ ସପକ୍ଷ ହୋଇଲେ
କି ସାଧୁ କର୍ମ ସେହି କଲେ
ଶ୍ରଦ୍ଧା ଅଧିକ ଏଣୁ ମୋର
ଶୁଣିବି ବୋଲି ମୁନିବର
ଆମ୍ଭର ଜ୍ଞାନ ଉଦେ ପାଇଁ
ବିସ୍ତାରିକହିବା ଗୋସାଇଁ ।୨୦।୨୧

ଶ୍ରୀ ସୂତଉବାଚ—

ଭକ୍ତି ଚିତ୍ତରେ ରାଜାବାଣୀ
ଶୁଣିଣ ସେ ବାଦରାୟଣୀ
ରାଜାକୁ ଧନ୍ୟ ଧନ୍ୟ କରି
ଚଞ୍ଚଳ ଚିତ୍ତ ସ୍ଥିର କରି
ରାଜାର ମୁଖକୁ ସେ ଚାହିଁ
ବୋଲନ୍ତି ଶୁଣ ମନ ଦେଇ ।୨୨।

ଶ୍ରୀଶୁକ ଉବାଚ । ହତପୁତ୍ରା ଦିତିଃ ଶକ୍ରପାର୍ଷ୍ଣିଗ୍ରାହେଣ ବିଷ୍ଣୁନା ।
ମନ୍ୟୁନା ଶୋକଦୀପ୍ତେନ ଜ୍ୱଲନ୍ତୀ ପର୍ଯ୍ୟଚିନ୍ତୟତ୍ । ୨୩ ।
କଦା ନୁ ଭ୍ରାତୃହନ୍ତାରମିନ୍ଦ୍ରିୟାରାମମୁଲ୍ୱଣମ୍ ।
ଅକ୍ଲିନ୍ନହୃଦୟଂ ପାପଂ ଘାତୟିତ୍ୱା ଶୟେ ସୁଖମ୍ । ୨୪ ।
କୃମିବିଡ୍‌ଭସ୍ମସଂଜ୍ଞାସୀଦ୍ ଯସ୍ୟେଶାଭିହିତସ୍ୟ ଚ ।
ଭୂତଧ୍ରୁକ୍ ତତ୍‌କୃତେ ସ୍ୱାର୍ଥଂ କିଂ ବେଦ ନିରୟୋ ଯତଃ । ୨୫ ।
ଆଶାସାନସ୍ୟ ତସ୍ୟେଦଂ ଧ୍ରୁବମୁନ୍ନଦ୍ଧଚେତସଃ ।
ମଦଶୋଷକ ଇନ୍ଦ୍ରସ୍ୟ ଭୂୟାଦ୍ ଯେନ ସୁତୋ ହି ମେ । ୨୬ ।
ଇତି ଭାବେନ ସା ଭର୍ତ୍ତୁରାଚଚାରାସକୃତ୍ ପ୍ରିୟମ୍ ।
ଶୁଶ୍ରୂଷୟାନୁରାଗେଣ ପ୍ରଶ୍ରୟେଣ ଦମେନ ଚ । ୨୭ ।

ଶ୍ରୀଶୁକଦେବ କହିଲେ :—

ପରେଶ ଭାବରେ ବିଷ୍ଣୁଙ୍କର ସହାୟତା ପ୍ରାପ୍ତ ଇନ୍ଦ୍ର ଦିତିଙ୍କର ପୁତ୍ରମାନଙ୍କୁ ବଧ କରନ୍ତେ ଶୋକଦୀପ୍ତ ଓ କ୍ରୋଧରେ ପ୍ରଜ୍ୱଳିତ ହୋଇ ଦିତି ଭାବିଲେ । ୨୩ ।

ଭ୍ରାତୃହତ୍ୟା କାରୀ ଇନ୍ଦ୍ରିୟ ପରାୟଣ, କୁଟିଳ ପ୍ରକୃତି, କଠିଣ ହୃଦୟ ପାପିଷ୍ଠ ଇନ୍ଦ୍ରଙ୍କୁ ହତ୍ୟାକରି କେବେ ନିଶ୍ଚିନ୍ତଭାବରେ ଶୟନ କରିବି । ୨୪ ।

ଯେଉଁ ଦେହ ପ୍ରଭୁ ବୋଲି କଥିତ ହେଲେ ମଧ୍ୟ କୃମି, ବିଷ୍ଠା, ଭସ୍ମ ନାମରେ ପରିଣତ ହୁଏ, ସେହି ଦେହ ନିମିତ୍ତ ଯେଉଁ ବ୍ୟକ୍ତି ପ୍ରାଣୀ ହତ୍ୟା କରେ ସେ କି ସ୍ୱାର୍ଥ ବୁଝେ ? ପ୍ରାଣୀହତ୍ୟା ଦ୍ୱାରା ନରକ ପ୍ରାପ୍ତି ହୋଇଥାଏ । ୨୫ ।

ଏହି ଦେହ ପ୍ରଭୃତି ଅସାର ବସ୍ତୁ ଗୁଡ଼ିକୁ ଚିରସ୍ଥାୟୀ ବୋଲି ମନେକରି ଇନ୍ଦ୍ରଙ୍କର ଚିତ୍ତ ଅତ୍ୟନ୍ତ ଉଚ୍ଛୃଙ୍ଖଳ ହୋଇ ଉଠିଥିଲା, ତାହାଙ୍କର ଗର୍ବ ନଷ୍ଟ କରିବା ପାଇଁ ଗୋଟିଏ ପୁତ୍ର ହେବ, ଏହି ଅଭିପ୍ରାୟରେ ଦିତି ଶୁଶ୍ରୂଷା, ଅନୁରାଗ, ବିନୟ ଓ ଇନ୍ଦ୍ରିୟ ସଂଯମ ଗୁଣରେ ପୁନଃପୁନଃ ନିଜପତି କଶ୍ୟପଙ୍କର ପ୍ରିୟ ଆଚରଣ କରିଥିଲେ । ୨୬,୨୭ ।

ଶ୍ରୀ ଶୁକଉବାଚ—
ଇନ୍ଦ୍ରେ ହେବାରୁ ପୁତ୍ରହତ
ଦିତି ହୋଇଲେ ମୋହଗତ
କ୍ରୋଧ ଶୋକରେ କରି ଜଳି
ଚିନ୍ତା କରଇ ମନେ ଭଲି ।୨୩।
ଅନେକ ଭ୍ରାତୃହନ୍ତା ଏହି
କେବେ ମରିବ ପାପ ଦେହୀ
କୁଟିଳ ହୃଦୟ ଏ ଜନ
ଏ ମଲେ ସୁଖେ ମୋ ଶୟନ ।୨୪।
କୃମି ବିଷ୍ଠା ଭସ୍ମ-ସମାନେ
ଯେ ଦେହ ହୋଏ ଅବସାନେ
ସେ ଦେହ ପାଇଁ ପ୍ରାଣୀ ନାଶ
କରି ନରକେ ପରବଶ
ଯେ ପ୍ରାଣୀ ଆତ୍ମାକୁ ଜାଣଇ
ସେ ପାପେ ପ୍ରବର୍ତ୍ତଇ ନାହିଁ ।୨୫।
ଏ ଯେ ପାପିଷ୍ଠ ମୂଢ଼ମତି
ଏହାର ନାହିଁ ଧର୍ମମତି
କେମନ୍ତେ ପୁତ୍ର ହେବ ଜାତ
ଇନ୍ଦ୍ରକୁ କରିବ ନିପାତ ।୨୬।
ଏହା ମୁଁ କରିବି ବିଧାନେ
ଏମନ୍ତ ବିଚାରିଣ ମନେ
ଭର୍ତ୍ତାର ନିକଟେ ମିଳିଲେ
ପ୍ରୀତି ଭାବକୁ ଆଚରିଲେ
ନାନାପ୍ରକାରେ ସେବା କରି
ବିନୟ ଭାବକୁ ଆଚରି

ଭକ୍ତ୍ୟା ପରମୟା ରାଜନ୍ ମନୋଜ୍ଞୈର୍ବଲ୍ଗୁଭାଷିତୈଃ ।
ମନୋ ଜଗ୍ରାହ ଭାବଜ୍ଞା ସସ୍ମିତାପାଙ୍ଗବୀକ୍ଷଣୈଃ । ୨୮ ।
ଏବଂ ସ୍ତ୍ରିୟା ଜଡ଼ୀଭୂତୋ ବିଦ୍ୱାନପି ମନୋଜ୍ଞୟା ।
ବାଢ଼ମିତ୍ୟାହ ବିବଶୋ ନ ତଚ୍ଚିତ୍ରଂ ହି ଯୋଷିତି । ୨୯ ।
ବିଲୋକ୍ୟୈକାନ୍ତଭୂତାନି ଭୂତାନ୍ୟାଦୌ ପ୍ରଜାପତିଃ ।
ସ୍ତ୍ରିୟଂ ଚକ୍ରେ ସ୍ୱଦେହାର୍ଦ୍ଧଂ ଯୟା ପୁଂସାଂ ମତିର୍ହୃତା । ୩୦ ।
ଏବଂ ଶୁଶ୍ରୂଷିତସ୍ତାତ ଭଗବାନ୍ କଶ୍ୟପଃ ସ୍ତ୍ରିୟା ।
ପ୍ରହସ୍ୟ ପରମପ୍ରୀତୋ ଦିତିମାହାଭିନନ୍ଦ୍ୟ ଚ । ୩୧ ।

---

ହେ ରାଜନ୍ ପରୀକ୍ଷିତ ! ଦିତି ହୃଦୟର ଭାବ ଉତ୍ତମରୂପେ ବୁଝି ପାରୁଥିଲେ, ସେ ପରମଭକ୍ତି ମନୋହର ପ୍ରିୟବାକ୍ୟ ଏବଂ ମୃଦୁ ହାସ୍ୟ ସହକାରେ କଟାକ୍ଷ ନିକ୍ଷେପ ଆଦିଦ୍ୱାରା କଶ୍ୟପଙ୍କର ମନ ଆକୃଷ୍ଟ କରିଥିଲେ । ୨୮ ।

କଶ୍ୟପ ଅତ୍ୟନ୍ତ ଜ୍ଞାନୀ ହେଲେ ମଧ୍ୟ ଦିତି ତାହାଙ୍କୁ ଏପରି ମୋହିତ କରିଥିଲେ ଯେ, ସେ ସ୍ତ୍ରୀ ବଶରେ କହିଲେ, ମୁଁ ଅବଶ୍ୟ ତୁମ୍ଭର ପ୍ରାର୍ଥନା ପୂରଣ କରିବି । ସ୍ତ୍ରୀ ବଶରେ ଏପରି କହିବା ଆଶ୍ଚର୍ଯ୍ୟ ନୁହେଁ । ୨୯ ।

ପ୍ରଜାପତି ବ୍ରହ୍ମା ସୃଷ୍ଟି ଆରମ୍ଭରେ ପ୍ରାଣୀବର୍ଗଙ୍କୁ ଆସକ୍ତି ହୀନ ଦେଖି ଯୌନଧର୍ମରେ ସୃଷ୍ଟି ଉଦ୍ଭାଣ କରିବା ଇଚ୍ଛାରେ ନିଜ ଦେହର ଅର୍ଦ୍ଧାଂଶକୁ ସ୍ତ୍ରୀରୂପେ ପରିଣତ କରିଥିଲେ, ଯେ ସ୍ତ୍ରୀ ସମ୍ପ୍ରଦାୟର କର୍ତ୍ତୃକ ପୁରୁଷମାନଙ୍କ ବୁଦ୍ଧି ଅପହୃତ ହୋଇଥାଏ । ୩୦ ।

ଭଗବାନ୍ କଶ୍ୟପ ଭାର୍ଯ୍ୟା ଦିତିର ଶୁଶ୍ରୂଷାରେ ପରମ ପ୍ରୀତ ହୋଇ ସହାସ୍ୟ ବଦନରେ ଦିତିଙ୍କୁ ପ୍ରଶଂସା କରି କହିଥିଲେ । ୩୧ ।

---

ପରମ ପ୍ରୀତିଯୁକ୍ତ ହୋଇ
ମନୋଜ୍ଞ ବଚନକୁ କହି
ସସ୍ମିତ ଅପାଙ୍ଗ ଇକ୍ଷଣେ
ସ୍ୱାମୀର ମନ ଆକର୍ଷଣେ । ୨୭, ୨୮
ଏମନ୍ତେ କଶ୍ୟପ ଯେ ମୁନି
ପତ୍ନୀ ବିଷୟେ ଭାବ ଘେନି

ତାହାର ବଶକୁ ପାଇଲେ
ବାଞ୍ଛିତ ଦେବୁଁ ସେ ବୋଇଲେ
ସ୍ତ୍ରୀଙ୍କର ବଶ ହୋଇବାରେ
ବିଚିତ୍ର ନୁହଇ ସଂସାରେ । ୨୯ ।
ଆଦି ସୃଷ୍ଟିରେ ପ୍ରଜାପତି
ପ୍ରାଣିମାନଙ୍କୁ ସର୍ଜ୍ଜିଛନ୍ତି

ପୁରୁଷ ଅର୍ଦ୍ଧଅଙ୍ଗ ନାରୀ
ନରସ୍ୱଭାବ ବଶ କରି । ୩୦ ।
ଦିତିର ହୋଇଣ ସେବିତ
କଶ୍ୟପ, ଶୁଣ ନୃପନାଥ
ହସିଲେ ହସି ପ୍ରୀତ ମନ
ବୋଇଲେ ଦିତିଙ୍କ ବଚନ । ୩୧ ।

ଶ୍ରୀକଶ୍ୟପ ଉବାଚ ।
ବରଂ ବରୟ ବାମୋରୁ ପ୍ରୀତସ୍ତେଽହମନିନ୍ଦିତେ ।
ସ୍ତ୍ରିୟା ଭର୍ତ୍ତରି ସୁପ୍ରୀତେ କଃ କାମ ଇହ ଚାଗମଃ । ୩୨ ।
ପତିରେବ ହି ନାରୀଣାଂ ଦୈବତଂ ପରମଂ ସ୍ମୃତମ୍ ।
ମାନସଃ ସର୍ବଭୂତାନାଂ ବାସୁଦେବଃ ଶ୍ରିୟଃ ପତିଃ । ୩୩ ।
ସ ଏବ ଦେବତାଲିଙ୍ଗୈର୍ନାମରୂପବିକଳ୍ପିତୈଃ ।
ଇଜ୍ୟତେ ଭଗବାନ୍ ପୁଂଭିଃ ସ୍ତ୍ରୀଭିଶ୍ଚ ପତିରୂପଧୃକ୍ । ୩୪ ।
ତସ୍ମାତ୍ ପତିବ୍ରତା ନାର୍ଯ୍ୟଃ ଶ୍ରେୟସ୍କାମାଃ ସୁମଧ୍ୟମେ ।
ଯଜନ୍ତେଽନନ୍ୟଭାବେନ ପତିମାତ୍ମାନମୀଶ୍ୱରମ୍ । ୩୫ ।
ସୋଽହଂ ତ୍ୱୟାର୍ଚ୍ଚିତୋ ଭଦ୍ରେ ଈଦୃଗ୍ଭାବେନ ଭକ୍ତିତଃ ।
ତଂ ତେ ସମ୍ପାଦୟେ କାମମସତୀନାଂ ସୁଦୁର୍ଲ୍ଲଭମ୍ । ୩୬ ।

---

ଶ୍ରୀକଶ୍ୟପ କହିଲେ :—

ହେ ସୁନ୍ଦରି ! ମୁଁ ବଡ଼ ପ୍ରୀତ ହୋଇଅଛି । ତୁମ୍ଭେ ବର ପ୍ରାର୍ଥନା କର । ସଂସାରରେ ସ୍ୱାମୀ ପ୍ରୀତ ହେଲେ ସ୍ତ୍ରୀର କାମ୍ୟ କୌଣସି ପଦାର୍ଥ ଅଲଭ୍ୟ ରହେ ନାହିଁ । ୩୨ ।

ପତି ନାରୀର ପରମଦେବତା । ଲକ୍ଷ୍ମୀପତି ଶ୍ରୀହରି ସର୍ବଭୂତର ଅନ୍ତର୍ଯ୍ୟାମୀରୂପେ ହୃଦୟ ମଧ୍ୟରେ ଅବସ୍ଥାନ କରନ୍ତି, ପୁରୁଷମାନେ ନାନାବିଧ ରୂପ ଓ ନାମ ସମ୍ପନ୍ନ, ବିଭିନ୍ନ ଦେବମୂର୍ତ୍ତିରେ ତାହାଙ୍କ ପୂଜା କରି ଥାଆନ୍ତି, ସ୍ତ୍ରୀ ମାନେ ମଧ୍ୟ ପତିରୂପେ ତାହାଙ୍କର ପୂଜା କରି ଥାଆନ୍ତି । ୩୩,୩୪ ।

ସୁତରାଂ, ହେ ସୁନ୍ଦରି ! ହିତ କାମିନୀ ପତିବ୍ରତା ନାରୀ ଏକାଗ୍ରଚିତ୍ତରେ ପତିଙ୍କୁ ସେବା କରିଥାଏ, ପତିହିଁ ତାହାର ଆତ୍ମା ଏବଂ ଈଶ୍ୱର ପରି । ୩୫ ।

ଭଦ୍ରେ ! ମୁଁ ତୁମ୍ଭର ସେହିପରି, ତୁମ୍ଭେ ଏପରି ଭକ୍ତିଭାବରେ ମୋତେ ସେବା କରିଅଛ । ମୁଁ ତୁମ୍ଭର ସେହି କାମ୍ୟ ବସ୍ତୁ ଅବଶ୍ୟ ପ୍ରଦାନ କରିବି, ଯାହା ଅସତୀମାନଙ୍କ ପକ୍ଷରେ ଅତ୍ୟନ୍ତ ଦୁର୍ଲ୍ଲଭ ।୩୬।

---

ଶ୍ରୀ କଶ୍ୟପଉବାଚ—
ବର ତୁ ମାଗ ଯେ ମନରେ
ପ୍ରସନ୍ନ ହୋଇଲି ତୋହରେ
ଭର୍ତ୍ତା ପ୍ରସନ୍ନେ ସ୍ତ୍ରୀଙ୍କର
ଦୁର୍ଲ୍ଲଭ ଅଛି କି ସଂସାର
ସ୍ୱାମୀ ଦେବତା ନାରୀଙ୍କର
ବେଦେ କହନ୍ତି ଧର୍ମ୍ମସାର
ସର୍ବଭୂତରେ ଆତ୍ମା ହୋଇ
ଅଛନ୍ତି ପ୍ରଭୁ ଭବତ୍ରାହୀ
ସେ ପ୍ରଭୁ ନାନା ଦେବମତେ
ରୂପକୁ ଧରିଛି ଜଗତେ
ଗୋବିନ୍ଦ ପୂଜନ୍ତି ଯେ ଜନେ
ନାନା-ଯଜ୍ଞ ବେଦ-ବିଧାନେ
ପତିବ୍ରତା ଯେ ନାରୀମାନେ
ଆତ୍ମାପ୍ରିୟଙ୍କୁ ଚିନ୍ତି ମନେ
ଅନ୍ୟୋନ୍ୟ ଭାବେ ଏ ଜଗତେ
ସ୍ୱାମୀ ପୂଜନ୍ତି ବେଦମତେ
ସ୍ୱଭାବେ ମୁହିଁ ହେ ସୁନ୍ଦରି !
ଅର୍ଚ୍ଚିତ ହୋଇ ତୋରେ କରି
ଯହିଁ ଅଭିଳାଷ ତୋହର
ପୂର୍ଣ୍ଣ କରିବି କୃଶୋଦର !
ମୁହିଁ ଯେ ତୋତେ ଦେବି ବର
ଦୁର୍ଲ୍ଲଭ ଅନ୍ୟ ସ୍ତ୍ରୀଙ୍କର ।୩୨-୩୬

ଶ୍ରୀଦିତିରୁବାଚ ।

ବରଦୋ ଯଦି ମେ ବ୍ରହ୍ମନ୍ ପୁତ୍ରମିନ୍ଦ୍ରହଣଂ ବୃଣେ ।
ଅମୃତ୍ୟୁଂ ମୃତପୁତ୍ରାହଂ ଯେନ ମେ ଘାତିତୌ ସୁତୌ । ୩୭ ।
ନିଶମ୍ୟ ତଦ୍ବଚୋ ବିପ୍ରୋ ବିମନାଃ ପର୍ଯ୍ୟତପ୍ୟତ ।
ଅହୋ ଅଧର୍ମ୍ମଃ ସୁମହାନଦ୍ୟ ମେ ସମୁପସ୍ଥିତଃ । ୩୮ ।
ଅହୋ ଅର୍ଥେନ୍ଦ୍ରିୟାରାମୋ ଯୋଷିନ୍ମଯ୍ୟେହ ମାୟୟା ।
ଗୃହୀତଚେତାଃ କୃପଣଃ ପତିଷ୍ୟେ ନରକେ ଧ୍ରୁବମ୍ । ୩୯ ।
କୋଽତିକ୍ରମୋଽନୁବର୍ତ୍ତନ୍ତ୍ୟାଃ ସ୍ୱଭାବମିହ ଯୋଷିତଃ ।
ଧିଙ୍ମାଂ ବତାବୁଧଂ ସ୍ୱାର୍ଥେ ଯଦହଂ ତ୍ୱଜିତେନ୍ଦ୍ରିୟଃ । ୪୦ ।

---

ଦିତି କହିଲେ :—

ହେ ମୁନିବର, ଆପଣ ଯଦି ମୋତେ ପ୍ରକୃତରେ ବର ପ୍ରଦାନ କରିବାକୁ ଇଚ୍ଛା କରନ୍ତି ତେବେ 'ଇନ୍ଦ୍ରଙ୍କୁ ମାରିପାରିବ' ମୁଁ ଆପଣଙ୍କୁ ଏପରି ଗୋଟିଏ ପୁତ୍ର ପ୍ରାର୍ଥନା କରୁଅଛି । କାରଣ ଇନ୍ଦ୍ର ମୋର ଦୁଇଟି ପୁତ୍ର ବିଷ୍ଣୁଙ୍କ ଦ୍ୱାରା ବଧ କରାଇ ଅଛି ଏବଂ ମୁଁ ପୁତ୍ର ଶୋକରେ ଆତୁରା । ୩୭ ।

ମୁନିବର କଶ୍ୟପ ଦିତିଙ୍କର ବାକ୍ୟ ଶ୍ରବଣ କରି ଦୁଃଖିତ ଚିତ୍ତରେ ଏପରି ଅନୁତାପ କରିଥିଲେ ସେ ଭାବିଲେ ସମ୍ପ୍ରତି ମୋର ଗୁରୁତର ଅଧର୍ମ ଆସି ଉପସ୍ଥିତ ହେଲା । ୩୮ ।

ଓହୋ ! ମୁଁ ବିଷୟ ଓ ଇନ୍ଦ୍ରିୟ ସୁଖରେ ମଜ୍ଜି ସ୍ତ୍ରୀ ରୂପିଣୀ ମାୟା ଦ୍ୱାରା ମୋର ଚିତ୍ତ ଯେପରି ଅଭିଭୂତ ହୋଇଅଛି, ମୁଁ ବିବେକହୀନ ହୋଇଅଛି, ମୁ ନିଶ୍ଚୟ ନରକଗତି ପ୍ରାପ୍ତ ହେବି । ୩୯ ।

ସ୍ତ୍ରୀ ଜନୋଚିତ ସ୍ୱଭାବ ଅନୁସରଣକାରିଣୀ ଦିତିଙ୍କର ଏଥିରେ ବା ଅପରାଧ କଣ, ସ୍ୱାର୍ଥଜ୍ଞାନ ଶୂନ୍ୟ ମୋତେ ଧିକ । କାରଣ ମୁଁ ଇନ୍ଦ୍ରିୟ ଜୟ କରିପାରି ନାହିଁ । ୪୦ ।

---

ଶ୍ରୀ ଦିତିରୁବାଚ—
ହେ ପ୍ରଭୁ ବର ଯେବେ ଦେବ
ଏକ କୁମର ମୋ ହୋଇବ
ଅମର ହୋଇବ ମୋ ସୁତ
ଇନ୍ଦ୍ରକୁ ମାରିବ ତୁରିତ
ଯେଣୁ ସେ ମୋ ପୁତ୍ରକୁ ମାରିଲା
ପୁତ୍ରଶୋକକୁ ମୋତେ ଦେଲା ।୩୭
ଶୁଣିଣ ତାହାର ବଚନ
କଶ୍ୟପ ହୋଇଲେ ମଉନ
ମନରେ ଗରୁ ତାପଭର
କୋପେ ଚିନ୍ତନ୍ତି ମୁନିବର ।୩୮।
ଆଜ ଏ ଅଧର୍ମ୍ମ ମହତ
ହୋଇଲା ମୋର ଉପଗତ
ସ୍ତ୍ରୀସଙ୍ଗରେ କରି ମୋର ମନ
ହୋଇଲା ମହା ହତଜ୍ଞାନ ।
କଠିନ ଘୋର ନରକରେ
ପଡ଼ିବି ନିଶ୍ଚୟ ଅନ୍ତରେ
ସ୍ତ୍ରୀଙ୍କର କିଅବା ଏ ଦୋଷ
ସ୍ତ୍ରୀଙ୍କ ସ୍ୱଭାବେ ଅବିଶ୍ୱାସ
ଅବୋଧ ମୁହିଁ ଯେ ପାମର
ଧିକହେଉ ଏଜନ୍ମମୋର ।୩୯,୪୦

ଶରତ୍‌ପଦ୍ମୋତ୍ସବଂ ବକ୍ତ୍ରଂ ବଚଶ୍ଚ ଶ୍ରବଣାମୃତମ୍ ।
ହୃଦୟଂ କ୍ଷୁରଧାରାଭଂ ସ୍ତ୍ରୀଣାଂ କୋ ବେଦ ଚେଷ୍ଟିତମ୍ । ୪୧ ।
ନ ହି କଶ୍ଚିତ୍ ପ୍ରିୟଃ ସ୍ତ୍ରୀଣାମଞ୍ଜସା ସ୍ୱାଶିଷାତ୍ମନାମ୍ ।
ପତିଂ ପୁତ୍ରଂ ଭ୍ରାତରଂ ବା ଘ୍ନନ୍ତ୍ୟର୍ଥେ ଘାତୟନ୍ତି ଚ । ୪୨ ।
ପ୍ରତିଶ୍ରୁତଂ ଦଦାମୀତି ବଚସ୍ତନ୍ନ ମୃଷା ଭବେତ୍ ।
ବଧଂ ନାର୍ହତି ଚେନ୍ଦ୍ରୋଽପି ତତ୍ରେଦମୁପକଳ୍ପତେ । ୪୩ ।
ଇତି ସଞ୍ଚିନ୍ତ୍ୟ ଭଗବାନ୍ ମାରୀଚଃ କୁରୁନନ୍ଦନ ।
ଉବାଚ କିଞ୍ଚିତ୍‌କୁପିତ ଆତ୍ମାନଞ୍ଚ ବିଗର୍ହୟନ୍ । ୪୪ ।
ଶ୍ରୀକଶ୍ୟପଉବାଚ । ପୁତ୍ରସ୍ତେ ଭବିତା ଭଦ୍ରେ ଇନ୍ଦ୍ରହା ଦେବବାନ୍ଧବଃ ।
ସମ୍ବତ୍ସରଂ ବ୍ରତମିଦଂ ଯଦ୍ୟଞ୍ଜୋ ଧାରୟିଷ୍ୟସି । ୪୫ ।

---

ସ୍ତ୍ରୀ ଲୋକମାନଙ୍କର ମୁଖ ଶରତ୍‌କାଳୀନ ପଦ୍ମତୁଲ୍ୟ ପ୍ରଫୁଲ୍ଲ, ବାକ୍ୟ ଅତ୍ୟନ୍ତ ସ୍ମୃତ ମଧୁର ମାତ୍ର ହୃଦୟ କ୍ଷୁରପର ତୀବ୍ର, ସୁତରାଂ ସେମାନଙ୍କର ଆଚରଣ ବୁଝିବା କାହାର ସାଧ୍ୟ । ୪୧ ।

ସ୍ୱାର୍ଥ ଲୋଭରେ ସ୍ତ୍ରୀଲୋକମାନଙ୍କୁ ଆତ୍ମତୁଲ୍ୟ ପ୍ରିୟବୋଲି ମନେ କରାଯାଏ ସତ୍ୟ, କିନ୍ତୁ କେହି ହେଁ ପ୍ରକୃତ ସେମାନଙ୍କର ପ୍ରିୟ ହୋଇପାରନ୍ତି ନାହିଁ । ସେମାନେ ସ୍ୱାର୍ଥ ସିଦ୍ଧି ଲାଗି ସ୍ୱାମି, ପୁତ୍ର, ଭ୍ରାତା ପ୍ରଭୃତି ହତ୍ୟା କରାଇ ପାରନ୍ତି, କିମ୍ବା ନିଜେ ହତ୍ୟା କରି ପାରନ୍ତି । ୪୨ ।

ମୁଁ ଏଡଙ୍କ ନିକଟରେ ତାହାର ଇଚ୍ଛାନୁରୂପ ବର ଦେବ ବୋଲି ପ୍ରତିଶ୍ରୁତ ହୋଇଅଛି । ମୋର ବାକ୍ୟ ମିଥ୍ୟା ହୋଇ ନ ପାରେ । ଏଣେ ଇନ୍ଦ୍ରଙ୍କୁ ବଧ କରିବା ଉଚିତ ନୁହେଁ । ଅତଏବ ଏ ବିଷୟରେ ଏହିପରି କରିବା ସଙ୍ଗତ । ୪୩ ।

ହେ କୁରୁନନ୍ଦନ ! ଭଗବାନ୍ କଶ୍ୟପ ଏହିପରି ଚିନ୍ତାକରି କିଞ୍ଚିତ କୁପିତ ହୋଇ ନିଜକୁ ଧିକ୍କାର କରିଥିଲେ । ୪୪ ।

ଶ୍ରୀକଶ୍ୟପ କହିଲେ :—

ହେ ଭଦ୍ରେ ! ତୁମ୍ଭେ ଯଦି ବର୍ଷେ କାଳ ବ୍ରତ ଧାରଣ କରିବ, ତେବେ ତୁମ୍ଭର ଇନ୍ଦଘାତି ଓ ଅସୁର ବାନ୍ଧବ, ଗୋଟିଏ ପୁତ୍ର ଜାତ ହେବ । ୪୫ ।

---

ଶରଦ ପଙ୍କଜ ଯେସନ
ସ୍ତ୍ରିୟାମାନଙ୍କର ବଦନ ।
ବଚନ ସୁଧା ଶ୍ରବଣର
ହୃଦୟ ଯେସନେ କ୍ଷୁରଧାର
ଏମନ୍ତ ସ୍ତ୍ରୀରୀଙ୍କ ସ୍ୱଭାବ
ଏହାଙ୍କ ଚେଷ୍ଟା କେ ଜାଣିବ ।୪୧
ପ୍ରିୟ ନାହିଁ କେହି ନାରୀର
କ୍ଷଣିକ ବୁଦ୍ଧି ଯାହାର ।

ସ୍ୱକାର୍ଯ୍ୟ ଅର୍ଥେ ଯେ ମାରନ୍ତି
ପୁତ୍ର ଭ୍ରାତର ନିଜପତି ।୪୨।
କରି ଯେ ଅଛୁ ଅଙ୍ଗୀକାର
ଏହାକୁ ଦେବ ବୋଲି ବର
ମୋହର ବାକ୍ୟ ମିଥ୍ୟା ନାହିଁ
ଇନ୍ଦ୍ରତ ବଧଯୋଗ୍ୟ ନୋହି ।୪୩।
ଏମନ୍ତ ଚିନ୍ତା କରି ମୁନି
ଶୁଣ କହିବା ନୃପମଣି ;

ଆତ୍ମାର ନିନ୍ଦାଭାବ ବହି
କିଛୁ ବୋଇଲେ କୋପବହି
ହେ ସଖି ପୁତ୍ର ତୋ ହୋଇବ
ନିଶ୍ଚୟ ଇନ୍ଦ୍ରକୁ ମାରିବ
ଏକ ବରଷ ଶୁଚି ହୋଇ
ଏବ୍ରତ ଯେବେ ଧରୁ ତୁହି ।୪୪,୪୫

ଶ୍ରୀଦିତିରୁବାଚ ।

ଧାରୟିଷ୍ୟେ ବ୍ରତଂ ବ୍ରହ୍ମନ୍ ବ୍ରୂହି କାର୍ଯ୍ୟାଣି ଯାନି ମେ ।
ଯାନି ଚେହ ନିଷିଦ୍ଧାନି ନ ବ୍ରତଂ ଘ୍ନନ୍ତି ଯାନ୍ୟୁତ । ୪୬ ।

ଶ୍ରୀକଶ୍ୟପ ଉବାଚ ।

ନ ହିଂସ୍ୟାଦ୍ ଭୂତଜାତାନି ନ ଶପେନ୍ନାନୃତଂ ବଦେତ୍ ।
ନ ଛିନ୍ଦ୍ୟାନ୍ନଖରୋମାଣି ନ ସ୍ପୃଶେଦ୍ ଯଦମଙ୍ଗଳମ୍ । ୪୭ ।
ନାପ୍‌ସୁ ସ୍ନାୟାନ୍ନ କୁପ୍ୟେତ ନ ସମ୍ଭାଷେତ ଦୁର୍ଜନୈଃ ।
ନ ବସୀତାଧୌତବାସଃ ସ୍ରଜଞ୍ଚ ବିଧୃତାଂ କ୍ୱଚିତ୍ । ୪୮ ।
ନୋଚ୍ଛିଷ୍ଟଂ ଚଣ୍ଡିକାନ୍ନଞ୍ଚ ସାମିଷଂ ବୃଷଳାହୃତମ୍ ।
ଭୁଞ୍ଜୀତୋଦକ୍ୟୟା ଦୃଷ୍ଟଂ ପିବେନ୍ନାଞ୍ଜଳିନା ତ୍ୱପଃ । ୪୯ ।

---

ଦିତି କହିଲେ :—

ହେ ଦ୍ୱିଜବର ! ମୁଁ ଆପଣଙ୍କ ଉପଦେଶରେ ବ୍ରତଧାରଣ କରିବାକୁ ପ୍ରସ୍ତୁତ । ଏଥିରେ ଯାହା ବିଧି ବା ନିଷେଧ ଅଛି, ତାହା ମୋତେ କହନ୍ତୁ । ୪୬ ।

ଶ୍ରୀକଶ୍ୟପ କହିଲେ :—

ପ୍ରାଣୀବର୍ଗଙ୍କପ୍ରତି ହିଂସା କରିବ ନାହିଁ ଓ ଅଭିଶାପ ଦେବ ନାହିଁ, ମିଥ୍ୟା କହିବ ନାହିଁ, ନଖ ଲୋମ ଛିଣ୍ଡାଇବ ନାହିଁ ଏବଂ ଅମଙ୍ଗଳ ବସ୍ତୁ (ଶବ, ବା ନରକଙ୍କାଳ ପ୍ରଭୃତି) ଛୁଇଁବ ନାହିଁ । ୪୭ ।

ଜଳ ମଧ୍ୟରେ ପ୍ରବେଶ କରି ସ୍ନାନ କରିବ ନାହିଁ, ଅଧୌତବସ୍ତ୍ର ପରିଧାନ କରିବ ନାହିଁ, ଛଡ଼ାମାଲ୍ୟ ଗ୍ରହଣ କରିବ ନାହିଁ । ୪୮ ।

ଉଚ୍ଛିଷ୍ଟ, ଭଦ୍ରକାଳୀଙ୍କ ଉଦ୍ଦେଶ୍ୟରେ ନିବେଦିତ ପଦାର୍ଥ ବା ପିପୀଳିକା ପ୍ରଭୃତିଙ୍କ ଦୂଷିତ ପଦାର୍ଥ, ଆମିଷ, ଶୂଦ୍ର କର୍ତ୍ତୃକ ଆନୀତ ଏବଂ ରଜସ୍ୱଳା ନାରୀ କର୍ତ୍ତୃକ ଦୃଷ୍ଟ ଅନ୍ନଭକ୍ଷଣ କରିବ ନାହିଁ, ଅଞ୍ଜଳି ଦ୍ୱାରା ଜଳ ପାନ କରିବ ନାହିଁ । ୪୯ ।

---

ଦିତିରୁବାଚ —
ହେ ସ୍ୱାମି ବ୍ରତ ଧରିବଇଁ
ବିଧାନ କହିବା ଗୋସାଇଁ
ବ୍ରତ ଖଣ୍ଡନ ଯେ କରଇ
କି ଅବା ନିଷେଧ ଅଛଇ ।୪୬।
ଶ୍ରୀ କଶ୍ୟପ ଉବାଚ—
ପ୍ରାଣୀଙ୍କି ହିଂସା ନ କରିବ
କ୍ରୋଧରେ ଶାପକୁ ନ ଦେବ

ମିଥ୍ୟା ନ କହିବ ବଚନେ
ଛେଦିବ ନାହିଁ ନଖ ରୋମେ
ଅମଙ୍ଗଳ ଯେ ଦ୍ରବ୍ୟ ଥାଇ
କେବେହେଁ ସ୍ପର୍ଶିବ ନାହିଁ ।୪୭।
ଜଳରେ ପଶିଣ ଯେ ସ୍ନାନ
କେବେହେଁ ନ କରିବ ଜାଣ
ଦୁର୍ଜ୍ଜନ ସଙ୍ଗତେ ଆଳାପ
ଆଉରି ନ କରିବ କୋପ

ଅଧୌତ ବସ୍ତ୍ର ନ ପିନ୍ଧିବ
ଛଡ଼ା ମାଳକୁ ନ ଘେନିବ ।୪୮।
ପର ଉଚ୍ଛିଷ୍ଟ ଦେବୀ ଅନ୍ନ
କେବେ ନ କରିବ ଗ୍ରହଣ
ଆମିଷ ନ କର ଭୋଜନ
ହସ୍ତେ ନ କର ଜଳପାନ ।୪୯।

ନୋଚ୍ଛିଷ୍ଟାସ୍ପୃଷ୍ଟସଲିଲା ସନ୍ଧ୍ୟାୟାଂ ମୁକ୍ତମୂର୍ଦ୍ଧଜା ।
ଅନର୍ଚ୍ଚିତାସଞ୍ଜତବାକ୍ ନାସଂବୀତା ବହିଶ୍ଚରେତ୍ । ୫୦ ।
ନାଧୌତପାଦାପ୍ରୟତା ନାର୍ଦ୍ରପାଦ୍ନୋ ଉଦକ୍ ଶିରାଃ ।
ଶୟୀତ ନାପରାଙ୍ନାନ୍ୟୈର୍ନ ନଗ୍ନା ନ ଚ ସନ୍ଧ୍ୟୟୋଃ । ୫୧ ।
ଧୌତବାସାଃ ଶୁଚିର୍ନିତ୍ୟଂ ସର୍ବମଙ୍ଗଳସଂଯୁତା ।
ପୂଜୟେତ୍ ପ୍ରାତରାଶାତ୍ ପ୍ରାଗ୍ ଗୋବିପ୍ରାଞ୍ଛ୍ରିୟମଚ୍ୟୁତମ୍ । ୫୨ ।
ସ୍ତ୍ରିୟୋ ବୀରବତୀଶ୍ଚାର୍ଚ୍ଚେତ୍ ସ୍ରଗ୍‌ଗନ୍ଧବଲିମଣ୍ଡନୈଃ ।
ପତିଞ୍ଚାର୍ଚ୍ଚ୍ୟୋପତିଷ୍ଠେତ ଧ୍ୟାୟେତ୍ କୋଷ୍ଠଗତଞ୍ଚ ତମ୍ । ୫୩ ।
ସମ୍ବତ୍ସରଂ ପୁଂସବନଂ ବ୍ରତମେତଦବିପ୍ଲୁତମ୍ ।
ଧାରୟିଷ୍ୟସି ଚେତ୍ତୁଭ୍ୟଂ ଶକ୍ରହା ଭବିତା ସୁତଃ । ୫୪ ।

---

ଉଚ୍ଛିଷ୍ଟ ସ୍ପର୍ଶ କରି ଜଳସ୍ପର୍ଶ ନ କରି ପଦାକୁ ଯିବ ନାହିଁ । ସନ୍ଧ୍ୟା କାଳରେ ମୁକ୍ତକେଶୀ ଓ ଭୂଷଣ ହୀନା ହୋଇ ବାକ୍ୟ ସଂଯମ ନ କରି ଶରୀର ଆବୃତ ନ କରି, ବାହାରେ ବିଚରଣ କରିବ ନାହିଁ ।୫୦

ପାଦଧୌତ ନ କରି ଅସଂଯତ ଭାବରେ ଆର୍ଦ୍ର ପାଦରେ ଉତ୍ତରଶିର ବା ପଶ୍ଚିମଶିର ହୋଇ କିମ୍ବା ପରପୁରୁଷ ସହିତ ବା ଉଲଗ୍ନ ଅବସ୍ଥାରେ ଏବଂ ପ୍ରାତଃ କାଳରେ ବା ସାୟଂ କାଳରେ ଶୟନ କରିବ ନାହିଁ । ୫୧ ।

ପ୍ରତିଦିନ ପ୍ରାତଃକାଳରେ ଭୋଜନ ପୂର୍ବେ ଧୌତବସ୍ତ୍ର ପରିଧାନ କରି ପବିତ୍ର ଭାବରେ ନାନାବିଧ ଉତ୍ତମବସ୍ତୁ ନେଇ, ଗୋ, ବ୍ରାହ୍ମଣ, ଲକ୍ଷ୍ମୀ ଓ ବିଷ୍ଣୁ ପୂଜା କରିବ । ୫୨ ।

ସଧବା ସ୍ତ୍ରୀ ଲୋକମାନଙ୍କୁ ମାଲ୍ୟ, ଗନ୍ଧ, ଉପହାର ଓ ଅଳଙ୍କାର ପ୍ରଭୃତି ଦ୍ୱାରା ଅର୍ଚ୍ଚନା କରିବ ଏବଂ ପତିଙ୍କୁ ସମ୍ୟକରୂପେ ଅର୍ଚ୍ଚନା କରି ତାହା ନିକଟରେ ବସି ସେ ସନ୍ତାନରୂପରେ ଗର୍ଭରେ ପ୍ରବିଷ୍ଟ ହୋଇଅଛନ୍ତି, ଏହି ଚିନ୍ତା କରିବ । ୫୩ ।

ଏହି ପୁତ୍ର ଉତ୍ପାଦକ ବ୍ରତ ବର୍ଷେ ପର୍ଯ୍ୟନ୍ତ ସମ୍ୟକରୂପେ ଆଚରଣ କଲେ ତୁମ୍ଭର ଇନ୍ଦ୍ରହନ୍ତା ପୁତ୍ର ଜାତ ହେବ । ୫୪ ।

---

ଉଚ୍ଛିଷ୍ଟ ହସ୍ତେ ଜଳପାନ
କେତେବେହେଁ ନ କରିବ ଜାଣ
କଟୁତ ବାକ୍ୟ ନ କହିବ
ସନ୍ଧ୍ୟାରେ କେଶ ନ ମେଲିବ
ସ୍ୱଦ୍ୱାରେ ଅସମ୍ଭାଳ ହୋଇ
କେବେହେଁ ବାହାରିବନାହିଁ ।୫୦।
ଅଧୌତ ପାଦ ଥିବ ଯେତେବେ
ଶୟନ ନ କରିବ ତେତେବେ
ଉତ୍ତର ଦିଗେ କରି ଶିର
ଶୟନ ନ କର ସନ୍ଧ୍ୟାର

ଉଲଗ୍ନ ଭାବରେ ଶୟନ
ଏତେ ନ କର ଆଚରଣ ।୫୧।
ଧଉତ ବସ୍ତ୍ର ପରିଧାନ
ଶୁଚି ହୋଇବ ଅନୁକ୍ଷଣ
ପ୍ରାତଃ କାଳରୁ ଉଠିକରି
ସର୍ବ ମଙ୍ଗଳକୁ ଆଚରି
ଲକ୍ଷ୍ମୀ ସହିତ ନାରାୟଣ
ପୂଜିବ ଗୋରୁ ଯେ ବ୍ରାହ୍ମଣ ।୫୨।

ସଧବା ସ୍ତ୍ରିରୀଙ୍କି ଆଣିବ
ମାଳ ଚନ୍ଦନେ ପୂଜାଦେବ
ଯଥା ବିଧାନେ ନିଜପତି
ପୂଜିବ ସ୍ଥିର କରି ମତି ।୫୩
ଏକ ଧିଆନ ଦୃଢ଼ ଚିତ୍ତେ
ଯେବେ ଧରିବ ଏହି ବ୍ରତେ
ତେବେ ଇନ୍ଦ୍ରହନ୍ତା କୁମର
ଜନ୍ମିବେ ହୋଇବ ତୁମ୍ଭର ।୫୪।

ବାଢ଼ମିତ୍ୟଭିପ୍ରେତ୍ୟାଥ ଦିତୀ ରାଜନ୍ ମହାମନାଃ ।
କାଶ୍ୟପଂ ଗର୍ଭମାଧତ୍ତ ବ୍ରତଞ୍ଚାଞ୍ଜୋ ଦଧାର ସା । ୫୫ ।
ମାତୃଷ୍ୱସୁରଭିପ୍ରାୟମିନ୍ଦ୍ର ଆଜ୍ଞାୟ ମାନଦ ।
ଶୁଶ୍ରୂଷଣେନାଶ୍ରମସ୍ଥାଂ ଦିତିଂ ପର୍ଯ୍ୟଚରତ୍ କବିଃ । ୫୬ ।
ନିତ୍ୟଂ ବନାତ୍ ସୁମନସଃ ଫଲମୂଲସମିତ୍‌କୁଶାନ୍ ।
ପତ୍ରାଙ୍କୁରମୃଦୋପଶ୍ଚ କାଲେ କାଲ ଉପାହରତ୍ । ୫୭ ।
ଏବଂ ତସ୍ୟା ବ୍ରତସ୍ଥାୟା ବ୍ରତଚ୍ଛିଦ୍ରଂ ହରିର୍ନୃପ ।
ପ୍ରେପ୍ସୁଃ ପର୍ଯ୍ୟଚରଜ୍ଜିହ୍ମୋ ମୃଗହେବ ମୃଗାକୃତିଃ । ୫୮ ।

---

ହେ ରାଜନ୍ ! ତଦନନ୍ତର ସ୍ଥିରଚିତ୍ତରେ ଦିତି, ଏପରିପ୍ରକାର କରିବାକୁ ଅଙ୍ଗୀକୃତ ହୋଇ ନିଜପତି କଶ୍ୟପଙ୍କର ଠାରୁ ଗର୍ଭଧାରଣ କରିଥିଲେ ଏବଂ ଯଥାର୍ଥ ଭାବରେ ବ୍ରତଧାରଣ କରିଥିଲେ । ୫୫ ।

ହେ ମାନଦ ! ଇନ୍ଦ୍ର ଅତି ବିଚକ୍ଷଣ ବ୍ୟକ୍ତି । ସେ ମାଉଶୀ ଦିତିଙ୍କର ଅଭିପ୍ରାୟ ବୁଝିପାରି ଆଶ୍ରମ ବାସିନୀ ଦିତିଙ୍କୁ ନାନାପ୍ରକାର ଶୁଶ୍ରୂଷା ଦ୍ୱାରା ସେବା କରିବାକୁ ଲାଗିଲେ । ୫୬ ।

ଇନ୍ଦ୍ର ପ୍ରତ୍ୟହ ଯଥାକାଳରେ ବନରୁ ଫଳ ପୁଷ୍ପ, ଯଜ୍ଞକାଷ୍ଠ, କୁଶ, ପତ୍ର, ଅଙ୍କୁର, ମୃତ୍ତିକା, ଜଳ ପ୍ରଭୃତି ଆଣି ଦିତିଙ୍କୁ ପ୍ରଦାନ କରୁଥିଲେ । ୫୭

ହେ ରାଜନ୍ ! କୁଟିଳ ବ୍ୟାଧ ଯେପରି ମୃଗ ବେଶ ଧାରଣ କରିଥାଏ, ସେହିପରି ଦିତିଙ୍କର ବ୍ରତ ଭଙ୍ଗ କରିବା ନିମନ୍ତେ ଇନ୍ଦ୍ର ଶୁଶ୍ରୂଷାକାରୀ ହୋଇଥିଲେ । ୫୮ ।




( ବ୍ରତ ରତା ଦିତିଙ୍କୁ ଇନ୍ଦ୍ରଙ୍କ ସେବା । )

---

ବ୍ରତକୁ ଧରିବ ବୋଇଲା
ଚଞ୍ଚଳ ଚିତ୍ତ ସ୍ଥିର କଲା
କଶ୍ୟପ ଶ୍ରୀପିଂ ଗର୍ଭେ ଧରି
ବଧିଥିରେ ବ୍ରତକୁ ଆଚରି । ୫୫ ।
ଦିତିର ଏମନ୍ତ ବିଧାନ
ଇନ୍ଦ୍ର ଜାଣିଲ ହେ ରାଜନ

ଦିତିର ବ୍ରତ ଦେଖି କରି
ଇନ୍ଦ୍ର ତା ସେବାକୁ ଆଦରି
ପବିତ୍ର ଶୁଚିବନ୍ତ ହୋଇ
ତାହାଙ୍କ ସଙ୍ଗରେ ବୁଲଇ
ନିତ୍ୟେ ବନରୁ ପୁଷ୍ପ ଫଳ
ସମିଧ କୁଶ କନ୍ଦମୂଳ

ପତ୍ର ଅଙ୍କୁର ଜଳ ଆଣି
ସମୀପେଦ୍ୟନ୍ତି ବଜ୍ରପାଣି । ୫୬,୫୭
ଏମନ୍ତେ ବ୍ରତ-ଛିଦ୍ର ତାର
ଇନ୍ଦ୍ର ଇଚ୍ଛଇ ନୃପବର !
ଯେମନ୍ତେ ବ୍ୟାଧ ଯେ ମୃଗର
ଛିଦ୍ର ଚାହିଁ ଚରନ୍ତ । ୫୮ ।

ନାଧ୍ୟଗଚ୍ଛଦ୍ ବ୍ରତଚ୍ଛିଦ୍ରଂ ତତ୍ପରୋଽଥ ମହୀପତେ ।
ଚିନ୍ତାଂ ତୀବ୍ରାଂ ଗତଃ ଶକ୍ରଃ କେନ ମେ ସ୍ୟାଚ୍ଛିବଂ ତ୍ୱିହ । ୫୯ ।
ଏକଦା ସା ତୁ ସନ୍ଧ୍ୟାୟାମୁଚ୍ଛିଷ୍ଟା ବ୍ରତକର୍ଶିତା ।
ଅସ୍ପୃଷ୍ଟବାର୍ଯ୍ୟଧୌତାଙ୍ଘ୍ରିଃ ସୁଷ୍ୱାପ ବିଧିମୋହିତା । ୬୦ ।
ଲବ୍ଧ୍ୱା ତଦନ୍ତରଂ ଶକ୍ରୋ ନିଦ୍ରାପହୃତଚେତସଃ ।
ଦିତେଃ ପ୍ରବିଷ୍ଟ ଉଦରଂ ଯୋଗେଶୋ ଯୋଗମାୟୟା । ୬୧ ।
ଚକର୍ତ୍ତ ସପ୍ତଧା ଗର୍ଭଂ ବଜ୍ରେଣ କନକପ୍ରଭମ୍ ।
ରୁଦନ୍ତଂ ସପ୍ତଧୈକୈକଂ ମାରୋଦୀରିତି ତାନ୍ ପୁନଃ । ୬୨ ।
ତ ମୂଚୁଃ ପାଟ୍ୟମାନାସ୍ତେ ସର୍ବେ ପ୍ରାଞ୍ଜଳୟୋ ନୃପ ।
ନୋ ଜିଘାଂସସି କିମିନ୍ଦ୍ର ଭ୍ରାତରୋ ମରୁତସ୍ତବ । ୬୩ ।

---

ହେ ରାଜନ୍ ! ଇନ୍ଦ୍ର ଅତି ତତ୍ପର ଭାବରେ ଲକ୍ଷକରି ସୁଦ୍ଧା ଦିତୀଙ୍କର ବ୍ରତ ଭଙ୍ଗକରି ପାରି ନଥିଲେ କିପରି ତାହାଙ୍କର ଅଭିପ୍ରାୟ ସିଦ୍ଧି ହେବ, ଏଥିପାଇଁ ସେ ଅତ୍ୟନ୍ତ ଚିନ୍ତିତ ହୋଇଥିଲେ । ୫୯ ।

ଦିନେ ବ୍ରତକ୍ଳାନ୍ତା ଦିତି ଦୈବଚକ୍ରରେ ପ୍ରତାରିତ ହୋଇ ସାୟଂକାଳରେ ଉଚ୍ଛିଷ୍ଟ ସ୍ପର୍ଶ କରି ହସ୍ତ ବା ପଦ ଧୌତ ନ କରି ନିଦ୍ରା ଯାଇଥିଲେ । ୬୦ ।

ଏହି ଅବସରରେ ଯୋଗସିଦ୍ଧ ଇନ୍ଦ୍ର, ଯୋଗମାୟା ପ୍ରଭାବରେ ଦିତିଙ୍କ ଉଦର ମଧ୍ୟରେ ପ୍ରବେଶ କରନ୍ତେ, ଦିତିଙ୍କର ଚୈତନ୍ୟ ହେଲା । ୬୧ ।

ଇନ୍ଦ୍ର ବଜ୍ର ଦ୍ୱାରା ଦିତିଙ୍କର ଗର୍ଭସ୍ଥ ସ୍ୱର୍ଣ୍ଣପ୍ରାୟ ଉଜ୍ଜ୍ୱଳବର୍ଣ୍ଣ ସନ୍ତାନକୁ ସାତଖଣ୍ଡ କରି କାଟି ପକାଇଲେ ସେ କାନ୍ଦନ୍ତେ ତାହାକୁ କାନ୍ଦ ନାହିଁ ବୋଲି ସାନ୍ତ୍ୱନା ଦେଇଥିଲେ । ୬୨ ।

ଇନ୍ଦ୍ର ଆହୁରି ଛେଦନ କରନ୍ତେ, ସେମାନେ କହିଲେ, ଆମ୍ଭେମାନେ ବାୟୁ, ଆପଣଙ୍କ ଭ୍ରାତା, ଆପଣ କାହିଁକି ଆମ୍ଭମାନଙ୍କୁ ବଧ କରୁ ଅଛନ୍ତି । ୬୩ ।

---

କେମନ୍ତେ ବ୍ରତ ଛିଦ୍ର ସେହି
ଅନେକ ଯତ୍ନେ ସେ ନ ପାଇ
ତୀବ୍ର ଚିନ୍ତାରେ ଇନ୍ଦ୍ର ମନ
ଛନ୍ନ ହୋଇଲା, ହେ ରାଜନ !
ଶକ୍ର ବିଷୟରୁ ଅଛି ମନେ
ଶୁଭ ମୋ ହୋଇବ କେସନେ ।୫୯
ବ୍ରତରେ କୃଶ ହୋଇଛନ୍ତି
ସନ୍ଧ୍ୟାରେ ଏକଦିନେ ଦିତି
ବିଧାତାବଶେ ମୋହ ହୋଇ
ଉଚ୍ଛିଷ୍ଟ ଜଳସ୍ପର୍ଶ ନାହିଁ

ପାଦ ଧୋଇତ ନ କରିଣ
କଟିଲ ସେ ଭୂମିରେ ଶୟନ ।୬୦
ନିଦ୍ରାରେ ହତ ତାର ମନ
ଶକ୍ର ଦେଖିଲ ବ୍ରତହୀନ
ଯୋଗମାୟାର ସେ ଯୋଗେଶ
ଇନ୍ଦ୍ର ତା ଗର୍ଭରେ ପଶିଣ
ସେ ବଜ୍ରଧର ବଜ୍ର ଧରି
ସପତ ଖଣ୍ଡ ଗର୍ଭ କରି
ଶୁଦ୍ଧ କନକ ପ୍ରାୟ ହୋଇ
ଗର୍ଭ ତାହାର ଦିଶୁଥାଇ

ବଜ୍ରରେ ସାତଖଣ୍ଡ ହୋଇ
ରୋଦନ କରନ୍ତି ଯେ ସେହି
ଖଣ୍ଡକୁ ସାତଖଣ୍ଡ କରି
ନକାନ୍ଦବୋଲେ ବଜ୍ରଧାରୀ ।୬୧।୬୨
ଛେଦନ ହୋଇ ସେହୁମାନେ
ଇନ୍ଦ୍ରକୁ ବୋଲନ୍ତି ବଚନେ
ହେ ଇନ୍ଦ୍ର ଆମ୍ଭମାନଙ୍କର
ହିଂସା କପାଇଁ ତୁମ୍ଭେ କର
ତୁମ୍ଭର ଆମ୍ଭେମାନେ ଭାଇ
ମରୁତ ଆମ୍ଭ ନାମ ହୋଇ ।୬୩

ମା ଭୈଷ୍ଟ ଭ୍ରାତରୋ ମୁହ୍ୟଂ ଯୂୟମିତ୍ୟାହ କୌଶିକଃ ।
ଅନନ୍ୟଭାବାନ୍ ପାର୍ଷଦାନାତ୍ମନୋ ମରୁତାଂ ଗଣାନ୍ । ୭୪ ।
ନ ମମାର ଦିତେର୍ଗର୍ଭଃ ଶ୍ରୀନିବାସାନୁକମ୍ପୟା ।
ବହୁଧା କୁଳିଶକ୍ଷୁଣ୍ଣୋ ଦ୍ରୌଣ୍ୟସ୍ତ୍ରେଣ ଯଥା ଭବାନ୍ । ୭୫ ।
ସକୃଦିଷ୍ଟ୍ୱାଦିପୁରୁଷଂ ପୁରୁଷୋ ଯାତି ସାମ୍ୟତାମ୍ ।
ସମ୍ବତ୍ସରଂ କିଞ୍ଚିଦୂନଂ ଦିତ୍ୟା ଯଦ୍ଧରିରର୍ଚ୍ଚିତଃ । ୭୬ ।
ସଜୂରିନ୍ଦ୍ରେଣ ପଞ୍ଚାଶଦ୍ ଦେବାସ୍ତେ ମରୁତୋଽଭବନ୍ ।
ବ୍ୟପୋହ୍ୟ ମାତୃଦୋଷଂ ତେ ହରିଣା ସୋମପାଃ କୃତାଃ । ୭୭ ।
ଦିତିରୁତ୍ଥାୟ ଦଦୃଶେ କୁମାରାନନଲପ୍ରଭାନ୍ ।
ଇନ୍ଦ୍ରେଣ ସହିତାନ୍ ଦେବୀ ପର୍ଯ୍ୟତୁଷ୍ୟଦନିନ୍ଦିତା । ୭୮ ।

---

ଇନ୍ଦ୍ର କହିଲେ "ତୁମ୍ଭେମାନେ ଭୀତ ହୁଅନାହିଁ, ତୁମ୍ଭେମାନେ ମୋର ଭ୍ରାତା, ତୁମ୍ଭମାନଙ୍କ ପ୍ରତି ମୋର ଅନ୍ୟ କୌଣସି ଭାବ ନାହିଁ, ମୁଁ ତୁମ୍ଭମାନଙ୍କୁ ମୋର ପାର୍ଷଦ କରିବ । ୭୪ ।

ଲୋକେ ଥରେମାତ୍ର ଶ୍ରୀହରିଙ୍କୁ ଆରାଧନା କଲେ, ତାହାଙ୍କର ଆତ୍ମତୁଲ୍ୟ ପ୍ରଭୁତା ଲାଭ କରନ୍ତି । ଦିତି ପ୍ରାୟ ବର୍ଷେ କାଳ ତାହାଙ୍କର ଆରାଧନା କରିଥିଲେ । ତେଣୁ ଦିତଙ୍କର ଗର୍ଭରେ ଇନ୍ଦ୍ର ବଜ୍ରଦ୍ୱାରା ଖଣ୍ଡିତ ହେଲେ ମଧ୍ୟ ଶ୍ରୀହରିଙ୍କ କୃପାଗୁଣରେ ଏହି ଖଣ୍ଡିତ ଗର୍ଭର ମୃତ୍ୟୁ ହୋଇ ନ ଥିଲା, ଯେପରି ତୁମ୍ଭ ପରୀକ୍ଷିତ ଅଶ୍ୱତ୍ଥାମା ଅସ୍ତ୍ରର ମୃତ୍ୟୁ ମୁଖରେ ପତିତ ହୋଇ ନ ଥିଲ । ୭୫,୭୬ ।

ସେହି ବାୟୁମାନେ ଇନ୍ଦ୍ରଙ୍କର ସହିତ ମିଳିତ ହୋଇ ଊନପଞ୍ଚାଶତ ଦେବତା ରୂପେ ଦିତିଙ୍କ ଗର୍ଭରୁ ନିର୍ଗତ ହୋଇଥିଲେ । ଇନ୍ଦ୍ର ସେମାନଙ୍କର ମାତୃ ଦୋଷ ହେତୁରୁ ଆସୁରଭାବ ଦୂରକରି ସେମାନଙ୍କୁ ସୋମରସ ପାୟୀ ଦେବତା ବୋଲି ଗ୍ରହଣ କରିଥିଲେ । ୭୭ ।

ବ୍ରତ ପ୍ରଭାବରେ ଦିତଙ୍କର ଘୃଣିତ ପ୍ରବୃତ୍ତି ଦୂର ହୋଇଥିଲା, ସେ ଦେବାପର ହୋଇଥିଲେ । ସେ ନିଦ୍ରାରୁ ଉତ୍ଥିତ ହୋଇ ଇନ୍ଦ୍ରଙ୍କର ସହିତ ଅଗ୍ନି ତୁଲ୍ୟ ପ୍ରଭାସମ୍ପନ୍ନ ପୁତ୍ରମାନଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ୭୮ ।

---

ଇନ୍ଦ୍ର ବୋଇଲେ ଭ୍ରାତାମାନେ
ଭୟ ନ କର ତୁମ୍ଭେମାନେ
ଅନନ୍ୟ ଭାବକୁ ଆଚର
ହୋଇବ ପାରିଷଦ ମୋର
ମରୁତ ହେଲେ ଊଣଶାଷ
ରହିଲେ ଦେବରାଜ ପାଶ ।୭୪।
ଦିତିର ଗର୍ଭ ଯେ ନ ମଲ
ବିଷ୍ଣୁର ଅନୁକମ୍ପା ଥିଲ
ଅନେକ ଥର ସେହିମାନ
କୁଳିଶେ ହୋଇଲେ ଛେଦନ
ଦ୍ରୋଣି ଶସ୍ତ୍ରରେ କର ତୁହି
ଯେମନ୍ତ ହେଲୁ କୁରୁସାଇଁ ।୭୫।
ବାରେକ ଗୋବିନ୍ଦ ଭଜନେ
ପାପ ନାଶନ୍ତି ପ୍ରାଣିମାନେ
କିଛି ନିଉନ ସମ୍ବତ୍ସର
ଯେଣୁ ପୂଜିଥିଲେ ଈଶ୍ୱର
ଏହି କାରଣେ ଇନ୍ଦ୍ରେ କର
ପୁତ୍ରେ ହୋଇଲେ ଦେବ ସର
ଅସୁର ଭାବକୁ ଛାଡ଼ିଲେ
ଅମର ଭାବ ଆଚରିଲେ ।୭୬।୭୭
ନିଦ୍ରା ଉପେକ୍ଷିଣ ବସିଲେ
ଦିତି ପୁତ୍ରଙ୍କୁ ଅନାଇଲେ
ଅନଳ ପ୍ରଭା ପ୍ରାୟ ହୋଇ
କୁମରମାନେ ଛନ୍ତି ରହି
ଇନ୍ଦ୍ର ସହିତେ ପୁତ୍ରମାନେ
ଦେଖି ସନ୍ତୋଷ ଦେବୀ ମନେ ।୭୮

ଅଥେନ୍ଦ୍ରମାହ ତାତାହମାଦିତ୍ୟାନାଂ ଭୟାବହମ୍ ।
ଅପତ୍ୟମିଚ୍ଛନ୍ତ୍ୟଚରଂ ବ୍ରତମେତତ୍ ସୁଦୁଷ୍କରମ୍ । ୬୯ ।
ଏକଃ ସଙ୍କଳ୍ପିତଃ ପୁତ୍ରଃ ସପ୍ତ ସପ୍ତାଭବନ୍ କଥମ୍ ।
ଯଦି ତେ ବିଦିତଂ ପୁତ୍ର ସତ୍ୟଂ କଥୟ ମା ମୃଷା । ୭୦ ।

ଶ୍ରୀଇନ୍ଦ୍ର ଉବାଚ ।

ଅମ୍ବ ତେଽହଂ ବ୍ୟବସିତମୁପଧାର୍ଯ୍ୟାଗତୋଽନ୍ତିକମ୍ ।
ଲବ୍ଧାନ୍ତରୋଽଚ୍ଛିଦଂ ଗର୍ଭମର୍ଥବୁଦ୍ଧିର୍ନ ଧର୍ମଧୀଃ । ୭୧ ।
କୃତ୍ତୋ ମେ ସପ୍ତଧା ଗର୍ଭ ଆସନ୍ ସପ୍ତ କୁମାରକାଃ ।
ତେଽପି ଚୈକୈକଶୋ ବୃକ୍ଣାଃ ସପ୍ତଧା ନାପି ମମ୍ରିରେ । ୭୨ ।
ତତସ୍ତତ୍ ପରମାଶ୍ଚର୍ଯ୍ୟଂ ବୀକ୍ଷ୍ୟ ବ୍ୟବସିତଂ ମୟା ।
ମହାପୁରୁଷପୂଜାୟାଃ ସିଦ୍ଧିଃ କାପ୍ୟନୁଷଙ୍ଗିଣୀ । ୭୩ ।

---

ତଦନନ୍ତର ଦିତି ଇନ୍ଦ୍ରଙ୍କୁ କହିଲେ—ବତ୍ସ ! ମୁଁ ଦେବତାମାନଙ୍କର ଭୀତ କାମନାରେ ପୁତ୍ର କାମନା କରି କଠୋର ବ୍ରତ କରିଥିଲି । ୬୯ ।

ମୋର ଗୋଟିଏ ପୁତ୍ର ପାଇବାର ଇଚ୍ଛା ଥିଲା । ମାତ୍ର ମୁଁ କାହିଁକି ଅଣଚାଶ ପୁତ୍ର ପାଇଲି, ତୁମ୍ଭେ ଏହା ଜାଣିଥିଲେ ସତ କଥା କୁହ । ୭୦ ।

ଶ୍ରୀଇନ୍ଦ୍ର କହିଲେ :—

ମା ! ମୁଁ ତୁମ୍ଭର ଉଦ୍ଦେଶ୍ୟ ବୁଝିପାରି ତୁମ୍ଭ ନିକଟକୁ ଆସିଅଛି ଏବଂ ସୁଯୋଗ ପାଇ ମୁଁ ତୁମ୍ଭର ଗର୍ଭସ୍ଥ ସନ୍ତାନକୁ ସ୍ୱାର୍ଥ ବୁଦ୍ଧିରେ (ଧର୍ମ ବୁଦ୍ଧିରେ ନୁହେଁ) କାଟି ପକାଇ ଅଛି । ୭୧ ।

ମୁଁ ପ୍ରଥମେ ତୁମ୍ଭର ଗର୍ଭକୁ ସାତଖଣ୍ଡ କଲି । ତଦନନ୍ତର ପ୍ରତ୍ୟେକଙ୍କୁ ସାତଖଣ୍ଡ କରିଥିଲେ ମଧ୍ୟ, ସେମାନଙ୍କର ମୃତ୍ୟୁ ହେଲା ନାହିଁ । ତଦନନ୍ତର ଏହି ଅଦ୍ଭୁତବ୍ୟାପାର ଦେଖି ବୁଝିଲି, ଏହା ତୁମ୍ଭର ଶ୍ରୀହରି ଆରାଧନାର ଫଳ । ୭୨,୭୩ ।

---

ଏ ଅନନ୍ତରେ ନୃପବର
ଇନ୍ଦ୍ରକୁ ବୋଲଇ ଉତ୍ତର
ଅଦିତି ପୁତ୍ରକୁ [illegible]ର
ଭୟକୁ ଦେବ ଏ କୁମର
ଏମନ୍ତ ଇଚ୍ଛା ମୁହିଁ କରି
ଦୁସ୍ତର ବ୍ରତକୁ ଆଚରି ।୬୯।
ହେ ତାତ ଏକଇ କୁମର
ମୁହିଁ ଯେ ମାଗିଥିଲି ବର
ସପତ ସପ୍ତ ଏ କେସନେ
କହ ଏ କେଉଁଣ ବିଧାନେ ?

ତୋହରେ କରି ଏ ବିଧାନ
ଶୁଣିବି ମୁହିଁ ହେ ନନ୍ଦନ !
ସତ୍ୟ କହିବୁ ମୋର ଆଗେ
ମିଥ୍ୟା ନ କହି ଅନୁରାଗେ ।୭୦।

ଶ୍ରୀ ଇନ୍ଦ୍ର ଉବାଚ—

ହେ ମାତ ଶୁଣ ସାବଧାନ
ନିଦ୍ରା-ମୋହିବ ତୁମ୍ଭମନ
ତୁମ୍ଭର ବ୍ରତ ଛିଦ୍ର ପାଇ
ନିକଟେ ମୁହିଁ ମିଳିଲଇଁ

ଗର୍ଭ ଛେଦିଲି ଆତ୍ମଅର୍ଥେ
ବିଚାରି ନାହିଁ ଧର୍ମ ପଥେ
ଗର୍ଭକୁ ସାତ ଖଣ୍ଡ କରି
ଛେଦିଲି ମୁହିଁ ଯେ ତୁମ୍ଭର
ସାତ କୁମର ହେଲେ ତାତ
ଏକକୁ କଲି ସାତ ସାତ
ତେବେହେଁ କେହି ମଲେ ନାହିଁ
ଏଣୁ ସଂଶୟ ବଡ଼ ହୋଇ
ସେବାରୁ ମହାପୁରୁଷର
ସିଦ୍ଧି ଯେହୋଇଛି ତୁମ୍ଭର ।୭୨।୭୩।

ଆରାଧନଂ ଭଗବତ ଈହମାନା ନିରାଶିଷଃ ।
ଯେ ତୁ ନେଚ୍ଛନ୍ତ୍ୟପି ପରଂ ତେ ସ୍ୱାର୍ଥକୁଶଳାଃ ସ୍ମୃତାଃ । ୭୪
ଆରାଧ୍ୟାତ୍ମପ୍ରଦଂ ଦେବଂ ସ୍ୱାତ୍ମାନଂ ଜଗଦୀଶ୍ୱରମ୍ ।
କୋ ବୃଣୀତ ଗୁଣସ୍ପର୍ଶଂ ବୁଧଃ ସ୍ୟାନ୍ନରକେଽପି ଯତ୍ । ୭୫ ।
ତଦିଦଂ ମମ ଦୌର୍ଜନ୍ୟଂ ବାଲିଶସ୍ୟ ମହୀୟସି ।
କ୍ଷନ୍ତୁମର୍ହସି ମାତସ୍ତ୍ୱଂ ଦିଷ୍ଟ୍ୟା ଗର୍ଭୋ ମୃତୋତ୍ଥିତଃ । ୭୬ ।
ଶ୍ରୀଶୁକ ଉବାଚ । ଇନ୍ଦ୍ରସ୍ତୟାଭ୍ୟନୁଜ୍ଞାତଃ ଶୁଦ୍ଧଭାବେନ ତୁଷ୍ଟୟା ।
ମରୁଦ୍‌ଭିଃ ସହ ତାଂ ନତ୍ୱା ଜଗାମ ତ୍ରିଦିବଂ ପ୍ରଭୁଃ । ୭୭ ।
ଏବଂ ତେ ସର୍ବମାଖ୍ୟାତଂ ଯନ୍ମାଂ ତ୍ୱଂ ପରି ପୃଚ୍ଛସି ।
ମଙ୍ଗଳଂ ମରୁତାଂ ଜନ୍ମ କିଂ ଭୂୟଃ କଥୟାମି ତେ । ୭୮ ।

---

ଅନ୍ୟକାମନା ପରିତ୍ୟାଗ କରି ଯେଉଁମାନେ ଏକମାତ୍ର ଭଗବଦ୍ ସେବାରେ ଯତ୍ନବାନ ହୁଅନ୍ତି ଓ ମୋକ୍ଷ ସୁଦ୍ଧା ଇଚ୍ଛା କରନ୍ତି ନାହିଁ, ସେମାନେ ଯଥାର୍ଥରେ ସ୍ୱାର୍ଥଜ୍ଞାନ ନିପୁଣ । ୭୪ ।

ଆତ୍ମଜ୍ଞାନ ଜନକ ଭଗବାନ୍ ଅନ୍ତର୍ଯ୍ୟାମିଙ୍କୁ ଆରାଧନା କରି କୌଣସି ବିଜ୍ଞ ବ୍ୟକ୍ତି ବିଶେଷ କାମନା କରେ ନାହିଁ, କାରଣ ନରକରେ ସୁଦ୍ଧା ବିଷୟ ଭୋଗ ହୋଇପାରେ । ୭୫ ।

ହେ ମହତ୍ତ୍ୱଶାଳିନି ମା ! ମୁଁ ଅଜ୍ଞ, ମୋର ଅଜ୍ଞତା, ମୋର ଅନ୍ୟାୟ ଆଚରଣ ଲାଗି, ମୁଁ କ୍ଷମା ମାଗୁଅଛି । ଭାଗ୍ୟକୁ ତୁମ୍ଭର ଗର୍ଭସ୍ଥ ସନ୍ତାନ ନ ମରି ବଞ୍ଚିଅଛନ୍ତି । ୭୬ ।

ଶ୍ରୀଶୁକଦେବ କହିଲେ :—ଦେବରାଜ ଇନ୍ଦ୍ରଙ୍କ ପ୍ରାର୍ଥନା ଅନୁସାରେ, ଦିତିଙ୍କ ଅନୁମତି ଗ୍ରହଣକରି ଏବଂ ତାହାଙ୍କୁ ପ୍ରଣାମ କରି, ସେ ମରୁତ୍ ଗଣଙ୍କୁ ସଙ୍ଗରେ ନେଇ ସ୍ୱର୍ଗଧାମକୁ ଗମନ କରିଥିଲେ । ୭୭ ।

ମରୁତ ଗଣଙ୍କର ଜନ୍ମ ବୃତ୍ତାନ୍ତ ଯାହା ଆପଣ ମୋତେ ପ୍ରଶ୍ନ କରିଥିଲେ, ତାହା ବର୍ଣ୍ଣନା କଲି, ଆଉ କଣ କହିବି କୁହନ୍ତୁ ? । ୭୮ ।

---

ପରମେଶ୍ୱର ଆରାଧନ
ସକଳ ମଙ୍ଗଳ କାରଣ
ଭକତେ କରନ୍ତି ଯେ ନରେ
ଅମୃତଜ୍ଞା ହୋଇ ତାହାରେ ।୭୪
ଆତ୍ମପ୍ରଦ ଯେ ଭଗବାନ
ତାହାଙ୍କୁ କଲେ ଆରାଧନ
ତାହାର ନାହିଁ ଅକୁଶଳ
ସେ ସର୍ବ ପରମମଙ୍ଗଳ ।୭୫।
ଦୁର୍ଜନ ଭାବ ଏ ମୋହର
ହେ ମାତ କ୍ଷମା ଏବେ କର
ସ୍ୱଭାବେ ବାଳକ ମୁଁ ହୋଇ
ତୁମ୍ଭ ମହିମା ନ ଜାଣଇ
ମୃତ୍ୟୁରୁ ଏ ଯେତେ କୁମରେ
ରହିଲେ ତୁମ୍ଭର ଭାଗ୍ୟରେ ।୭୬।

ଶ୍ରୀ ଶୁକ ଉବାଚ—

ଆଜ୍ଞାକୁ ମାଗି ସୁନାଶୀର
ଶୁଦ୍ଧ ଭାବ ଘେନି ମନର
ମରୁତଗଣଙ୍କୁ ଘେନିଲେ
ଆନନ୍ଦେ ଦିତିଙ୍କି ନମିଲେ
ଶୁଣ ରାଜନ ଚୂଡ଼ାମଣି
ସ୍ୱର୍ଗକୁ ଗଲେ ବଜ୍ରପାଣି
ଯେ ପ୍ରଶ୍ନ କଲୁ ତୁ ଆମ୍ଭରେ
କହିଲି ଜନ ହିତପାରେ ।୭୭।୭୮
ମଙ୍ଗଳ ମରୁତଙ୍କ ଜନ୍ମ
ଈଶ୍ୱର ମହିମା କଥନ
ବୋଲଇ ବିପ୍ର ଜଗନ୍ନାଥ
ଅପୂର୍ବ ଦେବଙ୍କ ଚରିତ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ
ମରୁଦୁତ୍ପତ୍ତିକଥନଂ ନାମ ଅଷ୍ଟାଦଶୋଽଧ୍ୟାୟଃ । ୧୮ ।

---

**ବିଶଦାର୍ଥ :—**

ବିଶ୍ୱରୂପ ଏବଂ ବୃତ୍ରାସୁର ଉଭୟ ତ୍ୱଷ୍ଟାଙ୍କର ପୁତ୍ର । ଦିତି ସେମାନଙ୍କର ମାତା । ଉଭୟ ପୁତ୍ରଙ୍କୁ ଇନ୍ଦ୍ର ବିନାଶ କରନ୍ତେ ଦିତିଙ୍କ ହୃଦୟରେ ନାରୀ ସ୍ୱଭାବ ସୁଲଭ ପ୍ରତିହିଂସା ବହ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ଦିତିଙ୍କର ଏହି ନାରୀଜନ ସୁଲଭ ପ୍ରତିହିଂସା ବିଷୟ ପ୍ରତି ଲକ୍ଷକରି କଶ୍ୟପ ଭାବିଲେ ନାରୀର ପ୍ରତିହିଂସା ବହ୍ନି ପ୍ରଜ୍ୱଳିତ ହେଲେ ସେ ସ୍ୱାର୍ଥ ସିଦ୍ଧି ନିମିତ୍ତ ସମସ୍ତ କୁକର୍ମ କରିପାରେ, ଏପରି କି ପତି ପୁତ୍ର ଭ୍ରାତାଙ୍କର ହତ୍ୟାରୁ ସୁଦ୍ଧା ସେ ବିରତ ହୁଏ ନାହିଁ । ପାଶ୍ଚାତ୍ୟ ଭୂଖଣ୍ଡର ଜଣେ ପ୍ରସିଦ୍ଧ ଲେଖକ "ବାର୍ନାଡ଼ସ" ଲେଖିଅଛନ୍ତି ମନ୍ଦ ପୁରୁଷ କେବଳ ମନ୍ଦମନୁଷ୍ୟ କିନ୍ତୁ ମନ୍ଦସ୍ତ୍ରୀ ଗୋଟିଏ ରାକ୍ଷସୀ । ( A bad man is a bad man but a bad woman is a She devil ), ଦିତିଙ୍କର ପ୍ରାର୍ଥନା ଅନୁସାରେ କଶ୍ୟପ ତାହାଙ୍କୁ ହରି ତୋଷଣ ବ୍ରତ ପାଳନକରିବାକୁ ଉପଦେଶ ଦେଇଥିଲେ । ଦିତି ସେହି ନିୟମ ପାଳନ କରି ବ୍ରତ ଧାରଣ କରିଥିଲେ, ମାତ୍ର ଇନ୍ଦ୍ର ସେହି ବ୍ରତ ଭଙ୍ଗ କରିବା ଲାଗି ନାନାପ୍ରକାର ଉପାୟ ଅବଲମ୍ବନ କରିଥିଲେ । କିନ୍ତୁ ସହଜରେ କୃତକାର୍ଯ୍ୟ ହୋଇ ନ ଥିଲେ । ଦିନେ ସାୟଂ କାଳରେ ଦିତି ଉଚ୍ଛିଷ୍ଟ ସ୍ପର୍ଶକରି ହସ୍ତ ପ୍ରକ୍ଷାଳନ ନ କରି ଶୟନ କରିଥିଲେ । ଏହା ବ୍ରତଧାରୀ ପକ୍ଷରେ ନିଷିଦ୍ଧ । ତେଣୁ ଇନ୍ଦ୍ର ଏହି ଅନ୍ୟାୟର ସୁଯୋଗ ପାଇ ଦିତିଙ୍କ ଗର୍ଭ ମଧ୍ୟରେ ପ୍ରବେଶ କରି ତାହାଙ୍କ ଗର୍ଭସ୍ଥ ସନ୍ତାନଟିକୁ ଟିକି ଟିକି କରି କାଟି ପକାଇଥିଲେ ଏବଂ ସେହି ଅଣଚାଶ ଖଣ୍ଡ ଓ ଇନ୍ଦ୍ର ନିଜେ ତାହାଙ୍କ ଗର୍ଭରୁ ବାହାରି ଥିଲେ । ଦିତି ଇନ୍ଦ୍ରଘାତୀ ଏକପୁତ୍ର କାମନା କରିଥିଲେ । କିନ୍ତୁ ସେ ଅଣଚାଶଟି ପୁତ୍ର ଦେଖି ବିସ୍ମିତ ହୁଅନ୍ତେ ଇନ୍ଦ୍ର ତାହାଙ୍କୁ ବୁଝାଇ କହିଲେ "ତୁମ୍ଭେ ଦୁଃଖିତ ହୁଅ ନାହିଁ, ମୁଁ ତୁମ୍ଭର ପୁତ୍ରମାନଙ୍କୁ ପାର୍ଷଦରୂପେ ଗ୍ରହଣ କଲି, ଏହିମାନେ ଅଣଚାଶ ପବନରୂପେ ଦେବତ୍ୱ ଲାଭ କରିବେ



## ଊ ନ ବିଂ ଶ ଅ ଧ୍ୟା ୟ ।

ଊନବିଂଶେ ତୁ ଯତ୍ପ୍ରୋକ୍ତଂ କଶ୍ୟପେନ ଦିତେଃ ବ୍ରତମ୍ ।
ତଦେବ ବକ୍ତିଂ ଲୋକହିତାୟ ହରିତୋଷଣମ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀରାଜୋବାଚ ।
ବ୍ରତଂ ପୁଂସବନଂ ବ୍ରହ୍ମନ୍ ଭବତା ଯଦୁଦୀରିତମ୍ ।
ତସ୍ୟ ବେଦିତୁମିଚ୍ଛାମି ଯେନ ବିଷ୍ଣୁଃ ପ୍ରସୀଦତି । ୧ ।
ଶ୍ରୀଶୁକ ଉବାଚ । ଶୁକ୍ଳେ ମାର୍ଗଶିରେ ପକ୍ଷେ ଯୋଷିଦ୍ ଭର୍ତ୍ତୁରନୁଜ୍ଞୟା ।
ଆରଭେତ ବ୍ରତମିଦଂ ସାର୍ବକାମିକମାଦିତଃ । ୨ ।
ନିଶମ୍ୟ ମରୁତାଂ ଜନ୍ମ ବ୍ରାହ୍ମଣାନନୁମନ୍ତ୍ର୍ୟ ଚ-
ସ୍ନାତ୍ୱା ଶୁକ୍ଳଦତୀ ଶୁକ୍ଳେ ବସୀତାଲଙ୍କୃତାମ୍ବରେ ।
ପୂଜୟେତ୍ ପ୍ରାତରାଶାତ୍ ପ୍ରାଗ୍ ଭଗବନ୍ତଂ ଶ୍ରିୟା ସହ । ୩ ।

---

### କଶ୍ୟପଙ୍କର ଦିତିଙ୍କୁ ହରିତୋଷଣ ବ୍ରତୋପଦେଶ ଦାନ ।

ଊନବିଂଶ ଅଧ୍ୟାୟରେ ମହାତପା ଲୋକମାନଙ୍କର ମଙ୍ଗଳ ପାଇଁ ଦିତିଙ୍କୁ ହରିତୋଷଣ ପୁଂସବନ ବ୍ରତ ଉପଦେଶ ଦେବା ବର୍ଣ୍ଣିତ ହୋଇ ଅଛି । ୦ ।

ଶ୍ରୀରାଜା କହିଲେ :—ହେ ବ୍ରହ୍ମନ୍ ! ଆପଣ ଯେଉଁ ପୁତ୍ରୋତ୍ପାଦକ ବ୍ରତ ପ୍ରସଙ୍ଗ କହିଲେ ଯହିଁରେ ବିଷ୍ଣୁ ପ୍ରସନ୍ନ ହୋଇଥାନ୍ତି ସେହି ବ୍ରତ କଥା ମୋତେ କହନ୍ତୁ । ୧ ।

ଶ୍ରୀଶୁକ ଦେବ କହିଲେ :— ନାରୀମାନେ ପତିର ଅନୁମତି ସହ ମାର୍ଗଶିର ମାସ ଶୁକ୍ଳ ପ୍ରତିପଦ ତିଥିରେ ଏହି ସର୍ବକାମ ପ୍ରଦ ବ୍ରତ ଆରମ୍ଭ କରିବେ । ୨ ।

ପ୍ରାତଃ କାଳରେ ଦନ୍ତ ମାର୍ଜନ ପୂର୍ବକ ସ୍ନାନ କରି ଶୁକ୍ଳବର୍ଣ୍ଣ ବସ୍ତ୍ର ଓ ଉତ୍ତରୀ ଧାରଣ କରି ତଦନନ୍ତର ଅଳଙ୍କାର ଧାରଣ ପୂର୍ବକ ବ୍ରାହ୍ମଣମାନଙ୍କ ଅନୁମତି ନେଇ ମରୁଦ୍‌ଗଣଙ୍କର ଜନ୍ମ ବୃତ୍ତାନ୍ତ ଶ୍ରବଣ କରିବେ । ତତ୍ ପୂର୍ବରୁ ଲକ୍ଷ୍ମୀ ଓ ବିଷ୍ଣୁଙ୍କୁ ପୂଜା କରିବେ । ୩ ।

---

ପୁଂସବନ ବ୍ରତ ବିଧାନ । ଊନବିଂଶତିରେ ବର୍ଣ୍ଣନ ॥

ଶ୍ରୀ ରାଜୋବାଚ—
ହେ ମୁନି ପୁଣ ସାବଧାନ
ଯେ ବ୍ରତ ନାମ ପୁଂସବନ
ତୁମ୍ଭେ ଯେ କହିଲ ବିଧାନ
ଏହା ଶ୍ରବଣେ ମୋର ମନ
ଏ ବ୍ରତ ପ୍ରସାଦରୁ କରି
ପ୍ରସନ୍ନ ହୁଅନ୍ତି ମୁରାରି ।୧।

ଶ୍ରୀ ଶୁକ ଉବାଚ—
ପ୍ରଥମେ ମାର୍ଗଶିର ମାସ
ଶୁକ୍ଳ ପ୍ରତିପଦ ଦିବସ
ଭର୍ତ୍ତାର ଆଜ୍ଞା ପରମାଣେ
ବ୍ରତ କରିବେ ସ୍ତ୍ରୀଗଣେ
ଏ ବ୍ରତ ଦିଏ ସର୍ବସିଦ୍ଧି
ଆଦରେ କଲେ ଯଥାବିଧି ।୨।

ବ୍ରାହ୍ମଣ କରିଣ ବରଣ
ଶୁଣିବ ମରୁତଙ୍କ ଜନ୍ମ
ଶୁଦ୍ଧ ହୋଇଣ କରି ସ୍ନାନ
ଶୁକ୍ଳ-ବସନ ପରିଧାନ
ପୂର୍ବରୁ ଭୋଜନ ନ କରି
ଚିତ୍ତକୁ ଶୁଦ୍ଧ ସ୍ଥିର କରି
ଲକ୍ଷ୍ମୀ ସହିତେ ଭଗବାନ
ପୂଜିବା ହୋଇ ତୋଷ ମନ ।୩।

ଅଲଂ ତେ ନିରପେକ୍ଷାୟ ପୂର୍ଣ୍ଣକାମ ନମୋଽସ୍ତୁ ତେ ।
ମହାବିଭୂତିପତୟେ ନମଃ ସକଲସିଦ୍ଧୟେ । ୪ ।
ଯଥା ତ୍ୱଂ କୃପୟା ଭୂତ୍ୟା ତେଜସା ମହିମୌଜସା ।
ଜୁଷ୍ଟ ଈଶଗୁଣୈଃ ସର୍ବୈସ୍ତତୋଽସି ଭଗବାନ୍ ପ୍ରଭୁଃ । ୫ ।
ବିଷ୍ଣୁପତ୍ନି ମହାମାୟେ ମହାପୁରୁଷଲକ୍ଷଣେ ।
ପ୍ରୀୟେଥା ମେ ମହାଭାଗେ ଲୋକମାତର୍ନମୋଽସ୍ତୁ ତେ । ୬ ।

ଓଁ ନମୋ ଭଗବତେ ମହାପୁରୁଷାୟ ମହାନୁଭାବାୟ ମହାବିଭୂତିପତୟେ ସହ ମହାବିଭୂତିଭିର୍ବଳିମୁପହରାଣୀତି । ଅନେନାହରହର୍ମନ୍ତ୍ରେଣ ବିଷ୍ଣୋରାବାହନାର୍ଘ୍ୟ-ପାଦ୍ୟୋପସ୍ପର୍ଶନସ୍ନାନବାସଉପବୀତବିଭୂଷଣଗନ୍ଧପୁଷ୍ପଧୂପଦୀପୋପହାରାଦ୍ୟୁପଚାରାଂଶ୍ଚ ସୁସମାହିତ ଉପାହରେତ୍ । ୭ ।

---

ହେ ପୂର୍ଣ୍ଣକାମ ଭଗବାନ୍ ! ଆପଣଙ୍କଠାରେ ସମସ୍ତ ପର୍ଯ୍ୟାପ୍ତ ରହିଅଛି । କୌଣସି ବସ୍ତୁରେ ଆପଣଙ୍କର ଆକାଙ୍କ୍ଷା ନାହିଁ । ଆପଣ ସର୍ବ ଐଶ୍ୱର୍ଯ୍ୟ ସମ୍ପନ୍ନ । ଆପଣ ଅଣିମାଦି ଅଷ୍ଟସିଦ୍ଧି ଯୁକ୍ତ, ଆପଣଙ୍କୁ ନମସ୍କାର । ୪ ।

ହେ ଜଗଦୀଶ୍ୱର ! ଆପଣ ଦୟାଶ ଶ୍ରୀ, ତେଜ, ମହିମା ପ୍ରଭାବ ଏବଂ ଅନ୍ୟାନ୍ୟ ସମସ୍ତ ପ୍ରକାର ଗୁଣରେ ସମ୍ୟକରୂପେ ଭୂଷିତ । ତେଣୁ ଆପଣ ସମସ୍ତଙ୍କର ପ୍ରଭୁ ଏବଂ ଭଗବାନ୍ ବୋଲି ବିଖ୍ୟାତ ।୫।

ହେ ମହାମାୟେ ! ଭଗବତ୍ ତୁଲ୍ୟ ସ୍ୱରୂପେ । ବିଷ୍ଣୁପତ୍ନୀ ! ମୋ ପ୍ରତି ପ୍ରୀତା ହୁଅ । ହେ ପରମ ସୌଭାଗ୍ୟ ଶାଳିନୀ ଲକ୍ଷ୍ମୀ ! ତୁମ୍ଭଙ୍କୁ ମୋର ନମସ୍କାର । ୬ ।

ମହା ପ୍ରଭାବ ସମ୍ପନ୍ନ, ଅତୁଳ ଐଶ୍ୱର୍ଯ୍ୟ ଶାଳୀ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରାତ୍ମକ ଭଗବାନ୍ ପୁରୁଷୋତ୍ତମଙ୍କୁ ମୁଁ ନମସ୍କାର କରେ ଏବଂ ତାହାଙ୍କୁ ମହାବିଭୂତି ସହ ମୁଁ ପୂଜୋପହାର ପ୍ରଦାନ କରେ——ପ୍ରତିଦିନ ଏକାଗ୍ରଚିତ୍ତରେ ଏହି ମନ୍ତ୍ରଦ୍ୱାରା ବିଷ୍ଣୁଙ୍କୁ ଆବାହନ କରି ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ସ୍ନାନୀୟ, ବସ୍ତ୍ର, ଉପବୀତ, ଆଭରଣ, ଚନ୍ଦନାଦି, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ ପ୍ରଭୃତି ଉପଚାର ପ୍ରଦାନ କରିବ ।୭

---

ହେ ନିରପେକ୍ଷ ପୂର୍ଣ୍ଣକାମ
ନମସ୍ତେ ପ୍ରଭୁ ଆତ୍ମାରାମ
ନମୋ ମହାବିଭୂ ଈଶ୍ୱର
ସକଳ ସିଦ୍ଧିର ଠାକୁର ।୪।
ଅନନ୍ତ ଗୁଣେ ଯୁକ୍ତ ତୁହି
ନମସ୍ତେ ପ୍ରଭୁ ଭବତ୍ରାହୀ ।୫।
ହେ ମହାମାୟା ବିଷ୍ଣୁରାଣି !
ଅଶେଷ ଗୁଣେ ସୁଲକ୍ଷଣୀ

ଲୋକମାତ ସୃଷ୍ଟି କାରଣ
ମୋହରେ ହୁଅ ତୁ ପ୍ରସନ୍ନ ।୬।
ନମଇଁ ପ୍ରଭୁ ଭଗବତ
ମହା ପୁରୁଷ ଆଦିଭୂତ
ମହା ବିଭୂତି ପତି ତୁହିଁ
ମହା ବିଭୂତି ଯୁକ୍ତ ହୋଇ
ଅଖିଳ ବ୍ରହ୍ମାଣ୍ଡ ଈଶ୍ୱର
ଗ୍ରହଣ କର ଉପହାର

ଏମନ୍ତ କରି ଆରାଧନ
ପୂଜିବ ଲକ୍ଷ୍ମୀ-ନାରାୟଣ
ପାଦ୍ୟ ଅର୍ଘ୍ୟ ଯେ ଆବାହନ
ବିଧିରେ କରାଇଣ ସ୍ନାନ
ଦିବ୍ୟ ବସନ ସମର୍ପିବ
ଶୁକ୍ଳ ଉତ୍ତରୀ ନୈବେଦ୍ୟ
ନାନା ଭୂଷଣ ଗନ୍ଧ ଧୂପ
ପ୍ରସୂନ ଉପହାର ଦୀପ

ହୁତଃ ଶେଷଞ୍ଚ ଜୁହୁୟାଦନଲେ ଦ୍ୱାଦଶାହୁତୀଃ ।
ଓଁ ନମୋ ଭଗବତେ ମହାପୁରୁଷାୟ ମହାବିଭୂତିପତୟେ ସ୍ୱାହେ ତି ।୮।
ଶ୍ରିୟଂ ବିଷ୍ଣୁଞ୍ଚ ବରଦାବାଶିଷାଂ ପ୍ରଭବାବୁଭୌ ।
ଭକ୍ତ୍ୟା ସମ୍ପୂଜୟେନ୍ନିତ୍ୟଂ ଯଦୀଚ୍ଛେତ୍ସର୍ବସମ୍ପଦଃ । ୯ ।
ପ୍ରଣମେଦ୍ ଦଣ୍ଡବଦ୍‌ଭୂମୌ ଭକ୍ତିପ୍ରହ୍ୱେଣ ଚେତସା ।
ଦଶବାରଂ ଜପେନ୍ମନ୍ତ୍ରଂ ତତଃ ସ୍ତୋତ୍ରମୁଦୀରୟେତ୍ ।୧୦ ।
ଯୁବାଂ ତୁ ବିଶ୍ୱସ୍ୟ ବିଭୂ ଜଗତଃ କାରଣଂ ପରମ୍ ।
ଇୟଂ ହି ପ୍ରକୃତିଃ ସୂକ୍ଷ୍ମା ମାୟାଶକ୍ତିର୍ଦୁରତ୍ୟୟା । ୧୧ ।
ତସ୍ୟା ଅଧୀଶ୍ୱରଃ ସାକ୍ଷାତ୍ ତ୍ୱମେବ ପୁରୁଷଃ ପରଃ ।
ତ୍ୱଂ ସର୍ବଯଜ୍ଞ ଇଜ୍ୟେୟଂ କ୍ରିୟେୟଂ ଫଳଭୁଗ୍ ଭବାନ୍ । ୧୨ ।

---

ମହା ବିଭୂତିମାନଙ୍କର ଅଧିପତି ଭଗବାନ୍ ପୁରୁଷୋତ୍ତମଙ୍କୁ ନମସ୍କାର କରି ଏହି ଉପସ୍କର ମାନ ଅର୍ପଣ କରି ଏହି ମନ୍ତ୍ରରେ ପୂଜାର ଅବଶିଷ୍ଟ ବସ୍ତୁ ଦ୍ୱାରା ଅଗ୍ନିରେ ଦ୍ୱାଦଶ ଆହୁତି ପ୍ରଦାନ କରିବ ।୮।

ଯେଉଁ ଯଦି ସର୍ବପ୍ରକାର ମଙ୍ଗଳ ଲାଭକରିବାକୁ ଇଚ୍ଛା କରେ ସେ ପ୍ରତିଦିନ ଭକ୍ତି ପୂର୍ବକ ଲକ୍ଷ୍ମୀ ଓ ବିଷ୍ଣୁଙ୍କୁ ସମ୍ୟକ ଭାବରେ ପୂଜା କରିବ କାରଣ ସେମାନେ ଉଭୟ ସମସ୍ତ ବାଞ୍ଛିତ ଫଳରେ ଉତ୍ପାଦକ ଓ ବର ପ୍ରଦାନ କରିବାକୁ ସମର୍ଥ । ୯ ।

ଭକ୍ତିପୂର୍ଣ୍ଣ ଚିତ୍ତରେ ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ କରି ଦଶଥର ମନ୍ତ୍ର ଜପ କରିବ ଏବଂ ତଦନନ୍ତର ସ୍ତବ ପାଠ କରିବ । ୧୦ ।

ଆପଣମାନେ ଉଭୟ ବିଶ୍ୱବ୍ୟାପୀ ସମଗ୍ରଜଗତର ପ୍ରଧାନ କାରଣ । ଅଲଙ୍ଘନୀୟ ମାୟାଶକ୍ତି ରୂପିଣୀ ଲକ୍ଷ୍ମୀଦେବୀ ସୂକ୍ଷ୍ମ ପ୍ରକୃତି ସ୍ୱରୂପା । ୧୧ ।

ହେ ଭଗବନ୍ ! ସାକ୍ଷାତ୍ ପରମପୁରୁଷ ସ୍ୱରୂପ ଆପଣ ଏହି ପ୍ରକୃତି ସ୍ୱରୂପା ଲକ୍ଷ୍ମୀଦେବୀଙ୍କର ପରମ ନିୟନ୍ତା । ସେ ଯଜ୍ଞ ସମ୍ପାଦକ ଭାବନା ନାମକ ବ୍ୟାପାର ସ୍ୱରୂପା । ଆପଣ ସର୍ବ ଯଜ୍ଞ ରୂପୀ, ଏହି ଲୌକିକ କ୍ରିୟା ସ୍ୱରୂପା ଏବଂ ଆପଣ ଫଳ ଭୋକ୍ତା । ୧୨ ।

---

ଅପରେ ଯେତେ ଉପସ୍କର
ସ୍ଥାପିବ ବିଷ୍ଣୁର ଛାମୁର
ହବି ଅବୃତ ଯେ ଦ୍ୱାଦଶ।
ଅନଳେ ଦେବ ଅବଶେଷ
ନମୋ ଭଗବ ନ ଈଶ୍ୱର
ମହାପୁରୁଷ ଦେବବର
ମହାବିଭୂତି ପତି ତୁହି
"ସ୍ୱାହା"ବୋଲିଅର୍ପିବତହିଁ ।୭,୮
ଲକ୍ଷ୍ମୀ ଅଚ୍ୟୁତ ବେନିଜନ
ବର ଦାୟକ ନିଶ୍ଚେ ଜାଣ
ଭକ୍ତିରେ ନିତ୍ୟେ ସେ ପୂଜିବ
ସର୍ବ ସମ୍ପଦ ଯେ ଇଚ୍ଛିବ ।୯।
ଭାବରେ ହୋଇ ଭକ୍ତିଯୁକ୍ତ
ଭୂମିରେ କରି ଦଣ୍ଡବତ
ମନ୍ତ୍ର ଜପିବ ଦଶବାର
ଏ ସ୍ତୋତ୍ର କରିବ ଉଚ୍ଚାର ।୧୦।
ତୁମ୍ଭେ ଯେ ତ୍ରୈଲୋକ୍ୟ ଈଶ୍ୱର
ସକଳ ବ୍ରହ୍ମାଣ୍ଡ ଠାକୁର
ସଂସାର ପରମ କାରଣ
ତୁମ୍ଭେ ଯେ ଅଟ ନାରାୟଣ
ଏ ଯେ ସୂକ୍ଷ୍ମ ମାୟା ପ୍ରକୃତି
ଦୁରନ୍ତ ଅଟଇ ଶକତି
ଏହାର ତୁମ୍ଭେ ଅଧୀଶ୍ୱର
ସାକ୍ଷାତ ପୁରୁଷଙ୍କ ପର
ତୁମ୍ଭେ ସକଳ ଯଜ୍ଞମୟ
ଇଜ୍ୟା ରୂପରେ ଲକ୍ଷ୍ମୀ ହୁଅ
ଅଶେଷ କ୍ରିୟାର ଈଶ୍ୱର
ଫଳ ଭୋକତା ନରହରି ।୧୧,୧୨

ଗୁଣବ୍ୟକ୍ତିରିୟଂ ଦେବୀ ବ୍ୟଞ୍ଜକୋ ଗୁଣଭୁଗ୍ ଭବାନ୍ ।
ତ୍ୱଂ ହି ସର୍ବଶରୀର୍ଯ୍ୟାତ୍ମା ଶ୍ରୀଃ ଶରୀରେନ୍ଦ୍ରିୟାଶୟା ।
ନାମରୂପେ ଭଗବତୀ ପ୍ରତ୍ୟୟସ୍ତ୍ୱମପାଶ୍ରୟଃ । ୧୩ ।
ଯଥା ଯୁବାଂ ତ୍ରିଲୋକସ୍ୟ ବରଦୌ ପରମେଷ୍ଠିନୌ ।
ତଥା ମ ଉତ୍ତମଶ୍ଲୋକଃ ସନ୍ତୁ ସତ୍ୟା ମହାଶିଷଃ । ୧୪ ।
ଇତ୍ୟଭିଷ୍ଟୂୟ ବରଦଂ ଶ୍ରୀନିବାସଂ ଶ୍ରିୟା ସହ ।
ତନ୍ନିଃସାର୍ଯ୍ୟୋପହରଣଂ ଦତ୍ତ୍ୱାଚମନମର୍ଚ୍ଚୟେତ୍ । ୧୫ ।
ତତଃ ସ୍ତୁବୀତ ସ୍ତୋତ୍ରେଣ ଭକ୍ତିପ୍ରହ୍ୱେଣ ଚେତସା ।
ଯଜ୍ଞୋଚ୍ଛିଷ୍ଟମବଘ୍ରାୟ ପୁନରଭ୍ୟର୍ଚ୍ଚୟେଦ୍ଧରିମ୍ । ୧୬ ।

---

ଏହି ଲକ୍ଷ୍ମୀଦେବୀ ସତ୍ତ୍ୱାଦି ଗୁଣତ୍ରୟର ପ୍ରକାଶ ସ୍ୱରୂପା ଆପଣ ସେହି ଗୁଣମାନଙ୍କର ଭୋକ୍ତା ଓ ପ୍ରକାଶକ । ଆପଣ ସମସ୍ତ ପ୍ରାଣୀଙ୍କର ଆତ୍ମା । ସେ ଶରୀର, ଇନ୍ଦ୍ରିୟ ଓ ପ୍ରାଣ ସ୍ୱରୂପା, ସେ ନାମ ଓ ରୂପ ସ୍ୱରୂପା ଆପଣ ସେହି ନାମ ଓ ରୂପର ପ୍ରକାଶକ ଏବଂ ଆଶ୍ରୟ ସ୍ୱରୂପ । ୧୩ ।

ହେ ପୁଣ୍ୟଶ୍ଳୋକ ଭଗବାନ୍ ! ଆପଣ ଓ ଲକ୍ଷ୍ମୀଦେବୀ ତ୍ରିଭୁବନର ବରପ୍ରଦ ପରମେଶ୍ୱର ! ଅତଏବ ମୋତେ ମୋର ଈର ମଙ୍ଗଳ ବିଧାନ କରନ୍ତୁ । ୧୪ ।

ଏହିପରି ଲକ୍ଷ୍ମୀ ଓ ବିଷ୍ଣୁଙ୍କୁ ସ୍ତବ କରି ପୂର୍ବ ନିବେଦିତ ସାମଗ୍ରୀମାନ ସ୍ଥାନାନ୍ତର କରି ଆଚମନ ପ୍ରଦାନ କରି ପୁନର୍ବାର ପୂଜା କରିବ । ୧୫

ତଦନନ୍ତର ଭକ୍ତି ବିନମ୍ର ଚିତ୍ତରେ ପୂର୍ବୋକ୍ତ ସ୍ତୋତ୍ରପାଠ କରି ଯଜ୍ଞାବଶିଷ୍ଟ ଦ୍ରବ୍ୟ ଆଘ୍ରାଣ କରି ପୁନର୍ବାର ଶ୍ରୀହରିଙ୍କୁ ପୂଜା କରିବ । ୧୬ ।

---

ଗୁଣ ବ୍ୟକ୍ତିର ଏ କାରଣ
ଏହାର ଭୋକ୍ତା ଭଗବାନ
ସର୍ବ ଶରୀରରେ ଆତ୍ମା ତୁହି
ଲକ୍ଷ୍ମୀ ଇନ୍ଦ୍ରିୟ ପ୍ରାଣ ହୋଇ
ନାମ ରୂପରେ ଏହୁ ସ୍ଥିତ
ଆଶ୍ରୟରୂପେ ତୁମ୍ଭେ ସ୍ଥିତ ।୧୩।
ଯେମନ୍ତେ ତୁମ୍ଭେ ବ୍ରହ୍ମାଣ୍ଡର
ବରକୁ ଦିଅ ହେ ଈଶ୍ୱର

ତେମନ୍ତ ହୋଇ ଚକ୍ରଧର
ସର୍ବ ମଙ୍ଗଳ ହେଉ ମୋର ।୧୪।
ଲକ୍ଷ୍ମୀ-ନିବାସ ଯେ ପୁରୁଷ
ଏହି ସ୍ତୁତିରେ କରି ତୋଷ
ପୂଜିବ ଲକ୍ଷ୍ମୀ-ନାରାୟଣ
ସେ ପ୍ରଭୁ ବ୍ରହ୍ମାଣ୍ଡ କାରଣ
ପୂଜା ଉପସ୍କର ଟେଲିଛିବ
ସନ୍ତୋଷେ ଆଚମନ ଦେବ ।୧୫।

ଏ ଅନନ୍ତରେ ପୁନର୍ବାର
ଅର୍ଚ୍ଚନା କରିବ ଈଶ୍ୱର
ଯଜ୍ଞ ଉଚ୍ଛିଷ୍ଟକୁ ଆଘ୍ରାଣ
କରିବ ତୋଷ ହୋଇ ମନ
ଚିତ୍ତରେ ହୋଇ ଭାବଭକ୍ତି
ପୁନଃ କରିବ ସ୍ତୋତ୍ରେ ସ୍ତୁତି ।୧୬

ପତିଞ୍ଚ ପରୟା ଭକ୍ତ୍ୟା ମହାପୁରୁଷଚେତସା ।
ପ୍ରିୟୈସ୍ତୈସ୍ତୈରୁପନମେତ୍ ପ୍ରେମଶୀଳଃ ସ୍ୱୟଂ ପତିଃ ।
ବିଭୃୟାତ୍ ସର୍ବକର୍ମାଣି ପତ୍ନ୍ୟା ଉଚ୍ଚାବଚାନି ଚ । ୧୭ ।
କୃତମେକତରେଣାପି ଦମ୍ପତ୍ୟୋରୁଭୟୋରପି ।
ପତ୍ନ୍ୟାଂ କୁର୍ଯ୍ୟାଦନର୍ହାୟାଂ ପତିରେତତ୍ ସମାହିତଃ । ୧୮ ।
ବିଷ୍ଣୋର୍ବ୍ରତମିଦଂ ବିଭ୍ରନ୍ନ ବିହନ୍ୟାତ୍ କଥଞ୍ଚନ ।
ବିପ୍ରାନ୍ ସ୍ତ୍ରିୟୋ ବୀରବତୀଃ ସ୍ରଗ୍‌ଗନ୍ଧବଳିମଣ୍ଡନୈଃ ।
ଅର୍ଚ୍ଚେଦହରହର୍ଭକ୍ତ୍ୟା ଦେବଂ ନିୟମମାସ୍ଥିତା । ୧୯ ।
ଉଦ୍‌ବାସ୍ୟ ଦେବଂ ସ୍ୱେ ଧାମ୍ନି ତନ୍ନିବେଦିତମଗ୍ରତଃ ।
ଅଦ୍ୟାଦାତ୍ମବିଶୁଦ୍ଧ୍ୟର୍ଥଂ ସର୍ବକାମସମୃଦ୍ଧୟେ । ୨୦ ।

---

ପରମ ଭକ୍ତି ସହକାରେ ପତିଙ୍କୁ ସାକ୍ଷାତ୍ ଭଗବାନ୍ ବୋଲି ଜାଣିକରି ତାହାଙ୍କର ପ୍ରିୟବସ୍ତୁ ଦ୍ୱାରା ତାହାଙ୍କୁ ସେବା କରିବ । ପତି ମଧ୍ୟ ପ୍ରେମ ପରାୟଣ ଚିତ୍ତରେ ପତ୍ନୀର ଭଲମନ୍ଦ ସମସ୍ତ କାର୍ଯ୍ୟରେ ଅନୁକୂଳ ଭାବ ପ୍ରକାଶ କରିବେ । ଏହି ବ୍ରତ ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କ ମଧ୍ୟରୁ ଜଣେ କଲେ ମଧ୍ୟ ଫଳ ଲାଭ ହୁଏ । ସୁତରାଂ କୌଣସି କାରଣରୁ ପତ୍ନୀ ଅସମର୍ଥ, ହେଲେ ପତି ଏକାଗ୍ରଚିତ୍ତରେ ଏହା ସମ୍ପାଦନ କରିବେ । ୧୭,୧୮ ।

ଏହିପରି ହରି ତୋଷଣ ବ୍ରତ ଧାରଣ କରି ଏହା କଦାପି ଭଙ୍ଗ କରିବ ନାହିଁ । ପ୍ରତିଦିନ ଭକ୍ତି ସହକାରେ ମାଲ୍ୟ, ଗନ୍ଧ, ବସ୍ତ୍ର, ଅଳଙ୍କାରାଦି ଦ୍ୱାରା ବ୍ରାହ୍ମଣ ଓ ସଧବା ସ୍ତ୍ରୀ ମାନଙ୍କୁ ଅର୍ଚ୍ଚନା କରିବ ଏବଂ ସେହି ନିୟମପାଳନ କରି ଭଗବାନ୍ ବିଷ୍ଣୁଙ୍କ ପୂଜା କରିବ । ୧୯ ।

ପ୍ରଥମେ ଲକ୍ଷ୍ମୀଙ୍କ ସହ ବିଷ୍ଣୁଙ୍କୁ ସ୍ୱଧାମକୁ ଗମନ ନିମନ୍ତେ ବିସର୍ଜନ କରି ପରେ ଆତ୍ମଶୁଦ୍ଧି ନିମିତ୍ତ ଏବଂ ସର୍ବକାମ୍ୟ ଫଳ ପ୍ରାପ୍ତି ନିମିତ୍ତ ନିବେଦିତ ପ୍ରସାଦରୁ କିଛି ଭୋଜନ କରିବ । ୨୦ ।

---

ସ୍ୱାମୀଙ୍କ ଭକ୍ତିରେ ପୂଜିବ
ଈଶ୍ୱର ଭାବରେ ଚିନ୍ତିବ
ନାନା ପ୍ରକାରେ ପ୍ରିୟ କରି
ସ୍ୱାମି ତୋଷିବ ଭଜନାରି
ପତ୍ନୀ ସହିତ ହୋଇ କରି
ସର୍ବ କର୍ମ ସ୍ୱାମୀ ଆଚରି ।୧୭।
ଏ ବ୍ରତ ପତି-ପତ୍ନୀ ଦୁଇ
ପାଳିବେ ଏକ ବା କରଇ

ଏ ବିଷ୍ଣୁ ବ୍ରତକୁ ଧରିବ
କେବେହେଁ ଭଗ୍ନ ନ କରିବ
ଗନ୍ଧ ମାଳା ମଣି ଭୂଷଣେ
ବ୍ରତେ ତୋଷିବ ବିପ୍ରଗଣେ
ଭକ୍ତିରେ ଯୁକ୍ତ କରି ମନ
ନିୟମେ ଥିବ ପ୍ରତିଦିନ ।୧୮,୧୯।
ସାଷ୍ଟାଙ୍ଗେ ଈଶ୍ୱରେ ନମିବ
ସ୍ୱସ୍ଥାନେ ନେଇ ବସାଇବ

ଭକ୍ତିଭାବରେ ନୈବେଦ୍ୟନ
ନିର୍ମାଲ୍ୟ କରିବ ଭୋଜନ
ସର୍ବ କାମନା ପୂର୍ଣ୍ଣ ପାଇଁ
କରିବ ଭକ୍ତିଯୁକ୍ତ ହୋଇ ।୨୦।

ଏତେନ ପୂଜାବିଧିନା ମାସାନ୍ ଦ୍ୱାଦଶ ହାୟନମ୍ ।
ନୀତ୍ୱାଥୋପରମେତ୍ ସାଧ୍ୱୀ କାର୍ତ୍ତିକେ ଚରମେଽହନି । ୨୧ ।
ଶ୍ୱୋଭୂତେଽପ ଉପସ୍ପୃଶ୍ୟ କୃଷ୍ଣମଭ୍ୟର୍ଚ୍ୟ ପୂର୍ବବତ୍ ।
ପୟଃଶୃତେନ ଜୁହୁୟାଚ୍ଚରୁଣା ସହ ସର୍ପିଷା ।
ପାକୟଜ୍ଞବିଧାନେନ ଦ୍ୱାଦଶୈବାହୁତୀଃ ପତିଃ । ୨୨ ।
ଆଶିଷଃ ଶିରସାଦାୟ ଦ୍ୱିଜୈଃ ପ୍ରୀତୈଃ ସମୀରିତାଃ ।
ପ୍ରଣମ୍ୟ ଶିରସା ଭକ୍ତ୍ୟା ଭୁଞ୍ଜୀତ ତଦନୁଜ୍ଞୟା । ୨୩ ।
ଆଚାର୍ୟମଗ୍ରତଃ କୃତ୍ୱା ବାଗ୍ୟତଃ ସହ ବନ୍ଧୁଭିଃ ।
ଦଦ୍ୟାତ୍ ପତ୍ନ୍ୟୈ ଚରୋଃ ଶେଷଂ ସୁପ୍ରଜାସ୍ତ୍ୱଂ ସୁସୌଭଗମ୍ । ୨୪ ।
ଏତଚ୍ଚରିତ୍ୱା ବିଧିବଦ୍ ବ୍ରତଂ ବିଭୋରଭୀପ୍ସିତାର୍ଥଂ ଲଭତେ ପୁମାନିହ ।
ସ୍ତ୍ରୀ ଚୈତଦାସ୍ଥାୟ ଲଭେତ ସୌଭଗଂ ଶ୍ରିୟଂ ପ୍ରଜାଂ ଜୀବପତିଂ ଯଶୋ ଗୃହମ୍ । ୨୫ ।

---

ସାଧ୍ୱୀ ନାରୀ ଏହିପରି ପୂଜାବିଧିରେ ବର୍ଷେ କାଳ ଯାପନ କରି କାର୍ତ୍ତିକ ମାସର ଶେଷଦିନ ଅମାବାସ୍ୟାରେ ଉପବାସ କରିବ । ୨୧ ।

ପରଦିନ ପ୍ରାତଃକାଳରେ ପତି ଆଚମନ କରି ପୂର୍ବୋକ୍ତ ରୂପେ ଶ୍ରୀକୃଷ୍ଣ ପୂଜାକରି ତହିଁ ସହିତ ସ୍ଥାଳୀ (ଘୃତ ପ୍ରଦାନ କରି ଦୁଗ୍ଧରେ ଚରୁ ପାକକରି ) ତହିଁରେ ଦ୍ୱାଦଶାହୁତି ପ୍ରଦାନ କରିବ । ୨୨ ।

ବ୍ରାହ୍ମଣମାନେ ସନ୍ତୁଷ୍ଟ ହୋଇ ଆଶୀର୍ବାଦ କଲାବେଳେ ଅବନତ ମସ୍ତକରେ ତାହା ଗ୍ରହଣ କରି ଭୋଜନ କରିବ । ୨୩ ।

ତଦନନ୍ତର ପୁରୋହିତଙ୍କୁ ଅଗ୍ରଣୀ କରି ବାକ୍ ସଂଯମନ ପୂର୍ବକ ବନ୍ଧୁଜନ ପରିବେଷ୍ଟିତ ହୋଇ ସେହି ହୋମାବଶିଷ୍ଟ ଚରୁ ପତ୍ନୀଙ୍କୁ ଦାନ କରିବ । ଏହି ଚରୁଦ୍ୱାରା ସୌଭାଗ୍ୟ ଓ ସୁପୁତ୍ରଲାଭ ହୋଇଥାଏ । ୨୪

ଇହ ଲୋକରେ ପୁରୁଷ ଯେବେ ଏହି ହରିତୋଷଣ ବ୍ରତ ଯଥା ବିଧି ଆଚରଣ କରନ୍ତି ତେବେ ଅଭିଲଷିତ ଫଳଲାଭ କରି ପାରନ୍ତି । ସ୍ତ୍ରୀଲୋକମାନେ ଏହା ଆଚରଣ କଲେ ସୌଭାଗ୍ୟ ସମ୍ପଦ, ସନ୍ତାନ, ଅବୈଧବ୍ୟ, ଯଶ ଓ ଉତ୍ତମ ବାସସ୍ଥାନ ପ୍ରାପ୍ତ ହୋଇଥାନ୍ତି । ୨୫ ।

---

ଏ ପୂଜା ବିଧି ବାର ମାସ
କରିବ ଏକଇ ବରଷ
କାର୍ତ୍ତିକ ପୂର୍ଣ୍ଣିମା ଦିବସେ
ରହିବ ପୁଣି ଉପବାସେ । ୨୧ ।
ତାହାର ଯେଉଁ ପର ଦିନ
ବିଧିରେ କରି ଆଚମନ
ପୂର୍ବର ପ୍ରାୟ କରି ପୁଣି
ବିଷ୍ଣୁ ଅର୍ଚ୍ଚିବ ତହୁଁ ଆଣି

ଚରୁଘୃତ ସହିତେ କ୍ଷୀରେ
ହୋମକୁ କରିବ ବିଧିରେ
ଯଜ୍ଞ ବିଧାନେ ଯଜ୍ଞ ଶେଷ
ଆହୁତି ଦେବ ସେ ଦ୍ୱାଦଶ । ୨୨ ।
ଆଶିଷ ଘେନିବ ମସ୍ତକେ
ବ୍ରାହ୍ମଣମାନଙ୍କର ବାକ୍ୟେ
ଭକ୍ତିରେ କରି ନମସ୍କାର
ଭୁଞ୍ଜିବ ଆଜ୍ଞାରେ ତାଙ୍କର । ୨୩ ।

ଆଚାର୍ଯ୍ୟ କରିଣ ଅଗ୍ରତେ
ଶୁଦ୍ଧ ହୋଇ ବନ୍ଧୁ ସହିତେ
ପତ୍ନୀକି ଚରୁ ଦେବ ନେଇ
ସୁପୁତ୍ର ସୁଭାଗ୍ୟର ପାଇଁ । ୨୪ ।
ଏ ବିଷ୍ଣୁ ବ୍ରତ ଯେ କରଇ
ବାଞ୍ଛିତ ଫଳ ସେ ଲଭଇ
ଯେ ସ୍ତ୍ରୀ ଏ ବ୍ରତକୁ ଆଚରି
ସୌଭାଗ୍ୟ ଭର୍ତ୍ତା ହୋଇତେ ଶସ୍ୟ

କନ୍ୟା ଚ ବିନ୍ଦେତ ସମଗ୍ରଲକ୍ଷଣଂ ପତିଂ ତ୍ୱବୀରା ହତକିଲ୍ବିଷା ଗତିମ୍ ।
ମୃତପ୍ରଜା ଜୀବସୁତା ଧନେଶ୍ୱରୀ ସୁଦୁର୍ଭଗା ସୁଭଗା ରୂପମଗ୍ର୍ୟମ୍ । ୨୬ ।
ବିନ୍ଦେଦ୍ ବିରୂପା ବିରୁଜା ବିମୁଚ୍ୟତେ ଯ ଆମୟାବୀନ୍ଦ୍ରିୟକଲ୍ୟଦେହମ୍ ।
ଏତତ୍ ପଠନ୍ନଭ୍ୟୁଦୟେ ଚ କର୍ମଣ୍ୟନନ୍ତତୃପ୍ତିଃ ପିତୃଦେବତାନାମ୍ । ୨୭ ।
ତୁଷ୍ଟାଃ ପ୍ରୟଚ୍ଛନ୍ତି ସମସ୍ତକାମାନ୍ ହୋମାବସାନେ ହୁତଭୁକ୍ ଶ୍ରୀହରିଶ୍ଚ ।
ରାଜନ୍ ମହନ୍ମରୁତାଂ ଜନ୍ମ ପୁଣ୍ୟଂ ଦିତେର୍ବ୍ରତଂ ଚାଭିହିତଂ ମହତ୍ ତେ । ୨୮ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ପୁଂସବନବ୍ରତକଥନଂ ନାମୈକୋନବିଂଶୋଽଧ୍ୟାୟଃ । ୧୯ ।

---

ଅବିବାହିତା କୁମାରୀ ଏହି ବ୍ରତ ପାଳନ କଲେ ସର୍ବସୁଲକ୍ଷଣ ସମ୍ପନ୍ନ ସ୍ୱାମୀ ଲାଭ କରିବ । ପତି, ପୁତ୍ରହୀନା ରମଣୀ ପାପକ୍ଷୟ ପୂର୍ବକ ଶୁଭଗତି ଲାଭ କରି ପାରିବ । ମୃତବତ୍ସାର ଦୀର୍ଘଜୀବୀ ପୁତ୍ର ଜାତ ହେବ । ଯେଉଁ ନାରୀ ଧନବତୀ ହୋଇ ମଧ୍ୟ ଦୁର୍ଭାଗ୍ୟବତୀ ସେ ସୌଭାଗ୍ୟବତୀ ହୋଇ ପାରିବ । କୁରୂପା ନାରୀ ସୁନ୍ଦରୀ ହେବ । ରୋଗୀ ଏହି ବ୍ରତ ପ୍ରଭାବରେ କଠିନ ରୋଗ ମୁକ୍ତ ହେବ ଏବଂ ଇନ୍ଦ୍ରିୟବର୍ଗଙ୍କର ସବଳତା ଲାଭ କରିବ । ୨୬ ।

ଆଭ୍ୟୁଦୟିକ କାର୍ଯ୍ୟ ସମୟରେ ଏହି ଉପାଖ୍ୟାନ ପାଠ କଲେ ଦେବତା ଓ ପିତୃଲୋକଗଣ ଅତ୍ୟନ୍ତ ତୃପ୍ତ ହୁଅନ୍ତି । ହୋମାବସାନରେ ପାଠ କଲେ ଅଗ୍ନି, ଲକ୍ଷ୍ମୀ, ବିଷ୍ଣୁ ସନ୍ତୁଷ୍ଟ ହୋଇ ସମସ୍ତ କାମ୍ୟ ଫଳ ପ୍ରଦାନ କରନ୍ତି । ୨୭ ।

ହେ ମହାରାଜ ପରୀକ୍ଷିତ । ପବନଗଣଙ୍କର ବିସ୍ତାରିତ ପବିତ୍ର ଜନ୍ମ ବୃତ୍ତାନ୍ତ ଓ ଦିତିଙ୍କର ସେହି ମହାତ୍ମ୍ୟ ପୂର୍ଣ୍ଣ ହରିତୋଷଣ ବ୍ରତ ତୁମ୍ଭ ନିକଟରେ ବର୍ଣ୍ଣନା କଲି । ୨୮ ।

---

ଉତ୍ତମ ପୁତ୍ର ସ୍ୱାମୀ ଯଶ
ଏ ସର୍ବ ଲଭଇ ଅକ୍ଳେଶ ।୨୬।
କନ୍ୟା ଏ ବ୍ରତେ ଲଭେ ବର
ଉତ୍ତମ ଲକ୍ଷଣ ଯାହାର
ବିଧବା ଅପୁତ୍ରିକ ନୋହି
ସେ ନାରୀ ନିଷ୍ପାପ ହୁଅଇ
ଦୁର୍ଭାଗା ସୌଭାଗ୍ୟ ଲଭଇ
ବିରୂପ ସୁରୂପ ହୁଅଇ
ମୃତବତ୍ସା ବା ଯେତେ ନାରୀ
ସୁପୁତ୍ରୀ ହୋନ୍ତି ଧନେଶ୍ୱରୀ

ସର୍ବ ରୋଗରୁ ମୁକ୍ତ ହୋଇ
ନିର୍ମଳ ହୋଇ ତାର ଦେହ ।୨୬।
ସକଳ କର୍ମର ଅନ୍ତରେ
ଯେ ଏହା ପଢେ ନିରନ୍ତରେ
ପିତୃ ଦେବତା ତୋଷ ହୋନ୍ତି
ତାହାର ବାଞ୍ଛିତ ଦିଅନ୍ତି
ହୋମର ଅବସାନେ ତାର
ହବି ଭୁଞ୍ଜନ୍ତି ଚକ୍ରଧର ।୨୭।
ମରୁତ ଜନ୍ମ ହେ ରାଜନ
ତୁମ୍ଭେ ଯେ ମୋତେ କଲ ପ୍ରଶ୍ନ

ଦିତିର ବ୍ରତ ଆଦି କରି
ତୁମ୍ଭରେ କହିଲି ବିସ୍ତାରି ।୨୮।
ବିପ୍ର ଜଗନ୍ନାଥ ବୋଲଇ
ପବନ ଜନ୍ମ କଥା ଏହି
ଏଣେ ଯେ ହୋଇ ସାବଧାନ
ଲଭନ୍ତି ଧନ ବସ୍ତୁ ଜନ ॥



ଊନବିଂଶ ଅଧ୍ୟାୟରେ କେବଳ ଫଳଶ୍ରୁତି ବିଷୟ ବର୍ଣ୍ଣିତ ହୋଇଅଛି । ଏଥିର ଚିତ୍ରଦାର୍ଥ ଲେଖିବା ଅପ୍ରୟୋଜନ ।

## (୧) ପରିଶିଷ୍ଟ

### ଅଥ ଅଷ୍ଟାକ୍ଷର ନାରାୟଣ ମନ୍ତ୍ରଃ ।

ଓଁ ଅଷ୍ଟାକ୍ଷର ନାରାୟଣ ମନ୍ତ୍ରସ୍ୟ । ସାଧ ନାରାୟଣ ଋଷିଃ । ଦୈବୀ ଗାୟତ୍ରୀ ଛନ୍ଦଃ ନାରାୟଣୋ ଦେବତା । ଅକାରେ ବୀଜଂ, ଉକାରଃ ଶକ୍ତିଃ, ମକାରଃ କୀଳକଂ, ମମାଭିଷ୍ଟ ସିଦ୍ଧୌ ବିନିଯୋଗଃ ।

**କରନ୍ୟାସ ।**—ଓଁ କ୍ରୁଦ୍ଧୋଲ୍କାୟ ସ୍ୱାହା ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ମହୋଲ୍କାୟ ସ୍ୱାହା ତର୍ଜ୍ଜନୀଭ୍ୟାଂ ସ୍ୱାହା । ଓଁ ବୀରୋଲ୍କାୟ ସ୍ୱାହା ମଧ୍ୟମାଭ୍ୟାଂ ବୌଷଟ୍ । ଓଁ ଅପ୍ୟୁଲ୍କାୟ ସ୍ୱାହା ଅନାମିକାଭ୍ୟାଂ ହୁଂ । ଓଁ ସହସ୍ରୋଲ୍କାୟ ସ୍ୱାହା କନିଷ୍ଠାଭ୍ୟାଂ ବୌଷଟ୍ । ଓଁ ଯନ୍ତ୍ରୋଲ୍କାୟ ସ୍ୱାହା କରତଳକର ପୃଷ୍ଠାଭ୍ୟାଂ ଫଟ୍ ।

**ଅଙ୍ଗନ୍ୟାସ ।**—ଓଁ କ୍ରୁଦ୍ଧୋଲ୍କାୟ ସ୍ୱାହା, ହୃଦୟାୟ ନମଃ । ଓଁ ମହୋଲ୍କାୟ ସ୍ୱାହା ଶିରସେ ସ୍ୱାହା ଓଁ ବୀରୋଲ୍କାୟ ସ୍ୱାହା, ଶିଖାୟୈ ବୌଷଟ୍ । ଓଁ ଅପ୍ୟୁଲ୍କାୟ ସ୍ୱାହା, କବଚାୟ ହୁଂ । ଓଁ ସହସ୍ରୋଲ୍କାୟ ସ୍ୱାହା ନେତ୍ରାଭ୍ୟାଂ ବୌଷଟ୍ । ଓଁ ଯନ୍ତ୍ରୋଲ୍କାୟ ସ୍ୱାହା କରତଳକର ପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍ ।

**ଧ୍ୟାନଂ ।**—ଉଦ୍ୟତ୍‌କୋଟିଦିବାକରାଭମନିଶଂ ଶଙ୍ଖଂ ଗଦାଂ ପଙ୍କଜଂ ।
ଚକ୍ରଂ ବିଭ୍ରତମିନ୍ଦିରା ବସୁମତୀ ସଂଶୋଭି ପାର୍ଶ୍ୱଦ୍ୱୟମ୍ ॥
କୋଟୀରାଙ୍ଗଦ ହାର-କୁଣ୍ଡଳଧରଂ ପୀତାମ୍ବରଂ କୌସ୍ତୁଭୋ-
ଦ୍ଦୀପ୍ତଂ ବିଶ୍ୱଧରଂ ସ୍ୱବକ୍ଷସି ଲସତ୍ ଶ୍ରୀବତ୍ସ ଚିହ୍ନଂ ଭଜେ ॥

**ମନ୍ତ୍ରଃ ।**—ଓଁ ନମୋ ନାରାୟଣ, ଇତି ମନ୍ତ୍ରେଣ ଯଥା ଶକ୍ତ୍ୟୁପଚାରୈଃ ସଂପୂଜ୍ୟ, ଶତମଷ୍ଟୋତ୍ତର ଜପଂ କୁର୍ଯ୍ୟାତ୍ ।

### ଅଥ ଦ୍ୱାଦଶାକ୍ଷର ବାସୁଦେବ ମନ୍ତ୍ରଃ ।

ଯଥା—ଓଁ ଅସ୍ୟ ଶ୍ରୀ ଦ୍ୱାଦଶାକ୍ଷର ବାସୁଦେବ ମନ୍ତ୍ରସ୍ୟ । ନାରଦଋଷିଃ ଗାୟତ୍ରୀଛନ୍ଦଃ ଶ୍ରୀ ବାସୁଦେବ ପରମାତ୍ମା ଦେବତା । ଓଁ ନମଃ ବୀଜଃ । ଓଁ ଭଗବତ ଶକ୍ତିଃ ଓଁ ବାସୁଦେବାୟ କୀଳକଂ । ମମାଭିଷ୍ଟ ସିଦ୍ଧ୍ୟର୍ଥେ ଜପେ ବିନିଯୋଗଃ ।

**କରନ୍ୟାସଃ ।**

ଓଁ ଓଁ ଅଙ୍ଗୁଷ୍ଠାଭ୍ୟାଂ ନମଃ ଓଁ ନମଃ ତର୍ଜ୍ଜନୀଭ୍ୟାଂ ସ୍ୱାହା । ଓଁ ଭଗବତେ ମଧ୍ୟମାଭ୍ୟାଂ ବଷଟ୍ । ଓଁ ବାସୁଦେବାୟ ଅନାମିକାଭ୍ୟାଂ ହୁଂ । ଓ ନମୋ ଭଗବତେ ବାସୁଦେବାୟ କରତଳ କରପୃଷ୍ଠାଭ୍ୟା ଫଟ୍ ।

**ଅଙ୍ଗନ୍ୟାସଃ ।** ( ଇତି ପଞ୍ଚାଙ୍ଗନ୍ୟାସଃ )

ଓଁ ଓଁ ହୃଦୟାୟ ନମଃ । ଓଁ ନମଃ ଶିରସେ ସ୍ୱାହା । ଓଁ ଭଗବତେ ଶିଖାୟୈ ବଷଟ୍ । ଓଁ ବାସୁଦେବାୟ କବଚାୟ ହୁଁ । ଓଁ ନମୋ ଭଗବତେ ବାସୁଦେବାୟ କରତଳ କରପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍ ।

**ଧ୍ୟାନଂ ।**— ଉଦ୍ୟତ୍ ପ୍ରଦ୍ୟୋତନ ଶତରୁଚିଂ ତପ୍ତହେମାବଦାତଂ
ପାର୍ଶ୍ୱେ ଦ୍ୱନ୍ଦେ ଜଲଧି ସୁତୟା ବିଶ୍ୱଧାତ୍ର୍ୟା ଚ ଜୁଷ୍ଟମ୍ ।
ନାନାରତ୍ନୋଲ୍ଲସିତ ବିବିଧାକଲ୍ପ-ମା ପୀତବସ୍ତ୍ରଂ
ବିଷ୍ଣୁଂ ବନ୍ଦେ ଦର-କମଲ-କୌମୋଦକୀ ଚକ୍ରପାଣିମ୍ ।

ମନ୍ତ୍ରଃ—ଓଁ ନମୋ ଭଗବତେ ବାସୁଦେବାୟ

## (୨) ପରିଶିଷ୍ଟ ଅଥ ଦ୍ୱାଦଶାକ୍ଷର ବାସୁଦେବ ସ୍ତୋତ୍ରମ୍ ।

ଓଁ ମିତ୍ୟୁଗ୍ରତରୋ ମୋହନିଦ୍ରା ଦୂରଂ ପଲାୟତେ ।
ତ୍ୱୟା ଗ୍ରସ୍ତଂ ଜଗନ୍ନାଥ ତ୍ରାହି ମାଂ ମଧୁସୂଦନ । ୧ । ଓଁ ।
ନ ଗତିର୍ବିଦ୍ୟତେ ନାଥ ତ୍ୱମେବ ଶରଣଂ ମମ ।
ପାପପଙ୍କେ ନିମଗ୍ନୋଽସ୍ମି ତ୍ରାହି ମାଂ ମଧୁସୂଦନ । ୨ । ନ ।

ମୋହିତୋ ମୋହଜାଲେନ ପୁତ୍ରଂ ଦାର ଗୃହାଦିଷୁ ।
ତୃଷ୍ଣୟା ପୀଡ଼୍ୟ ମନୋଽସ୍ମି ତ୍ରାହି ମାଂ ମଧୁସୂଦନ । ୩ । ମୋ ।
ଭକ୍ତି ହୀନଂ ଚ ଦୀନଂ ଚ ଦୁଃଖଶୋକାତୁରଂ ପ୍ରଭୋ ।
ଅନାଶ୍ରୟ ମନାଥଂ ଚ ତ୍ରାହି ମାଂ ମଧୁସୂଦନ । ୪ । ଭ ।
ଗତା ଗତେନ ଶ୍ରାନ୍ତୋଽସ୍ମି ଦୀର୍ଘ ସଂସାର ବର୍ତ୍ମସୁ ।
ପୁନ ର୍ନାଗନ୍ତୁ ମିଚ୍ଛାମି ତ୍ରାହି ମାଂ ମଧୁସୂଦନ । ୫ । ଗ ।
ବହୁ ବୋହି ମୟା ଦୃଷ୍ଟା ଯୋନିଦ୍ୱାରଃ ପୃଥକ୍ ପୃଥକ୍ ।
ଗର୍ଭବାସ ମହାଦୁଃଖାତ୍ ତ୍ରାହି ମାଂ ମଧୁସୂଦନ । ୬ । ବ ।
ତେନ ଦେବ ପ୍ରପନ୍ନୋଽସ୍ମି ତ୍ରାଣାର୍ଥ ସ୍ତ ତ୍ ପରାୟଣଃ ।
ଦୁଃଖାର୍ଣ୍ଣବ ନିମଗ୍ନୋଽହଂ ତ୍ରାହି ମାଂ ମଧୁସୂଦନ । ୭ । ତେ ।
ବାଚା ଯଚ୍ଚ ପ୍ରତିଜ୍ଞାତଂ କର୍ମ୍ମଣା ନୋପପାଦିତଂ ।
ତତ୍ପାପାବ୍ଧି ନିମଗ୍ନୋଽସ୍ମି ତ୍ରାହି ମାଂ ମଧୁସୂଦନ । ୮ । ବା ।
ସୁକୃତଂ ନକୃତଂ କିଞ୍ଚିଦ୍ ଦୁଷ୍କୃତଂ ଚ କୃତ ମୟୀ ।
ସଂସାରାର୍ଣ୍ଣବ ମଗ୍ନୋଽସ୍ମି ତ୍ରାହି ମାଂ ମଧୁସୂଦନ । ୯ । ସୁ ।
ଦେହାନ୍ତର ସହସ୍ରେଷୁ ପ୍ରାପିତଂ ଭ୍ରମତା ମୟା ।
ତିର୍ଯ୍ୟକ୍ତ୍ୱଂ ମାନୁଷତ୍ୱଂ ଚ ତ୍ରାହି ମାଂ ମଧୁସୂଦନ । ୧୦ । ଦେ ।
ବାଚୟାମି ଯଥୋନ୍ମତ୍ତଃ ପ୍ରଲପାମି ତବାଗ୍ରତଃ ।
ଜରା ମରଣ ଭୀତୋଽସ୍ମି ତ୍ରାହି ମାଂ ମଧୁସୂଦନ । ୧୧ । ବା ।
ଯତ୍ରା ଯତ୍ର ଚ ଜାତୋଽସ୍ମି ସ୍ତ୍ରୀଷୁ ବା ପୁରୁଷେ-ଷୁବା ।
ଦେହି ତତ୍ରାଚଳାଂ ଭକ୍ତିଂ ତ୍ରାହି ମାଂ ମଧୁସୂଦନ । ୧୨ । ଯ ।
ଗତ୍ୱାଗତ୍ୱା ନିବର୍ତ୍ତନ୍ତେ ଚନ୍ଦ୍ରସୂର୍ଯ୍ୟାଦୟୋ ଗ୍ରହାଃ ।
କଦାପି ନ ନିବର୍ତ୍ତନ୍ତେଦ୍ୱାଦଶାକ୍ଷର ଚିନ୍ତକାଃ । ୧୩ ।
ଶାନ୍ତି ସ୍ତୋତ୍ରାଣି ବହବୋ ବାଞ୍ଛିତାର୍ଥ ପ୍ରଦାନି ବୈ ।
ଦ୍ୱାଦଶାର୍ଣ୍ଣାତ୍ ପରଂନାସ୍ତି ବାସୁଦେବେନ ଭାଷିତମ୍ । ୧୪ ।
ଦ୍ୱାଦଶାର୍ଣ୍ଣଂ ମହାସ୍ତୋତ୍ରଂ ସର୍ବକାମ ଫଳପ୍ରଦମ୍ ।
ଗର୍ଭବାସ ନିବାଶନ୍ତୁ ଶୁକେନ ପରିଭାଷିତମ୍ । ୧୫ ।
ଦ୍ୱାଦଶାର୍ଣ୍ଣ ନିରାହାରୋ ଯଃ ପଠେତ୍ ହରିବାସରେ ।
ସ ଗଚ୍ଛେଦ୍ ବୈଷ୍ଣବଂ ଧାମ ଯତ୍ର ଯୋଗେଶ୍ୱର ହରିଃ । ୧୬ ।

କଟକ ଅରୁଣୋଦୟ ପ୍ରେସର ପ୍ରିଣ୍ଟର ଚୌଃ ଶ୍ରୀ ମଧୁ ଦନ ମାହାପାତ୍ରଙ୍କ ଦ୍ୱାରା ମୁଦ୍ରିତ ।

